# ଉଦ୍ଭାବନର ଜାଦୁକର ଜର୍ଜ ଓ୍ୱେଷ୍ଟିଂହାଉସ୍

ମୂଳରଚନା
ଆଇ. ଇ. ଲେଭିନ୍

ଅନୁବାଦ - ଅଧ୍ୟାପକ ଶ୍ରୀଧର ଦାସ

# ଉଦ୍ଭାବନର ଜାଦୁକର ଜର୍ଜ ଓ୍ୱେଷ୍ଟିଙ୍ଗହାଉସ୍

ମୂଳରଚନା : ଆଇ. ଇ. ଲେଭିନ୍
ଅନୁବାଦ: ଅଧ୍ୟାପକ ଶ୍ରୀଧର ଦାସ

Rs 30 P 00

# INVENTIVE WIZARD : GEORGE WESTINGHOUSE

BY

**I. E. Levine**


*Originally published by Macfadden—Bartell Corporation*
*by arrangement with Julian Messner, Inc.*

ଓଡ଼ିଆ ସଂସ୍କରଣର ପ୍ରକାଶ ସମୟ : ଏପ୍ରିଲ, ୧୯୬୮

ଓଡ଼ିଆ ସଂସ୍କରଣର ପ୍ରକାଶକ :

**କଟକ ଟ୍ରେଡ଼ିଂ କମ୍ପାନୀ**

ବାଲୁବଜାର, କଟକ-୨

ମୁଦ୍ରାକର : ଶ୍ରୀ ରାମକୃଷ୍ଣ ମହାପାତ୍ର

ଲୋକସାହିତ୍ୟ ପ୍ରିଣ୍ଟିଂ କମ୍ପାନୀ, କଟକ-୧

# ସୂଚୀପତ୍ର



—*—

# ଏକ

## ପ୍ରତ୍ୟାବର୍ତ୍ତନ

୧୮୬୫ ମସିହାର ଜୁଲାଇ ମାସ ୧୫ ତାରିଖ । ମଣିଷ ଉପରେ ଗୋଟାଏ କମ୍ବଳ ଘୋଡ଼ାଇ ଦେଲେ ସେ ଯେପରି ଅସ୍ୱସ୍ତି ଅନୁଭବ କରେ, ସେହିପରି ଗୋଟାଏ ଭୀଷଣ କୁହୁଡ଼ି ନିଉୟର୍କ ନଗରକୁ ଆବୋରି ପକାଇଥାଏ । ସହରର ପଥରବନ୍ଧା ରାସ୍ତାଧାରରେ ଲୋକେ ଦଳ ଦଳ ହୋଇ ନୀରବରେ ଚାହିଁ ରହିଥାନ୍ତି । ଲମ୍ବ ଲମ୍ବ ଧାଡ଼ିରେ ସୈନ୍ୟମାନେ ନେଳିଆ ପୋଷାକ ପିନ୍ଧି ଚାଲିଥାନ୍ତି । ସେମାନଙ୍କର ପୋଷାକ ମଳିନ ଦିଶୁଥାଏ । ଲୋକେ ସେମାନଙ୍କୁ ଚାହିଁ ରହିଥାନ୍ତି । ଏହି ସୈନ୍ୟମାନେ ଯୁଦ୍ଧକ୍ଷେତ୍ରରୁ ଘରକୁ ଫେରି ଆସୁଥାନ୍ତି ।

ଆମେରିକାର ଗୃହଯୁଦ୍ଧ ସରି ଯାଇଥାଏ । ଏହାର ଦୁଇମାସ ପୂର୍ବରୁ କମାଣଗୁଡ଼ିକ ଥରେ ଭୀଷଣ ଭାବରେ ଗର୍ଜି ଉଠିଥିଲା । ତାହାହିଁ ଶେଷ କମାଣ ଧ୍ୱନିରେ ପରିଣତ ହୋଇଥିଲା । ଯେଉଁ ସୈନ୍ୟମାନେ ଯୁଦ୍ଧରେ ନିଜ ଦେହର ରକ୍ତ ଦେଇଥିଲେ, ସେମାନେ ଶେଷରେ ନିଜ ନିଜର ଘରକୁ, ନିଜର ପରିବାର ପାଖକୁ, ନିଜର କୃଷି କ୍ଷେତକୁ, ନିଜର କାରଖାନାକୁ, ଫେରି ଆସୁଅଛନ୍ତି । ସୈନ୍ୟମାନେ ଏହି ବିରାଟ ନଗରର ସଦର ରାସ୍ତାରେ ଚାଲିଗଲା ବେଳେ କୁହୁଡ଼ିର ଧୂଆଁ ଉଠୁଛି; କିନ୍ତୁ ସେମାନଙ୍କ ପାଇଁ କେହି ଆନନ୍ଦଧ୍ୱନି କରୁନାହାନ୍ତି କି ବିଜୟ ଉଲ୍ଲାସରେ ଚିତ୍କାର କରୁନାହାନ୍ତି । ରକ୍ତାକ୍ତ ଯୁଦ୍ଧଭୂମିର କରୁଣ ସ୍ମୃତି ସହିତ ଗୋଟାଏ ନୀରବ ବିଷାଦ ମିଶି ଯାଇଛି । ଯେଉଁମାନେ କେବେହେଲେ ଆଉ ଫେରି ଆସିବେ ନାହିଁ, ସେମାନଙ୍କର କବରକୁ ଚିହ୍ନାଇ ଦେଉଛି ଧାଡ଼ି ଧାଡ଼ି ଧଳା କ୍ରୁଶ ଚିହ୍ନ ।

ଠିଆ ବାଗରେ ଥିବା ଖଣ୍ଡିଏ ପଥର ଉପରେ ଜଣେ ବୃଦ୍ଧ ଛିଡ଼ା ହୋଇ ନୀଳପୋଷାକ ପିନ୍ଧି ଯାଉଥିବା ଏହି ସୈନ୍ୟମାନଙ୍କ ଆଡ଼କୁ ଚାହିଁ ରହିଥିଲେ । ତାଙ୍କ କୁର୍ତ୍ତାର ହାତ ଉପରେ ଖଣ୍ଡିଏ କଳା ରଙ୍ଗର ଫିତା ବନ୍ଧା ହୋଇଥିଲା ଓ ତାଙ୍କ ଆଖି ଲୁହରେ ଛଳଛଳ ଦିଶୁଥିଲା । ସେ ହାତରେ ଆଖିର ଲୁହ ପୋଛି ଦେଇ ଗୁଣୁଗୁଣୁ ସ୍ୱରରେ କଅଣ କହିଲେ; କିନ୍ତୁ ସେ କାହାରିକୁ ଉଦ୍ଦେଶ୍ୟ କରି କହିଲାପରି ଜଣା ଯାଉ ନ ଥିଲା । ସୈନ୍ୟମାନଙ୍କ ପଦଧ୍ୱନି ମଧ୍ୟରେ ବୃଦ୍ଧଙ୍କର ସ୍ୱର ମିଳେଇ ଗଲା ।

ସେଠାରେ ନୌବାହିନୀର ପୋଷାକ ପିନ୍ଧି ଜଣେ ଯୁବକ ସୈନ୍ୟମାନଙ୍କର ଏହି ପାରେଡ଼କୁ ଚାହିଁଥିଲେ । ମୁହୂର୍ତ୍ତକ ପାଇଁ ତାଙ୍କର ଦୃଷ୍ଟି ଏହି ବୃଦ୍ଧଙ୍କ ଉପରେ ପଡ଼ିଗଲା । ଶେଷରେ ସେ କହିଲେ, "ମହାଶୟ, କିଛି ଭୁଲ ହେଲା କି ?"

ବୃଦ୍ଧ ଉତ୍ତର କଲେ, "ନା ବାପ । ତା ନୁହେଁ । ମୁଁ କେବଳ କହୁଥିଲି ଯେ ଏହି ସୈନ୍ୟମାନେ ଯୁବକ ସତ, କିନ୍ତୁ ମୃତ୍ୟୁ ଓ ଯନ୍ତ୍ରଣାର ଦୃଶ୍ୟ ଦେଖି ଦେଖି ସେମାନଙ୍କ ଆଖିରେ ବାର୍ଦ୍ଧକ୍ୟ ଆସି ଯାଇଅଛି ।"

ଯୁବକ ନୀରବ ରହିଲେ । ବୃଦ୍ଧ କିଛି ବେଳ ପର୍ଯ୍ୟନ୍ତ ତାଙ୍କୁ ନିରୀକ୍ଷଣ କରି କହିଲେ, "ତୁମେ ନିଜେ ମଧ୍ୟ ଜଣେ ବାଳକ ମାତ୍ର ।"

ଯୁବକଟି ନିଜର କୈଶୋର ଅବସ୍ଥାକୁ ଲୁଚାଇ ପୌରୁଷ ଦେଖାଇବା ଉଦ୍ଦେଶ୍ୟରେ ଅତି ଯତ୍ନରେ ନିଶ ଦାଢ଼ି ଛାଡ଼ି ଦେଇଥିଲେ । ସେ ଗଜୁରି ଆସୁଥିବା ନିଶ ଦାଢ଼ି ଉପରେ ଜାଣିଶୁଣି ହାତମାରି ଟିକିଏ ଆହତ ସ୍ୱରରେ କହିଲେ, "ନା, ମହାଶୟ ! ମୋର ବୟସ ଊଣେଇଶ ବର୍ଷ ।"

"ଊଣେଇଶ ବର୍ଷ ।" ବୃଦ୍ଧ ଏତିକି କହି ଟିକିଏ ମଧୁର ହସ ହସିଦେଲେ । ସେ କହିଲେ, "ବାପ, ତୁମକୁ ଅପମାନ ଦେବା ଆଦୌ ମୋର ଉଦ୍ଦେଶ୍ୟ ନୁହେଁ । ମୋର ଗୋଟିଏ ପୁଅ ଥିଲା । ଗତ ମାସରେ ତାକୁ ଊଣେଇଶ ବର୍ଷ ପଶିଥାନ୍ତା । ସେ ନେଉଭିଲେର ଯୁଦ୍ଧରେ ପ୍ରାଣ ହରାଇ ଅଛି ।"

ଯୁବକ ବୃଦ୍ଧଙ୍କ କୁର୍ତ୍ତାର ହାତ ଉପରେ ଥିବା କଳା ଫିତାକୁ ଲକ୍ଷ୍ୟ କଲେ । ସେ ଧୀର ସ୍ୱରରେ କହିଲେ, "ମହାଶୟ, ମୋତେ କ୍ଷମା କରନ୍ତୁ ।" ବୃଦ୍ଧଙ୍କୁ ଟିକିଏ ଆଶ୍ୱାସନା ଦେବା ଉଦ୍ଦେଶ୍ୟରେ ସେ ପୁଣି କହିଲେ, "ମୋର ଭାଇ ଆଲବର୍ଟ ମଧ୍ୟ ଗଲା ଶୀତଦିନେ ପ୍ରାଣ ହରାଇ ଅଛି । ସେ ଦ୍ୱିତୀୟ ନିଉୟର୍କର ଭେଟେରାନ ଭଲଣ୍ଟିଅର କାଭାଲରିରେ (Newyork Veteran Volunteer Cavalry) ଜଣେ ଲେଫ୍ଟନାଣ୍ଟ ଥିଲା । ଲୁଇସିଆନାର ମାକଲିଅଡ଼ସ୍ ମିଲସ୍ (Mcleod's Mills) ଯୁଦ୍ଧରେ ଶତ୍ରୁକୁ ଆକ୍ରମଣ କଲାବେଳକୁ ଗୁଳିର ଆଘାତରେ ପ୍ରାଣ ହରାଇଥିଲା ।"

ବୃଦ୍ଧ କହିଲେ, "ଖବର କାଗଜରେ ସେ ଯୁଦ୍ଧର ବିବରଣୀ ମୁଁ ପଢ଼ିଥିବାର ମନେ ପଡ଼ୁଛି । ସେ ଗୋଟାଏ ଭୀଷଣ ରକ୍ତାକ୍ତ ଯୁଦ୍ଧ ! ଆଉ ତୁମେ ? ତୁମେ ମଧ୍ୟ କଅଣ ଯୁଦ୍ଧକୁ ଯାଇଥିଲ ?"

ଯୁବକ ମୁଣ୍ଡ ହଲାଇ କହିଲେ, "ନା, ମୁଁ ଠିକ୍ ଯୁଦ୍ଧଭୂମିକୁ ଯାଇ ନ ଥିଲି । ପୋଟୋମାକ୍ ରଣପୋତମାଳାରେ ତୃତୀୟ ସହକାରୀ ଇଞ୍ଜିନିଅର ଭାବରେ ମୁଁ ଅବସ୍ଥାପିତ ଅଛି । ପ୍ରଥମେ ମୁଁ ମସ୍କୁଟା ଜାହାଜରେ (Muscoota) ଓ ତାହାପରେ ଷ୍ଟାରସ୍ ଆଣ୍ଡ ଷ୍ଟ୍ରାଇପ୍ସ (Stars and Stripes) ଜାହାଜରେ କାମ କରିଅଛି । ତାହା ପୂର୍ବରୁ ମୁଁ ଷୋଡ଼ଶ ନିଉୟର୍କ ଭଲଣ୍ଟିଅର କାଭାଲ୍ରିରେ (Sixteenth Newyork-Volunteer Cavalry) ଥିଲି । କିନ୍ତୁ ମୁଁ ନୌବାହିନୀକୁ ଆସିବାକୁ ନିବେଦନ କଲି ଓ ସେଇଥିରେ ଅଛି । କେବଳ ଜଗୁଆଳି କାମ ଛଡ଼ା ମୁଁ କୌଣସି ପ୍ରକୃତ ଯୁଦ୍ଧରେ ଭାଗ ନେଇନାହିଁ ।"

ବୃଦ୍ଧ ପଚାରିଲେ, "ତୁମ ଘର କଅଣ ଏହି ନିଉୟର୍କ ସହରରେ ?"

ଯୁବକ ଉତ୍ତର କଲେ, "ନା, ମହାଶୟ ! ଆମଘର ଶେନେକ୍ଟାଡ଼ିରେ । ଏଇ ଦୁଇ ଦିନ ହେଲା ମୁଁ ଘରକଥାରୁ ବିଦାୟ ପାଇ ଆଜି ସକାଳେ ନିଉୟର୍କରେ ପହଞ୍ଚିଅଛି । ଘରକୁ ଯିବାପାଇଁ ଏଠାରେ ମୁଁ ରେଲଗାଡ଼ିକୁ ଅପେକ୍ଷାକରି ରହିଛି । ଆଜି ଉପରବେଳା ଗାଡ଼ି ଛାଡ଼ିବ ।"

ବୃଦ୍ଧ ଏହି ଭଦ୍ରତକାମୀ ଯୁବକଙ୍କୁ ଗୃହିଁ ଦେଖିଲେ ଯେ ତାଙ୍କର ଶରୀର ବଳିଷ୍ଠ, ଚେହେରାଟି ସୁନ୍ଦର ଓ ନୀଳ ଆଖି ଦୁଇଟି ନମ୍ରତାର ପରିଚାୟକ । ସେ କହିଲେ, "ତୁମକୁ ଦେଖିଲା କ୍ଷଣି ମୋର ନିଜ ପୁଅ କଥା ମନେ ପଡ଼ୁଛି । ତୁମ ପ୍ରତି ମୋର ସ୍ନେହ ଜାତ ହେଉଛି । ତୁମର ନାମ କଅଣ ?"

"ଜର୍ଜ ଓ୍ୱେଷ୍ଟିଙ୍ଗହାଉସ ।"

ବୃଦ୍ଧ କହିଲେ, "ଆଚ୍ଛା, ଜର୍ଜ ଓ୍ୱେଷ୍ଟିଙ୍ଗହାଉସ, ତୁମକୁ ଦେଖି ବଡ଼ ଖୁସି ହେଲି । ଆଶୀର୍ବାଦ କରୁଛି, ସୁଖରେ ରହ, ମୁଁ ତୁମ ନାଁଟି ମନେ ରଖୁଛି, ଆଉ ହୁଏତ ଦିନେ ଶୁଣିବି ତୁମେ ଜଣେ ବଡ଼ ଲୋକ ହୋଇଛ ।"

ବୃଦ୍ଧ ଏହାପରେ କହି ବିଦାୟ ନେଲେ । ଲୋକଗହଳି ମଧ୍ୟରେ ସେ କେଉଁଆଡ଼େ ଅଦୃଶ୍ୟ ହୋଇଗଲେ ।

ପରେ ଯେତେବେଳେ ଜର୍ଜ ଓ୍ୱେଷ୍ଟିଙ୍ଗହାଉସ୍ ଗାଡ଼ିରେ ବସିଲେ ସେ ବୃଦ୍ଧଙ୍କ ସହିତ ନିଜର କଥାବାର୍ତ୍ତା ବିଷୟ ଚିନ୍ତା କଲେ । ସେ ଯେତିକି ଚିନ୍ତା କଲେ ସେତିକି ଭାବ ବିହ୍ୱଳ ହୋଇ ପଡ଼ିଲେ । ତାଙ୍କର ମନେ ହେଲା ଯେ ଯୁଦ୍ଧ ଶେଷ ହୋଇଥିଲେହେଁ ପ୍ରତ୍ୟେକ ଲୋକ ଉପରେ ତାର ସ୍ମୃତି ରଖିଦେଇ ଯାଇଛି । ନିଜର ଭାଇ ଆଲବର୍ଟଙ୍କ ମୃତ୍ୟୁ ପରେ ସେ ଛୁଟି ନେଇ ଘରକୁ ଆସିଥିଲେ । ସେତେବେଳେ ମାଆଙ୍କ ଆଖିରେ ଯେଉଁ ଗଭୀର ଶୋକର ଚିହ୍ନ ସେ ଦେଖିଥିଲେ, ତାହା ଭୁଲି ପାରି ନ ଥିଲେ ।

ଓ୍ୱେଷ୍ଟିଙ୍ଗହାଉସ ପରିବାରଟି ବେଶ୍ ବଡ଼ । ଘରେ ପାଞ୍ଚଟି ପୁଅ ଓ ତିନୋଟି ଝିଅ । ଏମାନଙ୍କ ମଧ୍ୟରେ ଆଲବର୍ଟ ଯେ ପିତାମାତାଙ୍କର ସବୁଠାରୁ ଅଧିକ ଆଦରର ପାତ୍ର ଥିଲେ, ଏହା ନିଃସନ୍ଦେହ । ଆଲବର୍ଟ ବଡ଼ ଧୀରସ୍ଥିର ଓ ମଧୁରଭାଷୀ । କେଉଁ ସମୟରେ କେଉଁ କାମ କରିବା ଉଚିତ, ତାହା ସ୍ଥିର କରି ପାରିବା ତାଙ୍କର ପ୍ରକୃତିଗତ ଥିଲା । ତେଣୁ ସେ କେବେ ଅସୁବିଧାରେ ପଡ଼ୁ ନ ଥିଲେ । ମିସେସ୍

ଓଟେପ୍ସୃଷ୍ଟିଙ୍ଗହାଉସ ଅନେକ ସମୟରେ କହୁଥିଲେ, "ମୋ ଆଲବର୍ଟ ଗୋଟିଏ ସୁନାପୁଅ । ଜନ୍ମ ହେଲ ଦିନୁଁ ସେ ମୋତେ ମୁହୂର୍ତ୍ତେ ହେଲେ ଅଡୁଆରେ ପକାଇ ନାହିଁ ।

ଜର୍ଜଙ୍କର ଦୃଢ଼ ବିଶ୍ୱାସ ଥିଲ ଯେ ସେ ନିଜେ କିମ୍ବା ଆନ୍ୟ କୌଣସି ଭାଇ ଯୁଦ୍ଧରେ ମରିଯାଇଥିଲେ ପିତାମାତାଙ୍କର ଏତେ ଗଭୀର ଦୁଃଖ ହୋଇ ନ ଥାନ୍ତା । ଯୁଦ୍ଧରେ କୌଣସି ପ୍ରକାର ଆଘାତ ନ ପାଇ ଅକ୍ଷତ ଶରୀରରେ ଫେରି ଆସିଥିବାରୁ ଜର୍ଜ ନିଜକୁ ଏକ ପ୍ରକାର ଅପରାଧୀ ମନେ କରୁଥିଲେ । ତାଙ୍କର ମନେ ହେଲ ଯେ ସବୁ ଭାଇ-ଭଉଣୀଙ୍କ ମଧ୍ୟରେ ସେ ହିଁ ଏକା ପିଲଦିନେ ବାପମାଆଙ୍କ ମନରେ ସବୁଠାରୁ ବେଶୀ କଷ୍ଟ ଦେଇଛନ୍ତି ।

ଗୋଟାଏ କଥା ଅଛି—ଭଲ ମଣିଷ ଅଳ୍ପ ବୟସରେ ମରନ୍ତି । ବୋଧହୁଏ ଏଥିରେ କିଛି ସତ ଅଛି । ତାହା ହୋଇନଥିଲେ ଆଲବର୍ଟ ଏତେ ଅଳ୍ପ ବୟସରେ ଅକାଳ ମୃତ୍ୟୁ ମୁଖରେ ପଡିବାର କାରଣ କଅଣ ହୋଇପାରେ ? ଜର୍ଜ କେଉଁ ଭାଗ୍ୟବଳରେ ଏକବାରେ ଅକ୍ଷତ ଶରୀରରେ ଯୁଦ୍ଧରୁ ଫେରିଆସିଲେ ?

ରେଲଗାଡିର ଇଞ୍ଜିନ ଧପ୍‌ଧପ୍ ଶବ୍ଦ କରି ମୁଣ୍ଡରୁ ଧୂଆଁ ଉଡ଼ାଇ ଷ୍ଟେସନରୁ ବାହାରିଲ । ଊଣେଇଶ ବର୍ଷର ଯୁବକ ଜର୍ଜ ଗାଡ଼ି ଭିତରେ ବସି ଏହିପରି ଚିନ୍ତାରେ ବୁଡ଼ି ରହିଥାନ୍ତି । ସେ ଝରକାବାଟେ ବାହାରର ମନୋହର ଦୃଶ୍ୟ ଦେଖି ମନ୍ ଭୁଲାଇବାକୁ ଚେଷ୍ଟାକଲେ । କିଛିସମୟ ପରେ ସୁନ୍ଦର ହଡ଼ସନ ନଦୀର ପୂର୍ବପଟେ ଥିବା ବାଡ଼ିର ବଡ଼ବଡ଼ ଗୋଜିଆ ଖୁଣ୍ଟ ସବୁ ରେଲଗ.ଡ଼ିର ପଶ୍ଚିମ ଦିଗରେ ଦେଖାଗଲ । ସୂର୍ଯ୍ୟ ଉଇଁ ଆସିଥାନ୍ତି । ସକାଳୁଆ କୁହୁଡ଼ି ଉଭେଇ ଯାଉଥାଏ । ହଡ଼ସନ ନଦୀର ଜଳ ଉପରେ ସୂର୍ଯ୍ୟଙ୍କର କିରଣ ପ୍ରତିବିମ୍ବିତ ହେଉଥାଏ । ଯତେ ଯେପରି କି ଗୋଟିଏ ସ୍ୱଚ୍ଛ ଦର୍ପଣ ଉପରେ ସୂର୍ଯ୍ୟଙ୍କର ରଶ୍ମି ପଡୁଛି ! ଏ ଦୃଶ୍ୟ ଯେପରି କି ଗୋଟିଏ କଳ୍ପନାର ବସ୍ତୁ ବୋଲି ମନେ ହେଉଥାଏ । ହାର ଯୁବକଙ୍କୁ ଏହିଦୃଶ୍ୟ ଏକବାର ମୁଗ୍ଧ କରି ଦେଲ ।

ନିଜସ୍ୱର୍କ ରାଜ୍ୟର ଏକ ପ୍ରାନ୍ତଭାଗରେ ସବୁଜ ପାହାଡ଼ ଓ ଫେନିଳ ଝରଣାମାନଙ୍କ ମଧ୍ୟରେ ଜର୍ଜ କପର ବାଲ୍ୟ ଜୀବନ କଟାଇ-ଥିଲେ, ତାହା ତାଙ୍କର ମନେ ପଡ଼ିଗଲା । ସେଣ୍ଟ୍ରାଲ ବ୍ରିଜ୍‌ରେ ଗୋଟିଏ ବଡ଼ ଚୂନଧଉଳା ଘରର ଅଗଣାରେ ସେ କପର ଖେଳୁଥିଲେ, ସେହି ଅତୀତ ସ୍ମୃତି ତାଙ୍କ ମନରେ ଜାଗି ଉଠିଲା । ଏହି ଘରେ ତାଙ୍କର ଜନ୍ମ ହୋଇଥିଲା । ଛଅ ବର୍ଷ ହେବା ପର୍ଯ୍ୟନ୍ତ ଏହି ଘର ଓ ଘରର ଚାରିପାଖ ପଡ଼ିଆକୁ ସେ ନିଜର ସମଗ୍ର ପୃଥିବୀ ବୋଲି ମନେ କରୁଥିଲେ ।

ନିଜସ୍ୱର୍କ ରାଜ୍ୟର ମନୋହର ଶୋହାରି ଉପତ୍ୟକା ମଧ୍ୟରେ ସେଣ୍ଟ୍ରାଲ ବ୍ରିଜ ଗୋଟିଏ କ୍ଷୁଦ୍ର ଗ୍ରାମ । ଶୋହାରି ଓ କୋବଲସ୍କିଲ ନଦୀ ଦ୍ୱୟର ସଙ୍ଗମ ନିକଟରେ ଏହା ଅବସ୍ଥିତ । ଏହି ଗ୍ରାମରେ ୧୮୪୬-ମସିହା ଅକ୍ଟୋବର ମାସ ୬ ତାରିଖ ଦିନ ମାଷ୍ଟର ଜର୍ଜ ଓଏଷ୍ଟିଙ୍ଗ-ହାଉସଙ୍କର ଜନ୍ମ ହୋଇଥିଲା । ଜନ୍ମର ପରେ ପରେ ସେ ଉଚ୍ଚ ସ୍ୱରରେ ଯେଉଁ କୁଆଁ କୁଆଁ ରଡ଼ି କରିଥିଲେ, ସେଥିରୁ ଜଣା ପଡ଼ିଥିଲା ଯେ, ଏ ପିଲାଟି ଜଣେ ଅସାଧାରଣ ମନୁଷ୍ୟ ହେବ ।

ସେତେବେଳକୁ ଘରେ ଛଅଗୋଟି ପୁଅ ଛଅଗୋଟି ଝିଅ ଥିଲେ । ତେଣୁ ନୂଆ ପୁଅଟିଏ ଜନ୍ମ ହେବାରୁ ମିଷ୍ଟର ଜର୍ଜ ଓଏଷ୍ଟିଙ୍ଗହାଉସ ଓ ତାଙ୍କ ପତ୍ନୀ ଏମେଲିନ୍ ଭେଡ଼ରଙ୍କର ଘରେ ବିଶେଷ ଉତ୍ସାହ ଦେଖାଯାଇ ନ ଥିଲା । ମାଆଙ୍କ ଜିଦ୍ ଅନୁସାରେ ପିଲାଟିର ନାମ ଦିଆଗଲା, ଜର୍ଜ ଓଏଷ୍ଟିଙ୍ଗହାଉସ । ସେ କହିଲେ ଯେ ବାପାଙ୍କ ନାମ ଯାହା, ପୁଅଟିର ନାମ ମଧ୍ୟ ଠିକ୍ ତାହାହିଁ ହେବ ।

ସେ ସ୍ୱାମୀଙ୍କୁ କହିଲେ, "ପିଲାଟିର ଚେହେରା ଠିକ୍ ତୁମରି ଚେହେରା ପରି । ଆମ ପିଲାମାନଙ୍କ ଭିତରେ କେବଳ ଏଇଟିର ସଙ୍ଗେ ମୋର ବା ଆମ ବଂଶର କାହାରି ଚେହେରାର ମେଳ ନାହିଁ । ଠିକ୍ ତୁମରି ଦେହର ଗଢ଼ଣ ପରି ତାର ଦେହର ଗଢ଼ଣ । ଆଖିକି ଚାହିଁଲେ ଜଣା ପଡ଼ୁଛି ଯେ ତାର ମଧ୍ୟ ତୁମ ଭଳି ମନର ଦୃଢ଼ତା ଅଛି ।

ମିଷ୍ଟର ଜର୍ଜ ଓ୍ୱେଷ୍ଟିଙ୍ଗହାଉସ ଜଣେ ଦୀର୍ଘକାୟ ବ୍ୟକ୍ତି । ତାଙ୍କର ଉଚ୍ଚତା ଛଅ ଫୁଟରୁ ଅଧିକ ଥିଲା । ସେ ପତ୍ନୀଙ୍କର କଥା ଶୁଣି ଲାଜରେ ଦାନ୍ତ ଚାପି ଟିକଏ ହସିଦେଲେ । ପ୍ରକୃତରେ ସେ ଅତ୍ୟନ୍ତ ଦୃଢ଼ମନା ଥିଲେ । ତାଙ୍କ ଶରୀରରେ ପୂର୍ବ ପୁରୁଷଙ୍କର ଜର୍ମାନ ରକ୍ତ ପ୍ରବାହିତ ହେଉଥିଲା । ସେ ଭେରମଣ୍ଟରେ ଶିକ୍ଷାଦୀକ୍ଷା ଲାଭ କରିଥିଲେ । ତାଙ୍କର ପୂର୍ବବର୍ତ୍ତୀ ଦୁଇ ପୁରୁଷ ନିଉ ଇଂଲଣ୍ଡରେ ଥିଲେ । ସେ ସେମାନଙ୍କଠାରୁ ଆତ୍ମ ନିର୍ଭରଶୀଳତା ଓ ଦୃଢ଼ତା ଉତ୍ତରାଧିକାର ସୂତ୍ରେ ଲାଭ କରିଥିଲେ । ଭେରମଣ୍ଟର ନର୍ଥଫାଉନଲଠାରେ ଥିଲାବେଳେ ତାଙ୍କର ଏମେଲିନ୍ ଭେଡ଼ରଙ୍କ ସହିତ ସାକ୍ଷାତ ହୋଇଥିଲା । ଏମେଲିନ୍ ସ୍କେନେକ୍ଟେଲିର ଏକ ସୁନ୍ଦରୀ ଯୁବତୀ । ତାଙ୍କର ପିତା ମାତା ଡଚ୍ ଓ ଇଂରେଜ ଥିଲେ । ପ୍ରଥମ ଦର୍ଶନ ମାତ୍ରେ ଏହି ଦୁହିଁଙ୍କ ମଧ୍ୟରେ ପ୍ରଣୟ ଜାତ ହୋଇଥିଲା ।

୧୮୬୭ ମସିହାରେ ଦୁହେଁ ବିବାହ ବନ୍ଧନରେ ଆବଦ୍ଧ ହେଲେ । ବିବାହର ଅଳ୍ପକାଳ ପରେ ମିଷ୍ଟର ଜର୍ଜ ଓ ଏମେଲିନ୍ ନିଜର ଥିବା ସାମାନ୍ୟ ଜିନିଷପତ୍ର ଗୋଟିଏ ଘୋଡ଼ାଗାଡ଼ିରେ ଲଦି ଓହିଓ ସୀମାନ୍ତ ଅଞ୍ଚଳକୁ ଯାତ୍ରା କଲେ । ଏହି ଯାତ୍ରାରେ ସେମାନଙ୍କୁ ବହୁତ ଦୂର ଯିବାକୁ ହୋଇଥିଲା । ସେ ସମୟରେ ପ୍ରବଳ ଜନରବ ଶୁଣା ଯାଉଥିଲା ଯେ ଓହିଓ ସୀମାନ୍ତ ଅଞ୍ଚଳରେ ଲୋକ ଅକ୍ଳେଶରେ ସୁନା ଫଳାଇ ପାରିବ । ସେତେବେଳକୁ ନୂଆ ହୋଇ ଏହି ପଶ୍ଚିମାଞ୍ଚଳକୁ ବାଟ ଫିଟିଥାଏ । ଜର୍ଜ ସସ୍ତ୍ରୀକ ଏଠାରେ ପହଞ୍ଚିଲେ; ମାତ୍ର ସେ ଜାଣି ପାରିଲେ ଯେ ଏହା ଜନରବଟି ଅତିରଞ୍ଜନ ମାତ୍ର । ଏହି ଅଞ୍ଚଳଟି ପାହାଡ଼ିଆ ଏବଂ ଏଠାର ଜଳବାୟୁ ଏମେଲିନ୍ଙ୍କ ସ୍ୱାସ୍ଥ୍ୟର ଅନୁକୂଳ ହେଲା ନାହିଁ । ତେଣୁ ଏଠାରେ ପାଞ୍ଚବର୍ଷ କଟାଇବା ପରେ ସେ ପୁଣି ପୂର୍ବାଞ୍ଚଳକୁ ଫେରି ଆସିବାକୁ ସ୍ଥିର କଲେ ।

ମିଷ୍ଟର ଜର୍ଜ ଓ୍ୱେଷ୍ଟିଙ୍ଗହାଉସ କୃଷକ ପରିବାରରେ ଜନ୍ମିଥିଲେ ଓ କୃଷିକର୍ମ ଶିକ୍ଷା କରିଥିଲେ । ମାତ୍ର ଓହିଓରେ ବାସ କରୁଥିବା ସମୟରେ ସେ ଜାଣି ପାରିଲେ ଯେ ଯନ୍ତ୍ରପାତିରେ କାର୍ଯ୍ୟ କରିବାରେ ତାଙ୍କର ସ୍ୱାଭାବିକ ଦକ୍ଷତା ଅଛି । ଅସୀମ ଧୈର୍ଯ୍ୟ ଓ ଦୃଢ଼ତା ସହକାରେ ସେ ବଢ଼େଇ କାମ ଓ ଯନ୍ତ୍ର ନିର୍ମାଣ କାମ ଶିଖିବାକୁ ଲାଗିଲେ । ଏହି ଶିକ୍ଷାରେ

ସେ ନିଜେ ନିଜର ଗୁରୁ ଥିଲେ । ତାଙ୍କର ଉଚ୍ଚ ଅଭିଳାଷ ଥିଲା ଓ ଶିକ୍ଷା ନିମନ୍ତେ ସେ କେବଳ ନିଜ ଉପରେ ନିର୍ଭର କରୁଥିଲେ । ୧୮୩୬ମସିହାରେ ଓହିଓ ତ୍ୟାଗ କରି ଆସିଲା ବେଳକୁ ସେ କୃଷକାର୍ଯ୍ୟ ଛାଡ଼ି ଦେଇ ଅନ୍ୟ ବ୍ୟବସାୟ କରିବାକୁ ପ୍ରସ୍ତୁତ ହୋଇ ସାରିଥିଲେ ।

ଓହିଓରୁ ଫେରିଲାବେଳକୁ ସେମାନେ ସେଣ୍ଟ୍ରାଲ ବ୍ରିଜରେ ବିଶ୍ରାମ ନେଲେ । ନିଉୟର୍କର ଆଲବାନିଠାରୁ ୩୭ ମାଇଲ ଦୂରରେ ଏହି ସୁନ୍ଦର ଗ୍ରାମଟି ଅବସ୍ଥିତ । ଜର୍ଜ ଓଏଷ୍ଟିଂହାଉସ ଗ୍ରାମଟିରେ ବୁଲି ଉତ୍ତମରୂପେ ଦେଖିଲେ । ସେ ଲକ୍ଷ୍ୟ କରି ପାରିଲେ ଯେ ଏହି ଗ୍ରାମଟି ଗୋଟିଏ ଉର୍ବର ଅଞ୍ଚଳରେ ଅବସ୍ଥିତ । ଏହି ଅଞ୍ଚଳ ସୁନ୍ଦର କୃଷି କ୍ଷେତ୍ରରେ ପରିପୂର୍ଣ୍ଣ । ଗ୍ରାମ ମଧ୍ୟରେ କେତୋଟି ସ୍କୁଲ, ଚର୍ଚ୍ଚ ଓ କେତୋଟି ନୂଆ କାରଖାନା ମଧ୍ୟ ଥିବାର ଦେଖାଗଲା ।

ଶେଷରେ ସେ ମନେ ମନେ ଗୋଟିଏ ଉପାୟ ସ୍ଥିର କରି ପତ୍ନୀଙ୍କୁ କହିଲେ, "ଏମେଲିନ୍, ସ୍ଥାୟୀ ଭାବରେ ବାସ କରି ପରିବାର ଚଳିବା ପାଇଁ ଏଇଟି ଗୋଟିଏ ଅତି ଉତ୍ତମ ସ୍ଥାନ । ଆମେ ଏଇଠାରେ ବସବାସ କରିବା ।" ଏମେଲିନ୍ ଓହିଓଠାରୁ ଏତେ ବାଟ ଆସି କ୍ଲାନ୍ତ ଅନୁଭବ କରୁଥିଲେ । ସେ ଏହି ପ୍ରସ୍ତାବରେ ସମ୍ମତ ହୋଇଗଲେ ।

ସେମାନେ ଖଣ୍ଡିଏ ଜମି ବାଛି ନେଲେ । ସେଥିରେ କେତେକ ଶ୍ଳେଟ ପକ୍କା ଘର ଥିଲା । ସେହି ଘରମାନଙ୍କ ଭିତରୁ ଗୋଟିକର କିଛି ପରିବର୍ତ୍ତନ କରି ଦେଇ ଜର୍ଜ ସେଥିରେ ଗୋଟିଏ କଳକବ୍‌ଜାର ଦୋକାନ ଖୋଲିଦେଲେ । ଗ୍ରାମଟି କୋବଲ୍‌ସ୍କିଲ ଓ ଶୋହାରି ନଦୀଦ୍ୱୟର ମିଳନ ସ୍ଥଳରେ ଥିବାରୁ ଦୁଆର ମୂହଁରେ ଜଳୀୟଶକ୍ତି ମିଳିବାର ସୁବିଧା ଥିଲା । କେତୋଟି ମାସ ମଧ୍ୟରେ ଜର୍ଜଙ୍କର ବ୍ୟବସାୟରେ ଖୁବ୍ ଉନ୍ନତି ହେଲା । ସେ ଆଖପାଖରେ ଥିବା କାରଖାନାମାନଙ୍କର (Mills)କଳକବ୍‌ଜା ମରାମତି କରୁଥିଲେ । ଏହାପରେ ସେ ବ୍ୟବସାୟର କେତେକ ଶାଖା ଖୋଲିଲେ ଏବଂ କୃଷକମାନଙ୍କ ନିମନ୍ତେ ବିଭିନ୍ନ ଉପକରଣ ତିଆରି କଲେ । ଆହୁରି ମଧ୍ୟ ଶସ୍ୟକୁ ଅଲଗା କରିବା ପାଇଁ, ଶସ୍ୟକୁ ଏକତ୍ର କରିବା ପାଇଁ ଅନ୍ୟାନ୍ୟ କୃଷିଯନ୍ତ୍ର ସବୁ ତିଆରି କରିବାକୁ ଲାଗିଲେ ।

ବ୍ୟବସାୟର ପରିସର ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ପରିବାରରେ ଲୋକ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଲା । ୧୮୭୬ ମସିହାରେ ମିଷ୍ଟର ଜର୍ଜ ଓ୍ୱେଷ୍ଟିଙ୍ଗହାଉସର ଜନ୍ମବେଳକୁ ଜ.ଓ୍ୱେଷ୍ଟିଙ୍ଗହାଉସ ଏଣ୍ଡ କୋ ଙ୍କର ଖ୍ୟାତି ସେହି ଉପତ୍ୟକାର ବାହାରେ ମଧ୍ୟ ବ୍ୟାପି ଯାଇଥିଲା । ଛଅ ପୁଅ ଓ ତିନି ଝିଅଙ୍କୁ ନେଇ ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ଓ ମିସେସ ଓ୍ୱେଷ୍ଟିଙ୍ଗହାଉସ ସେଣ୍ଟ୍ରାଲବ୍ରିଜର ଅନ୍ୟତମ ପ୍ରଧାନ ପରିବାରରୂପେ ଗଣ୍ୟ ହେଉଥିଲେ ।

ମାଷ୍ଟର ଜର୍ଜ ଓ୍ୱେଷ୍ଟିଙ୍ଗହାଉସର ଜନ୍ମ ପରେ ଏହି ପରିବାରର ଶାନ୍ତିପୂର୍ଣ୍ଣ ଓ ସୁନିୟନ୍ତ୍ରିତ ଜୀବନରେ ଗୋଟିଏ ବିଶେଷ ପରିବର୍ତ୍ତନ ଘଟିଲା । ଅନ୍ୟ ଛଅଟି ଯାକ ପିଲା ସମସ୍ତେ ଶାନ୍ତ ଓ ଧୀରସ୍ଥିର ଥିଲେ । ସେମାନଙ୍କର ଆଗ୍ରହ ବ୍ୟବହାର ଖୁବ୍ ଉତ୍ସାହିତ ଥିଲା । ବିଶେଷତଃ ଏମାନଙ୍କ ମଧ୍ୟରୁ ଆଲବର୍ଟ ନିଜର ଉତ୍ତମ ଆଚରଣ ଦ୍ୱାରା ଅନ୍ୟ ଭାଇ-ଭଉଣୀମାନଙ୍କ ଉପରେ ସୁନ୍ଦର ପ୍ରଭାବ ପକାଇ ପାରିଥିଲେ । କିନ୍ତୁ ମାଷ୍ଟର ଜର୍ଜ ଏମାନଙ୍କ ପରି ନ ଥିଲେ । ସେ ପ୍ରଥମରୁ ବଡ଼ ଏକଜିଦିଆ ତେଜସ୍ୱୀ ଓ ବଦମିଜାଜୀ ଥିଲେ । ସେ ବାପା ମାଆଙ୍କର ଶାସନକୁ ଆଦୌ ମାନୁ ନ ଥିଲେ । କିଛି ପାଇବାକୁ ଇଚ୍ଛା ହେଲାକ୍ଷଣି ସେ ତାହା ଦାବି କରୁଥିଲେ ଏବଂ ତାହା ନ ଆଣିଲେ ତଳେ ମୂର୍ଚ୍ଛିତ ହୋଇ ପଡ଼ୁଥିଲେ । ସେ କାନ୍ଧ ଚିତ୍କାର କରି ତଳେ ମୁଣ୍ଡ ପିଟୁଥିଲେ । ଏହା ଫଳରେ ମୁଣ୍ଡରୁ ରକ୍ତ ବାହାରି ପଡ଼ୁଥିଲା ।

ମାଷ୍ଟର ଜର୍ଜଙ୍କର ସ୍କୁଲରେ ପଢ଼ିବା ବୟସ ହେବାରୁ ବାପମାଆଙ୍କର ବୁଦ୍ଧି ବଣା ହୋଇଗଲା । ମିସେସ ଓ୍ୱେଷ୍ଟିଙ୍ଗହାଉସ ହତାଶ ଭାବରେ ସ୍ୱାମୀଙ୍କୁ କହିଲେ, "ଏ ପିଲାକୁ ନେଇ ମୁଁ କଅଣ କରିବି ଠିକ୍ କରି ପାରୁନାହିଁ । ଆମେ ତ ଆଉ କାଳକଯାକ ତା କଥା ରଖି ଚଳି ପାରିବା ନାହିଁ । କୌଣସି କଥାରେ ତାକୁ ମନା କଲା କ୍ଷଣି ସେ ରାଗି ଉଠି ଯାହା ଇଚ୍ଛା ତାହା କରୁଛି । ତାର ଏହି ରାଗକୁ କିପରି ଯିବାକୁ ହେବ ମୁଁ ବୁଝି ପାରୁନାହିଁ । ଯେବେ ସେ ସ୍କୁଲରେ ସେହିପରି କରେ ତେବେ ଶିକ୍ଷକ ନିଶ୍ଚୟ ତାକୁ ସ୍କୁଲରୁ ବାହାର କରି ଘରକୁ ପଠାଇ ଦେବେ ।"

ଏହି ପୁଅର ବ୍ୟବହାରକୁ ସମ୍ଭାଳିବା ବାପାଙ୍କ ପକ୍ଷରେ ଏକ ବିଷମ ସମସ୍ୟା ଥିଲା । ଯାହା ହେଉ, ଏତିକି ବେଳକୁ ତାଙ୍କର ଆଉ ଗୋଟିଏ ପୁଅ ଜନ୍ମିଲା । ଏହାର ନାମ ଦିଆଗଲା ହର୍ମାନ । ସେ ସବା ସାନ ପୁଅ ହୋଇଥିବାରୁ ତାହାପାଇଁ ମାଆଙ୍କୁ ଅଧିକ ସମୟ ଦେବାକୁ ପଡ଼ୁଥିଲା । ଆହୁରି ମଧ୍ୟ ବାପା ଦେଖିଲେ ଯେ ଜର୍ଜଠାରେ ତାଙ୍କର ନିଜର ବ୍ୟକ୍ତିତ୍ୱ ପ୍ରତିଫଳିତ ହୋଇଅଛି । ଶରୀର ଗଠନ ଦିଗରୁ ଦେଖିବାକୁ ଗଲେ ସେ ତାର ବାପାଙ୍କ ପରି ଥିଲା । କଅଁଳିଆ ଗଛଟିଏ ବଢ଼ିଲା ପରି ସେ ଡେଙ୍ଗା ହୋଇ ଯାଉଥିଲା । ଉଚ୍ଚତାରେ ସେ ତାର ଦୁଇଟି ବଡ଼ ଭାଇଙ୍କୁ ମଧ୍ୟ ବଳି ଯାଇଥିଲା । ତାର ମୁହଁର ଚେହେରା ଓ ଭାବଭଙ୍ଗୀ ଅତିରିକ୍ତ ପରିମାଣରେ ତାର ବାପାଙ୍କ ମୁହଁର ଚେହେରା ଓ ଭାବଭଙ୍ଗୀ ସହିତ ମିଳି ଯାଉଥିଲା । ସବୁଠାରୁ ବଡ଼ କଥା ହେଉଛି, ସେ ଯେପରିକି ବାପାଙ୍କ ଆତ୍ମାଭିମାନ ଓ ମନର ଦୃଢ଼ତାକୁ ଉତ୍ତରାଧିକାର ସୂତ୍ରରେ ପାଇଥିଲା । ବାପାଙ୍କ ପରି ତାର ମଧ୍ୟ କାର୍ଯ୍ୟକରିବା ଶକ୍ତି ଓ ମନର ସ୍ୱାଧୀନତା ଥିଲା ।

ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ମନମଧ୍ୟରେ ଜାଣି ପାରିଥିଲେ ଯେ ସେ ଓ ତାଙ୍କ ପୁଅ ଜର୍ଜ ଦୁହେଁଯାକ ଠିକ୍ ଏକାପରି । ପୁଅଠାରେ ନିଜର ଗୁଣସବୁ ଦେଖି ସେ ସବୁକୁ ମାନିଯାଉଥିଲେହେଁ ବାହାରେ ପ୍ରକାଶ କରି ପାରୁନଥିଲେ । ତେଣୁ ସେ ପୁଅ ପ୍ରତି ସହାନୁଭୂତିଶୀଳ ଥିଲେ ଓ ତା ଉପରେ ରାଗ ପ୍ରକାଶ କରି ପାରୁନଥିଲେ । ତଥାପି ବେଳେବେଳେ ସେ ପୁଅର ମତିଗତି ବୁଝିବାକୁ ଅସମର୍ଥ ହେଉଥିଲେ । ପୁଅ ସହିତ ଯୁକ୍ତିତର୍କ କରି ସେ ତାକୁ ବୁଝାଇବାକୁ ଚେଷ୍ଟା କରୁଥିଲେ; କିନ୍ତୁ ଏଥିରେ କିଛି ଫଳ ହେଉନଥିଲା ।

ଥରେ ସେ ଧୀରସ୍ଥିର ଭାବରେ ପୁଅକୁ ବୁଝାଇ କହିଲେ, "ତୁ ଗୁରୁଜନମାନଙ୍କ କଥା ମାନୁନାହୁଁ ବୋଲି ଲୋକେ ଜାଣିଲେ କଅଣ ଭଲ ହେବ ? ପୃଥିବୀରେ ତୋତେ ଅନ୍ୟମାନଙ୍କ ସଙ୍ଗେ ଚଳିବାକୁ ହେବ । ତୁ ସବୁବେଳେ କଦାପି ନିଜ ଇଚ୍ଛା ଅନୁସାରେ ଚଳି ପାରିବୁ ନାହିଁ । ଯେତେବେଳେ ମାଆ କିମ୍ବା ମୁଁ ତୋତେ କୌଣସି ବିଷୟରେ ମନା କରିବୁ, ସେତେବେଳେ ତୁ ଆମ କଥା ମାନିଯିବା ଉଚିତ । ତୋର

ଭାଇଭଉଣୀମାନେ ଏହିପରି ମାନୁଛନ୍ତି; ତୁ ମଧ୍ୟ ସେହିପରି ଭଦ୍ରଭାବରେ ଆମ କଥା ମାନିବାକୁ ଶିକ୍ଷା କରିବା ଉଚିତ ।"

ବାଳକ ଜର୍ଜ ଏହି ଉପଦେଶକୁ କ୍ୱଚିତ ମାନୁଥିଲା । ଯେତେବେଳେ ପୁଅ ଭଲ ଆଡ଼କୁ ଟିକିଏ ଅଗ୍ରସର ହେଉଥିବାର ଦେଖି ମିଷ୍ଟର ଓ୍ୱେଷ୍ଟିଂହାଉସ ନିଜକୁ ଭାଗ୍ୟବାନ ମନେ କରିବାକୁ ବସନ୍ତି, ଠିକ୍ ସେତିକି ବେଳକୁ ପୁଅର ସେହି ପୂର୍ବ ପ୍ରକାରର ଅଦମ୍ୟ ବ୍ୟବହାର ଦେଖାଦିଏ । ହୁଏତ; ସେ ଗୋଟିଏ ଖେଳନା ବା କୌଣସି ମିଠେଇ ଲାଗି ଜିଦ୍ ଧରୁଥିଲେ । ମାଆ ଯେବେ ମନା କରିଦେଲେ ତେବେ ସେ କାନ୍ଦି ଅଥୟ ହୋଇ ଯାଉଥିଲା, ତାର ଚିତ୍କାରରେ କାନ ଅତଡ଼ା ପଡ଼ି ଯାଉଥିଲା ।

ଶେଷରେ ମିଷ୍ଟର ଓ୍ୱେଷ୍ଟିଂହାଉସ ଆଉ ସହ୍ୟ କରିପାରିଲେ ନାହିଁ । ତାଙ୍କର ଅଭିମାନ ଥିଲା ଯେ ଶାରୀରିକ ଦଣ୍ଡ ନ ଦେଇ କେବଳ ଯୁକ୍ତିତର୍କ ଦ୍ୱାରା ନିଜର ପିଲାମାନଙ୍କୁ ଶାସନ କରିବାର ଶକ୍ତି ତାଙ୍କର ଅଛି । ବାପା ଟିକିଏ କୁଟିଳ ଦୃଷ୍ଟିରେ ଚାହିଁ ଦେଲେ କିମ୍ବା ପଦେ କଥା କହିଦେଲେ ଅନ୍ୟ ପିଲାମାନେ ନିଜ ନିଜର ଭୁଲ ବୁଝି ପାରୁଥିଲେ । କ୍ୱଚିତ୍ ଥରେ ଅଧେ ସେ ସେମାନଙ୍କ ଦେହରେ ହାତ ଲଗାଇଥିବେ । କିନ୍ତୁ ସେ ଦେଖିଲେ ଯେ ଜର୍ଜକୁ ଶାସନ କରିବା ପାଇଁ କଠୋର ନୀତି ଅବଲମ୍ବନ କରିବାକୁ ପଡ଼ିବ ।

ଦିନେ ଜର୍ଜ ପଡ଼ିଶା ଘରର ଗୋଟିଏ ଛୋଟ ପୁଅ ସହିତ କଳି ଲଗାଇଲା । ଦୁହେଁଯାକ ଏକା ବୟସର ହେଲେହେଁ ଜର୍ଜ ତାହାଠାରୁ ଯଥେଷ୍ଟ ଢେଙ୍ଗା ଓ ବଳୁଆ ଥିଲା । କଳି ବଢ଼ିବାକୁ ଲାଗିଲା । ଶେଷରେ ସାନ ପିଲାଟି ଜର୍ଜ ଆଡ଼କୁ ହାତ ଦେଖାଇ କହିଲା, ମୁଁ ତୋ ସାଥିରେ ଲଢ଼େଇ କରିବି ନାହିଁ, କାରଣ ତୁ ପାଗଳ; ବେଳେବେଳେ ତୋର ଚେତା ରହେ ନାହିଁ । ମୋ ବାପାବୋଉ ଏହା କହୁଥିବାର ମୁଁ ଶୁଣିଛି ।

ଏଥିରେ ଯେ କି ପ୍ରକାର ଅପମାନର କଥା ଅଛି, ତାହା ବିଚାର ନ କରି ଜର୍ଜ ଭାବିନେଲା ଯେ ପିଲାଟି ତାକୁ ଘୋର ଅପମାନ ଦେଉଛି । ସେ ସଙ୍ଗେ ସଙ୍ଗେ ପିଲାଟିକୁ ଆକ୍ରମଣ କରି, ମାଡ଼ ମାରି ଚାଲେ

ଫକାଇଦେଲା । ସେତେବେଳକୁ ଆଲବର୍ଟ ଟିକିଏ ଦୂରରେ ରହି ଦୁହିଁଙ୍କର କଳି ଦେଖୁଥିଲା । ସେ ଦୌଡ଼ି ଆସି ଦୁହିଁଙ୍କୁ ଅଲଗା କରିଦେଲା । ଜର୍ଜ ପିଲାଟିର ଆଖି ଉପରେ ମଧ୍ୟ ଆଘାତ କରିଥିଲା ।

ସାନ ପିଲାଟିର ବାପମାଆ ଆସି ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସଙ୍କୁ ସବୁ କଥା କହିଲେ । ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ଏଥି ପୂର୍ବରୁ ପୁଅର ଅନେକ କଥା ସହି ଯାଇଥିଲେ; କିନ୍ତୁ ଏ କଥା ଶୁଣି ଆଉ ସହି ପାରିଲେ ନାହିଁ ।

ସେ ରାଗିଯାଇ ପୁଅକୁ କହିଲେ, ଜର୍ଜ, ତୁ ସେ ପିଲାକୁ ମାରିଲୁ କାହିଁକି ?"

"ସେ ମୋତେ ପାଗଳ ବୋଲି କହିଲା ।"

"ଖାଲି ଏତିକି ପାଇଁ ତୁ ତାକୁ ମାଇଲୁ ?"

ଜର୍ଜ ଉତ୍ତର କଲା, "ହିଁ" । ଏତିକି କହି ସେ ତାର ନିଜର ଫଗଜପୂରେ ଓଠ କାମୁଡ଼ି ହେଲା; କିନ୍ତୁ ଯେତେ ଚେଷ୍ଟା କଲେ ସୁଦ୍ଧା, ସେ ପିଲାଟିର ଏହି କଥାରେ କି ଘୋର ଦୁଃଖ ଅନୁଭବ କରିଥିଲା, ତାହା ବାପାଙ୍କ ନିକଟରେ ପ୍ରକାଶ କରି ପାରିଲା ନାହିଁ ।

ବାପା ପୁଅ ଆଡ଼କୁ ରାଗରେ ଚାହିଁ କହିଲେ, "ତୁ ତାଠାରୁ ବଡ଼, ବଳୁଆ ମଧ୍ୟ । ତୁ ତାର ଆଖି ଉପରେ ମାଡ଼ ଦେଇ ଥିବାରୁ ତା ଆଖି କଳାଚଢ଼ିଯାଇଛି । ଆଲବର୍ଟ ତୋତେ ଅଟକାଇନଥିଲେ ତୋର ଆଘାତରେ ତାର ଅବସ୍ଥା ସାଂଘାତିକ ହୋଇଥାନ୍ତା । ଜର୍ଜ ତୁ କଣ ଭାବୁଛୁ ଯେ ତୋର ଏ ପ୍ରକାର ଦୋଷକୁ ମୁଁ ଆଖି ବୁଜି ରହିବି ?"

ଜର୍ଜ ଅତି ନମ୍ର ସ୍ୱରରେ କହିଲା, "ନା ବାପା ।"

"ତାହାହେଲେ ମୋ ସାଥିରେ ଘୋଡ଼ାଶାଳାକୁ ଚାଲ୍ ।"

ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ପଥର ବନ୍ଧା ହୋଇଥିବା ରାସ୍ତାଉପର ଦେଇ ଟେବୁଲ ପାଖକୁ ଚାଲିଲେ । ଜର୍ଜ ତାଙ୍କ ପଛେ ପଛେ ଗଲା ।

ସେତେବେଳେ ତାର ମନ ଭିତରେ ଦୁଇଟି ଭାବର ବିଚିତ୍ର ମିଳନ ଘଟିବାର ସେ ଅନୁଭବ କଲା । ଗୋଟିଏ ହେଉଛି, ଦୃଢ଼ ଅଭିମାନ ଓ ଅନ୍ୟଟି ହେଉଛି ଦଣ୍ଡ ପାଇବାର ଭୟ ।

ଘୋଡ଼ାଶାଳରେ ପହଞ୍ଚି ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ଗୋଟିଏ ପୁରୁଣା ଘୋଡ଼ା ଚାବୁକ ଧରି ଜର୍ଜକୁ ନଇଁ ପଡ଼ିବାକୁ କହିଲେ । ଜର୍ଜ ନୀରବରେ ଏହି ଆଦେଶ ପାଳନ କଲା ।

'ପଟ୍ ।'

ଚାବୁକର ପାହାରରେ ଜର୍ଜ ଦେହରେ ବାଜିଲା । ସେ କାନ୍ଦି ଉଠିଲା । କିନ୍ତୁ ଶାରୀରିକ ଯନ୍ତ୍ରଣା ଅପେକ୍ଷା ଭୟହିଁ ଏହି କ୍ରନ୍ଦନର କାରଣ ଥିଲା । ତାର ବାପା ବିରକ୍ତିରେ ତର୍ଜନ ଗର୍ଜନ କରୁଥିବାର ଶୁଣିପାରି ସେ ଉପରକୁ ଅନାଇଲା; ଦେଖିଲା ଯେ ଚାବୁକଟି ଦୁଇଖଣ୍ଡ ହୋଇ ଭାଙ୍ଗି ଯାଇଅଛି ।

ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ଭଙ୍ଗା ଚାବୁକଟିକୁ ନିରେଖି ଚାହିଁଲେ । ତହୁଁ ଜର୍ଜ ଆଖିରୁ ଲୁହ ଗଡ଼ାଇ ନିଜର ବୁଢ଼ା ଆଙ୍ଗୁଳି ସାହାଯ୍ୟରେ କାନ୍ଥରେ ଝୁଲୁଥିବା ଏକ ଲଗାମ ଆଡ଼କୁ ଦେଖାଇ କହିଲା, "ବାପା, ଏଇ ଲଗାମଟା ଆଣି ବ୍ୟବହାର କର । ଏଇଟି ଖୁବ୍ ମଜଭୁତ, ଭାଙ୍ଗିଯିବ ନାହିଁ ।"

ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ୍ ଅନେକ ବେଳ ପର୍ଯ୍ୟନ୍ତ ପୁଅ ଆଡ଼କୁ ଚାହିଁ ରହିଲେ । ତାର କଥା ଶୁଣି ସେ ହସିବେ କି କାନ୍ଦିବେ, ବୁଝି ପାରିଲେ ନାହିଁ । କଥା କହିବାକୁ ତାଙ୍କୁ କଷ୍ଟ ହେଲା ପରି ବୋଧ ହେଲା । ସେ ଧୀର ସ୍ୱରରେ କହିଲେ, "ନା ଆଜି ତୋତେ ଆଉ ମାଡ଼ ହେବ ନାହିଁ ।"

ଜର୍ଜ ସ୍କୁଲରେ ପ୍ରବେଶ କଲା ବେଳକୁ ତାର ପିଲାଦିନର ରାଗ ଆଉ ନ ଥିଲା । ତଥାପି ସେ ସହଜେ ରାଗି ଯାଉଥିଲା । ତାର ନିଜ ଭାଇ ଭଉଣୀ ଓ ସ୍କୁଲର ଛୋଟ ପିଲାମାନେ ତାର ଅଭିମାନ

ଦେଖି ତାକୁ ଚିଡ଼େଇବାକୁ କୁଣ୍ଠିତ ହେଉ ନ ଥିଲେ । ଅଳ୍ପଦିନ ଭିତରେ ଆଖପାଖର ପିଲାମାନଙ୍କ ମଧ୍ୟରେ ସେ ଉପହାସର ପାତ୍ର ହୋଇ ଉଠିଲା । ଅନେକ ସମୟରେ ସେମାନେ ତାକୁ ଥଟ୍ଟା କଲା-ବେଳକୁ ସେ ନିଜକୁ ଦମନ କରିବାକୁ ଚେଷ୍ଟା କରୁଥିଲା ବା ହାତମୁଠା କରି ଲଢ଼େଇ କରିବାକୁ ବାହାରି ପଡ଼ୁଥିଲା । ସେ ଅନେକ ଥର ଲଢେଇ କରି ବଡ଼ ପିଲାଙ୍କଠାରୁ ମାଡ ଖାଇ ଗୋଟିଏ ବଡ଼ ଶିକ୍ଷା ପାଇଲା ଯେ ଅନ୍ୟ ପିଲାଙ୍କ ଠାରୁ ଦୂରରେ ରହିଲେ ସେମାନେ ତାକୁ ଉପହାସ କରିବେ ନାହିଁ ।

ସେହିଦିନଠାରୁ ଜର୍ଜ ନିଜର ଗୋଟିଏ କ୍ଷୁଦ୍ର ସୀମା ମଧ୍ୟରେ ଅଧିକରୁ ଅଧିକ ସମୟ କଟାଇବାକୁ ଲାଗିଲା । ସେ ଏକୁଟିଆ ହୋଇ ପଡ଼ିଆରେ ବୁଲି ଗୃହଆଡ଼ ଦେଖୁଥିଲା ଏବଂ ସେଣ୍ଟ୍ରାଲବ୍ରୁଜର ନିକଟରେ ଥିବା ଝରଣାଗୁଡ଼ିକ ଆବିଷ୍କାର କରୁଥିଲା । ବସନ୍ତ ଋତୁର ଶାନ୍ତିମୟ କାଳରେ ଦିନେ ଦିନେ ସେ ଛାୟା ଶୀତଳ ବୃକ୍ଷମୂଳରେ ଶୋଇ ନୀଳ ଆକାଶକୁ ଅନାଇ ରହୁଥିଲା ଏବଂ ପ୍ରକୃତିର ବିଚିତ୍ର କୌଶଳ ଦେଖି ବିସ୍ମିତ ହୋଇ ଯାଉଥିଲା । ଏଥିରେ ସେ ଯେଉଁ ଆନନ୍ଦ ପାଉଥିଲା, ସେପରି ଆନନ୍ଦ ସେ ଆଉ କାହିଁରେ ପାଇ ପାରୁ ନ ଥିଲା । ପକ୍ଷୀମାନେ କାହିଁକି ଆକାଶରେ ନିଶ୍ଚିନ୍ତରେ ଉଡ଼ି ପାରୁଛନ୍ତି ? ମାଟିରେ ଗୋଟିଏ ଛୋଟ ମଞ୍ଜି ପୋତି ଦେଲେ ସେଥିରୁ କିପରି ଗୋଟିଏ ବଡ଼ ଗଛ ହୋଇ ଫଳ ଧରୁଛି ଓ ପୁଣି ସେ ଫଳରୁ ଗଛ ହେଉଛି । ଏ ସବୁ ହେଉଛି କିପରି ? ଏହିପରି ପ୍ରଶ୍ନ ତା ମନରେ ଜାଗି ଉଠୁଥିଲା । ସେ ଭାବୁଥିଲା ଯେ ବଡ଼ ହେଲେ ସେ ଏହିସବୁ ପ୍ରଶ୍ନର ଉତ୍ତର ଜାଣି ପାରିବ ।

ସ୍କୁଲରେ ଗଣିତ ଓ ଚିତ୍ରାଙ୍କନ ଛଡ଼ା ଅନ୍ୟ କୌଣସି ବିଷୟରେ ଜର୍ଜର ଆଗ୍ରହ ଦେଖା ଯାଉ ନ ଥିଲା । କେବଳ ଏହି ଦୁଇଟି ବିଷୟରେ ସେ ଅନ୍ୟ ସବୁ ପିଲାଙ୍କୁ ବଳି ଯାଉଥିଲା । ଶିକ୍ଷୟିତ୍ରୀମାନେ ତାର ପଢା ବିଷୟରେ ତା ବାପ ମାଆଙ୍କ ପାଖରେ ଅଭିଯୋଗ କରୁଥିଲେ ।

ସେମାନେ ଦୁଃଖ କରି କହୁଥିଲେ, "ଜର୍ଜର ଯେ ଶିଖିବାର ଶକ୍ତି ନାହିଁ, ତାହା ନୁହେଁ । ପ୍ରକୃତ ପକ୍ଷରେ ସେ ଆମ ସ୍କୁଲର ଖୁବ୍ ବୁଦ୍ଧିମାନ୍

ପିଲାମାନଙ୍କ ମଧ୍ୟରୁ ଜଣେ । ସେ କେବଳ ଗଣିତ ଓ ଚିତ୍ରାଙ୍କନ ପ୍ରଭୃତି କଳା ବିଦ୍ୟା ଛଡ଼ା ଅନ୍ୟ କୌଣସି ବିଷୟରେ ଆଦୌ ଯତ୍ନ କରୁନାହିଁ ।

ପ୍ରାୟ ଏହି ସମୟରେ ବାଳକ ଜର୍ଜ ନିଜ ବାପାଙ୍କ କଳକବ୍‌ଜା ଦୋକାନରେ ଥିବା ବିସ୍ମୟକର ଜିନିଷଗୁଡ଼ିକର ସନ୍ଧାନ ପାଇଲା । ଏଥିରେ ବିସ୍ମିତ ହେବାର କାରଣ ଅଛି । ତାର ତିନି ବଡ଼ ଭାଇଯାକ କେହି କଳକବ୍‌ଜା ପ୍ରତି ଆଦୌ ଆଗ୍ରହ ପ୍ରକାଶ କରୁ ନ ଥିଲେ । ସବୁଠାରୁ ବଡ଼ ଭାଇ ଜେ'ର ବ୍ୟବସାୟ ପରିଚାଳନା ଦିଗରେ ଖୁବ୍ ମନ ଥିଲା । ତା ତଳ ଭାଇ ଜନ୍ ଧର୍ମ ଓ ସାମାଜିକ ସମସ୍ୟା ବିଷୟରେ ମନ ଦେଉଥିଲା । ସାହିତ୍ୟ ଆଲବର୍ଟର ପ୍ରିୟ ବିଷୟ ଥିଲା । ସେ ବଡ଼ କୌଶଳରେ ତର୍କ କରି ପାରୁଥିଲା । ସେ ଜଣେ ଭଲ ଓକିଲ ହେବ ବୋଲି ଜଣା ପଡ଼ୁଥିଲା । ହର୍ମାନ୍ ତ ଶିଶୁ । ଶିଶୁର ଖେଳ ଛଡ଼ା ଆଉ କେଉଁ ବିଷୟରେ ସେ କୃତିତ୍ୱ ଦେଖାଇ ପାରନ୍ତା ?

ଚାଲି ଶିଖୁଥିବା ବେଳୁ ଜର୍ଜ ତାର ବାପାଙ୍କ ଦୋକାନରେ କଳକବ୍‌ଜା ଦେଖି ଏକବାରକେ ମୁଗ୍ଧ ହୋଇ ଯାଇଥିଲା । ଏବେ ବିଭିନ୍ନ ହତିଆର ଓ ଯନ୍ତ୍ରର ବ୍ୟବହାର ସେ ଜାଣି ପାରିଲା । ଏ ସବୁର ସାହାଯ୍ୟରେ ଜଣେ ଜଣେ କୌଶଳୀ କାରିଗର ବିଭିନ୍ନ କାର୍ଯ୍ୟ କରୁଥିବାର ଦେଖି ସେ ଖୁବ୍ ଆନନ୍ଦିତ ହେଲା । ସେ ଆଉ ପଡ଼ିଆକୁ ବୁଲିବାକୁ ଗଲା ନାହିଁ କି ଆକାଶକୁ ଚାହିଁ ରହିଲା ନାହିଁ । ଏ ସବୁ ଛାଡ଼ି ଦେଇ ସେ ବାରମ୍ବାର ବାପାଙ୍କ ଦୋକାନକୁ ଗଲା । ବଡ଼ ବଡ଼ ଯନ୍ତ୍ରର ଘର୍ଘର ଶବ୍ଦ ତା କାନକୁ ସଙ୍ଗୀତର ମଧୁର ସ୍ୱର ପରି ଜଣା ଯାଉଥିଲା । ତତଲା ଲୁହା ଓ ଚର୍ବିର ଗନ୍ଧ ତାକୁ ଭଲ ଲାଗୁଥିଲା ।

ହତିଆରମାନଙ୍କର ବ୍ୟବହାର ଶିଖାଇ ଦେବାକୁ ସେ ବାପାଙ୍କୁ ବିଶେଷ ଅନୁରୋଧ କଲା । ଶେଷରେ ବାପା ଏଥିରେ ରାଜି ହେଲେ କିପରି ନିରାପଦରେ ଓ ଠିକ୍ ଭାବରେ ହତିଆର ବ୍ୟବହାର କରିବାକୁ ହେବ ତାହା ଜର୍ଜକୁ ଶିଖାଇ ଦେବାର ଭାର ସେ କେତେକ ଅଭିଜ୍ଞ କର୍ମୀଙ୍କ ଉପରେ ନ୍ୟସ୍ତ କଲେ । ଜର୍ଜ ଏ ସବୁ ଶୀଘ୍ର ଶିଖିଗଲା । ଅଳ୍ପ କେତେକ ମାସ ମଧ୍ୟରେ ସେ ସହଜ ନକ୍‌ସା ଦେଖି ତାର

ଅର୍ଥ ବୁଝି ପାରିଲା । ସେ ଗୋଟିଏ କୁନ୍ଦନ ଯନ୍ତ୍ର ବସାଇ ସେଥିରେ ଅନେକ ସହଜ କାମ କରି ପାରିଲା ।

ଦୋକାନରି କର୍ମଚାରୀମାନଙ୍କ ମଧ୍ୟରେ ରବିନ୍ସନ ବୋଲି ଜଣେ ଫୋରମ୍ୟାନ ଥିଲା । ତାର ସ୍ୱଭାବ ଅତି ଉତ୍ତମ । ପିଲାଟିର ଯନ୍ତ୍ରବିଦ୍ୟାପ୍ରତି ସ୍ୱାଭାବିକ ଅନୁରାଗ ଦେଖି ସେ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲା । ଘରର ଗୋଟିଏ ଭାଡ଼ ଉପରେ ଏକ କୋଣରେ ସେ ପିଲାଟି ପାଇଁ ଗୋଟିଏ ଛୋଟ କାରଖାନା କରିଦେଲା । ତାହାହେଲେ ସେ ସେଠାରେ ତାର କୌତୁକ ମେଣ୍ଟାଇ ପାରିବ । ଏହା ପରେ ଜର୍ଜ ଉପରଓଳିଟିସାକ ଏହିଠାରେ କଟାଇବାକୁ ଲାଗିଲା । ଛୋଟ ପାଣିଚକ (Water wheel) ଛୋଟ ବାଷ୍ପୀୟ ଯନ୍ତ୍ର (Steam Engine) ପ୍ରଭୃତି ନାନାପ୍ରକାର ଯାନ୍ତ୍ରିକ ଜିନିଷ ତିଆରି କରି ସେ ମନରେ ସନ୍ତୋଷ ଲାଭକଲା ।

ଅଳ୍ପକାଳ ମଧ୍ୟରେ ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ଦେଖିପାରିଲେ ଯେ ପ୍ରତିଦିନ ଦୋକାନକୁ ଯିବାହିଁ ଜର୍ଜର ପ୍ରଧାନ କାମ ହେଲାଣି । ସେ ମନେ ମନେ ଭାବିଲେ ଯେ ଜର୍ଜକୁ ଏହି ସୁବିଧା ଦେଇ ସେ ଏକ ମହାଭ୍ରମ କରିଅଛନ୍ତି । ଏଥିପୂର୍ବରୁ ଜର୍ଜ ପାଠପଢ଼ାରେ ଅମନୋଯୋଗୀ ଥିଲା; ଏବେ ସେ ସ୍କୁଲରେ ଫେଲ୍ ହେବାକୁ ବସିଲା । ଅନେକ ସମୟରେ ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ କାର୍ଯ୍ୟ ଉପଲକ୍ଷରେ ସହର ଛାଡ଼ି ବାହାରକୁ ଚାଲି ଯାଉଥିଲେ । ଫେରି ଆସି ଦେଖୁଥିଲେ ଯେ ଜର୍ଜ ତାର ଛୋଟ କାରଖାନାରେ ସମୟ କଟାଇ ସ୍କୁଲକୁ ଯାଇନାହିଁ ।

ସେ ଦେଖିଲେ ଯେ ପୁଅ ଅନ୍ୟ ପିଲାଙ୍କ ସାଥିରେ ଖେଳିବାପାଇଁ ଉତ୍ସାହ ବା ଆଗ୍ରହ ପ୍ରକାଶ କରୁନାହିଁ । ଏହା ଦେଖି ତାଙ୍କର ଚିନ୍ତା ବଢ଼ିଗଲା । ସେ ନିଜର ସ୍ତ୍ରୀଙ୍କୁ ବିଶ୍ୱାସରେ କହିଲେ ଯେ ଏହାର କିଛି ପ୍ରତିକାର କରିବାକୁ ହେବ । ସ୍ତ୍ରୀ ମଧ୍ୟ ଏଥିରେ ଏକମତ ହେଲେ । କିନ୍ତୁ କଅଣ କରିବାକୁ ହେବ ?

ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ରାଗରେ କହିଲେ, "ମୁଁ ତାକୁ ମନା କରିଦେବି ଯେ ସେ ଆଉ ଦୋକାନକୁ ଆସି ପାରିବ ନାହିଁ । ତାର

ଉପଯୁକ୍ତ ସ୍ଥାନ ହେଉଛି କ୍ଲାସଘର, ତା ନ ହେଲେ ସେ କିଛି ହେବ ନାହିଁ ।”

ମିସେସ୍ ଓୟେଷ୍ଟିଙ୍ଗହାଉସ ବୁଦ୍ଧିମତ୍ତାର ପରିଚୟ ଦେଇ କହିଲେ, “ଏପରି ମନା କରିଦେଲେ ଆମେ ଯାହା କରିବାକୁ ମନା କରିବା ସେ ତାହା ପ୍ରକାଶ୍ୟରେ ନ କରି ଗୋପନରେ କରିବାକୁ ଚେଷ୍ଟା କରିବ ।”

ସ୍ୱାମି ଚିନ୍ତିତ ହୋଇ ଓଠର ଦାଢ଼ି ଉପରେ ହାତ ବୁଲାଇଲେ । ସେ ଭାବିଲେ ଯେ ସ୍ତ୍ରୀଙ୍କର କଥା ଠିକ୍ । ତଥାପି କିଛି ନା କିଛି ପ୍ରତିକାର କରିବାକୁ ହେବ ।

ମିସେସ୍ ଓୟେଷ୍ଟିଙ୍ଗହାଉସ କହିଲେ, “ଆଚ୍ଛା, ଗୋଟିଏ କଥା କରାଯାଉ । ତାକୁ ଦୋକାନକୁ ଯିବାକୁ ଦିଆଯାଉ କିନ୍ତୁ ଦିନକେ ମାତ୍ର ଘଣ୍ଟାଏ ଦୁଇ ଘଣ୍ଟାପାଇଁ ଏହି ସୁବିଧା ଦେବା । ଏହା ଛଡ଼ା ତାକୁ କହିବା ଯେ ସେ କ୍ଲାସରେ ସବୁ ବିଷୟରେ ପାଶ୍ କଲେ ଏହି ସୁବିଧା ପାଇବ, ପାଶ୍ ନ କଲେ ପାଇବ ନାହିଁ ।”

ଏହି ପ୍ରସ୍ତାବରେ ମିଷ୍ଟର ଓୟେଷ୍ଟିଙ୍ଗହାଉସ ସ୍ୱୀକୃତ ହେଲେ । ଏହା ଭଲ ଫଳ ମଧ୍ୟ ଦେଲା ।

ଜର୍ଜର ମନରେ ଗୋଟାଏ ଭୟ ଯେ ପାଠପଢ଼ା ନ ହେଲେ ଦୋକାନରେ କାମ କରିବାର ସୁବିଧା ମିଳିବ ନାହିଁ । ତେଣୁ ଜର୍ଜ ସ୍କୁଲ୍ ପଢ଼ାପାଇଁ ଅନ୍ତତଃ ଯେତିକ ନ ହେଲେ ନ ଚଳେ ସେତିକ ପରିଶ୍ରମ କଲା । ହସ୍ତାକ୍ଷର, ବନାନ, ବ୍ୟାକରଣ ପ୍ରଭୃତି ବିଷୟ ପ୍ରତି ତାର ଗୋଟାଏ ବିତୃଷ୍ଣା ରହିଥିଲା ସତ, ତଥାପି ସେ ପୂର୍ବ ଅପେକ୍ଷା ଏ ସବୁ ବିଷୟରେ ବେଶି ନମ୍ବର ପାଇଲା ।

ଯେଉଁ ସାମୟିକ ସମସ୍ୟା ଉପୁଜିଥିଲା, ତାର ସମାଧାନ ହୋଇଗଲା ସତ; ମାତ୍ର ମିଷ୍ଟର ଓୟେଷ୍ଟିଙ୍ଗହାଉସଙ୍କ ମନ ଭିତରେ ଯେଉଁ ଅଶାନ୍ତି ଜାଗିଥିଲା, ତାହା ଦୂର ହେଲା ନାହିଁ । ଭିତରେ ଭିତରେ ସେ ନିଜକୁ ଭାଗ୍ୟବାନ ମନେ କରୁଥିଲେ ଯେ ତାଙ୍କ ପୁଅମାନଙ୍କ ମଧ୍ୟରୁ ଅନ୍ତତଃ

ଜଣେ ତାଙ୍କର ହତିଆର ଚଳାଇବାର ଦକ୍ଷତା ଓ କଳକବ୍‌ଜା ପ୍ରତି ଆଦରର ଉତ୍ତରାଧିକାରୀ ହୋଇ ପାରିଛି । ତଥାପି ତାଙ୍କର ଗୋଟିଏ ଚିନ୍ତା ଥିଲା । ସେ ଆଶଙ୍କା କରୁଥିଲେ ଯେ ଜର୍ଜ ଶେଷକୁ ଜଣେ ସାମାନ୍ୟ ମିସ୍ତ୍ରୀ ବା କାରିଗର ହୋଇ ରହିବାକୁ ସ୍ଥିର କରିପାରେ ।

ସେ ଯେ ବଡ଼ଲୋକ ଦେଖାଇବାକୁ ଚାହୁଁଥିଲେ, ତାହା ନୁହେଁ । ସେ ନିଜେ ଜଣେ ମିସ୍ତ୍ରୀ ଥିଲେ ସତ, କିନ୍ତୁ ସେ ଜଣେ ଅତି ଉତ୍ତମ କାରିଗର ଥିଲେ । ଗୋଟିଏ ଲାଭଜନକ ବ୍ୟବସାୟ ପ୍ରତିଷ୍ଠା କରିଥିବାରୁ ନିଜର କୌଶଳ ଓ ସଫଳତା ଲାଗି ସେ ଗର୍ବ ଅନୁଭବ କରୁଥିଲେ । ତାଙ୍କ ପକ୍ଷରେ ଲଜ୍ଜା ଅନୁଭବ କରିବାର କୌଣସି କାରଣ ନ ଥିଲା । ଜୀବିକା ଅର୍ଜନ ପାଇଁ ଅନେକ ନିଜର ହାତ ଉପରେ ନିର୍ଭର କରି କୃତିତ୍ୱ ଲାଭ କରିଥିବାର ଦେଖାଯାଏ; ମାତ୍ର ସେମାନଙ୍କର ଅଭିଳାଷ ଥାଏ ଯେ ସେମାନଙ୍କ ପୁତ୍ରମାନେ ଯେପରି ବ୍ୟବସାୟରେ ସୁନାମ ଅର୍ଜନ କରନ୍ତି । ମିଷ୍ଟର ଓ୍ୱେଷ୍ଟିଂହାଉସଙ୍କର ମଧ୍ୟ ଠିକ୍ ସେହିପରି ଅଭିଳାଷ ଥିଲା । ସେ ସ୍ୱପ୍ନ ଦେଖୁଥିଲେ ଯେ ତାଙ୍କର ପୁଅମାନେ କଲେଜରେ ପାଠ ପଢ଼ି କିଏ ଡାକ୍ତର ହେବ, କିଏ ଓକିଲ ହେବ, କିଏ ଅବା ଧର୍ମଯାଜକ ହେବ, କିନ୍ତୁ ସେ ଜର୍ଜଠାରେ ଏ ସ୍ୱପ୍ନ ସଫଳ ହେବାର ଆଶା ଆଦୌ ଦେଖି ପାରି ନ ଥିଲେ ।

୧୮୫୬ ଖ୍ରୀଷ୍ଟାବ୍ଦ ବେଳକୁ ଜର୍ଜର ବୟସ ପ୍ରାପ୍ତ ଦଶ ବର୍ଷ ସେତିକିବେଳକୁ ଜ: ଓ୍ୱେଷ୍ଟିଂହାଉସ କମ୍ପାନୀ ଏପରି ଭଲ ବ୍ୟବସାୟ ଚଳାଉଥାଏ ଯେ ଏହାର ମାଲିକ କମ୍ପାନୀର ବ୍ୟବସାୟକୁ ଯଥେଷ୍ଟ ପରିମାଣରେ ପ୍ରସାରିତ କରିବାକୁ ସ୍ଥିର କଲେ । ସେ କ୍ଲାଉଟ ପରିବାରର ଦୁଇ ଭାଇଙ୍କ ସଙ୍ଗେ ଭାଗୀଦାର ଭାବରେ ବ୍ୟବସାୟ ଚଳାଇବାକୁ ଏକ ଚୁକ୍ତିରେ ଆବଦ୍ଧ ହେଲେ । ଏହି ଚୁକ୍ତିରେ ଏକ ସର୍ତ୍ତ ରହିଲା ଯେ କାରଖାନାଟିକୁ ଶେନେକଟାଡ଼ିକୁ ଉଠାଇ ନିଆଯିବ; କାରଣ ସେଠାରେ କଞ୍ଚାମାଲ ଶସ୍ତାରେ ମିଳି ପାରିବ ଓ ଜିନିଷପତ୍ର ନେବା ଆଣିବା ସୁବିଧା ଜନକ ହେବ ।

ଇରି କେନାଲର ଦକ୍ଷିଣପାର୍ଶ୍ୱରେ ଗୋଟିଏ ଘର ଥିଲା । ଏହା ପୂର୍ବେ ସିମେଣ୍ଟ କାରଖାନାରୂପେ ବ୍ୟବହୃତ ହେଉଥିଲା । କମ୍ପାନୀ ଏହି

ଘରଟିକୁ ଏପ୍ସ କରି କାରଖାନାରୂପେ ବ୍ୟବହାର କଲେ । କାରଖାନାର ସ୍ଥାନ ପରିବର୍ତ୍ତନ ସଙ୍ଗେ ଓ୍ୱେଷ୍ଟିଂହାଉସ ପରିବାର ସେଣ୍ଟ୍ରାଲବ୍ରିଜ୍ ପରିତ୍ୟାଗ କରି ଶେନେକଟାଡ଼ି ସହରର ଗୋଟିଏ ସୁନ୍ଦର ଇଷ୍ଟକ-ନିର୍ମିତ ଗୃହରେ ବାସ କରିବାକୁ ଲଗିଲେ ।

ମିଷ୍ଟର ଓ୍ୱେଷ୍ଟିଂହାଉସ ଆଶା କରିଥିଲେ ଯେ ଏହି ନୂତନ ପରିବେଶରେ ତାଙ୍କର ଦଶବର୍ଷ ବୟସ୍କ ପୁତ୍ର ଜର୍ଜର କିଛି ପରିବର୍ତ୍ତନ ହେବ । ସେ ଆଉ କେବଳ କଳକବ୍‌ଜାରେ ଲଗି ଆନନ୍ଦ ଲଭ କରିବାକୁ ଇଚ୍ଛା କରିବ ନାହିଁ । କିନ୍ତୁ ଅତି ଅଳ୍ପ ଦିନ ମଧ୍ୟରେ ତାଙ୍କର ଏହି ଆଶା ବୃଥା ବୋଲି ପ୍ରମାଣିତ ହେଲା । ନୂତନ ସ୍ଥାନରେ, ନୂତନ କାରଖାନା ଯନ୍ତ୍ରପାତି ତାହାର ଆଗ୍ରହକୁ ବରଂ ଉତ୍ତେଜିତ କଲା ।

ଯାହାହେଉ ଶେନେକଟାଡ଼ିକୁ ଆସିବାହାରୁ ତାଙ୍କର ଗୋଟିଏ ଲଭ ହେଲା । ବାଳକ ଜର୍ଜର ଶିକ୍ଷାପ୍ରତି ମନୋଭାବରେ କିଛି ପରିବର୍ତ୍ତନ ଦେଖାଗଲା । ସହରରେ ତାଙ୍କୁ ଜଣେ ଶିକ୍ଷୟିତ୍ରୀଙ୍କ ତତ୍ତ୍ୱାବଧାନରେ ରଖାଗଲା । ଏହି ଶିକ୍ଷୟିତ୍ରୀ ଜର୍ଜକୁ ଉତ୍ତମରୂପେ ବୁଝି ପାରିଥିଲେ । ଜର୍ଜ ତାଙ୍କ ଶ୍ରେଣୀରେ ପ୍ରବେଶ କଲା ଦିନରୁ ଶିକ୍ଷୟିତ୍ରୀ ମିସ୍ ଏଲିସ ଗିଲବର୍ଟ ଜାଣି ପାରିଥିଲେ· ଯେ ବାଳକଟିର ଅସାଧାରଣ ପ୍ରତିଭା ଅଛି; ତେଣୁ ତାକୁ ଶିକ୍ଷା ଦେବାପାଇଁ ଅସାଧାରଣ ପ୍ରଣାଳୀ ଅବଲମ୍ବନ କରିବାକୁ ହେବ ।

ତାର କଳକବ୍‌ଜା ପ୍ରତି ଥିବା ଆଗ୍ରହକୁ ଶିକ୍ଷୟିତ୍ରୀ ଉତ୍ସାହିତ କରୁଥିବାର ଦେଖି ଜର୍ଜ ବିସ୍ମିତ ହୋଇଗଲା । ସେଣ୍ଟ୍ରାଲ ବ୍ରିଜର ସ୍କୁଲରେ ପଢ଼ୁଥିବାବେଳେ ଠିକ୍ ଏହି ଆଗ୍ରହ ପାଇଁ ତାକୁ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ଠାରୁ ନାନା ଭର୍ତ୍ସନ ଶୁଣିବାକୁ ହେଉଥିଲା । କିନ୍ତୁ ଏଠାରେ କି ବିପରୀତ ବ୍ୟବହାର ?

ମିସ୍ ଗିଲବର୍ଟ ଜର୍ଜକୁ କହୁଥିଲେ, "ବୁଦ୍ଧି ଥିଲେ, ତୁମର ଯେଉଁ ବିଷୟ ପ୍ରତି ଆଗ୍ରହ, ତା ସମ୍ବନ୍ଧରେ ସବୁ କଥା ନିଜେ ନିଜେ ଆବିଷ୍କାର କରିପାରିବ । ଜୀବନରେ ସଫଳତା ପାଇଁ, ପୂର୍ଣ୍ଣତା ପାଇଁ ଏହାହିଁ ଏକମାତ୍ର

ଉପାୟ ।'' ଯେଉଁସବୁ ବିଷୟ ପ୍ରତି ଜର୍ଜର ଆଦୌ ଆଗ୍ରହ ନ ଥିଲା ଏବଂ ଯାହାଠାରୁ ସେ ଦୂରେଇ ରହୁଥିଲା, ସେହିସବୁ ବିଷୟ ପ୍ରତି ମିସ୍ ଗିଲବର୍ଟ ଆସ୍ତେ ଆସ୍ତେ ଜର୍ଜର ଆଗ୍ରହ ସୃଷ୍ଟି କଲେ ଏବଂ ସେ ସେହି ସବୁ ବିଷୟରେ ନାନା ଅନୁସନ୍ଧାନ କରିବାକୁ ଲାଗିଲା ।

ଦିନେ ସେ ଧୀର ଭାବରେ ଜର୍ଜକୁ ପଚାରିଲେ, ''ତୁମେ କଅଣ ହେବାକୁ ଇଚ୍ଛା କର ? ଜଣେ ବୈଜ୍ଞାନିକ ? କି ଜଣେ ରାଜନୀତିଜ୍ଞ ? କି ଜଣେ ପ୍ରସିଦ୍ଧ ସେନାପତି ? ତୁମେ ଯାହା ହେବାକୁ ଚାହଁ ନା କାହିଁକି ସେହି ପଦରେ କୃତିତ୍ୱ ଅର୍ଜିବାକୁ ହେଲେ ଏହି ପୃଥିବୀ ବିଷୟରେ ତୁମର ଗୋଟିଏ ସ୍ଥୂଳ ଧାରଣା ଥିବା ଦରକାର । ମନୁଷ୍ୟର ଜ୍ଞାନ ବିଷୟରେ ଅନୁସନ୍ଧାନ କରି ଯାହା ଅନାବଶ୍ୟକ ବୋଧ ହେବ, ତାହାକୁ ତ୍ୟାଗ କରିପାର । ଠିକ୍‌ଏ ଚେଷ୍ଟାକଲେ ଏ ସବୁ ତୁମକୁ ବିଶେଷ ଆନନ୍ଦଦାୟକ ହେବ । ମୁଁ ଯାହା କହୁଛି, ବୁଝିଲ ?''

ଜର୍ଜ ସ୍ଥିର ଭାବରେ କିଛି ବୁଝି ପାରି ନ ଥିଲେ ସୁଦ୍ଧା 'ହଁ' ଭରିଲା । କିନ୍ତୁ କେତେକ ମାସ ମଧ୍ୟରେ ସେ ଦେଖିଲା ଯେ ନିତାନ୍ତ ନୀରସ ବିଷୟକୁ ମଧ୍ୟ ସରସ କରି ଶିକ୍ଷା ଦେବାରେ ମିସ୍ ଗିଲବର୍ଟଙ୍କର ଅଦ୍ଭୁତ ଶକ୍ତି ଅଛି । ସେ ଅନେକ ପୁସ୍ତକ ଅଧ୍ୟୟନ କରିଥିଲେ । ଇତିହାସ, ସାହିତ୍ୟ ଏପରି କି ବ୍ୟାକରଣଭଳି ନୀରସ ବିଷୟ ସମ୍ବନ୍ଧରେ ସେ ଯାହାସବୁ ଶିକ୍ଷା ଦେଉଥିଲେ, ସେସବୁ ତାହାର ଆଗ୍ରହ ଜନ୍ମାଉଥିଲା ଏବଂ ସେ ସବୁ ଯଥାର୍ଥରେ ମୂଲ୍ୟବାନ୍ ଥିଲା ।

ଅଳ୍ପ ଦିନ ମଧ୍ୟରେ ଜର୍ଜ ଦେଖି ପାରିଲେ ଯେ ତାହାର ରଚନା ଲେଖିବାର ଶକ୍ତି ଅଛି । ମିସ୍ ଗିଲବର୍ଟ ତାହାକୁ କଳକବ୍‌ଜା, କାରଖାନା ଓ ସେହିପରି ତା'ର ପ୍ରିୟ ବିଷୟରେ ରଚନା ଲେଖିବାକୁ ଦେଉଥିଲେ । କୌଣସି ବୈଜ୍ଞାନିକ ବିଷୟରେ ବା କଳକବ୍‌ଜା ବିଷୟରେ ରଚନା ଲେଖିଲାବେଳେ ସେ ନିଜର ଭାବକୁ ସରଳ ଭାଷାରେ ଓ ସ୍ୱଚ୍ଛଭାବରେ ପ୍ରକାଶ କରୁଥିଲା । କିନ୍ତୁ ଏଥିପୂର୍ବରୁ କୌଣସି ପ୍ରକାର ରଚନା ଲେଖିବାକୁ ତାର ବିରକ୍ତି ଆସୁଥିଲା । ଏବେ ସେ ନିଜର କୃତିତ୍ୱରେ ଆନନ୍ଦଲାଭ କରିବାକୁ ଲାଗିଲା ।

ଏସବୁ ଦେଖି ମିଷ୍ଟର ଓ୍ୱେଷ୍ଟିଙ୍ଗ ହାଉସ ଘୋର ସନ୍ଦେହରେ ପଡ଼ିଲେ । ପୁଅଟି କେବଳ କଳକବ୍ଜା ବିଷୟରେ ଆଗ୍ରହୀ ଥିବାର ଦେଖି ସେ ଶଙ୍କିତ ଥିଲେ । ଏବେ ସେ ଦେଖିଲେ ଯେ ଶିକ୍ଷୟିତ୍ରୀ ପ୍ରକୃତ ପକ୍ଷରେ ତାକୁ ଏ ଦିଗରେ ଉତ୍ସାହ ଦେଉଅଛନ୍ତି । ଦିନେ ସେ ସ୍ତ୍ରୀଙ୍କୁ ସଙ୍ଗରେ ଘେନି ସ୍କୁଲକୁ ଗଲେ । ସେଠାରେ ମିସ୍ ଗିଲବର୍ଟଙ୍କୁ ସ୍ପଷ୍ଟଭାବରେ କହିଲେ, "ଏଠାରେ ଯାହା ହେଉଛି, ସେଥିରେ ଆମ୍ଭେ-ମାନେ ବିଶେଷ ଶଙ୍କିତ ।"

ସେମାନଙ୍କୁ ଆଶ୍ୱସନା ଦେଇ ଶିକ୍ଷୟିତ୍ରୀ କହିଲେ, "ମହାଶୟ, ଜର୍ଜ ଗୋଟିଏ ଅସାଧାରଣ ପିଲା । ସେ ବଡ଼ ଅଭିମାନୀ ଓ ତାହାର ମନର ଦୃଢ଼ତା ଅଛି । ଯେଉଁମାନେ ଖୁବ୍ ଶକ୍ତିଶାଳୀ, ସେମାନେ ସାଧାରଣତଃ ଏହିପରି ହୋଇଥାନ୍ତି । ସେମାନେ ଜ୍ଞାନ ରାଜ୍ୟରେ ଯେତେ ଦୂର ପ୍ରବେଶ କରିପାରିବେ, ସେତେଦୂର ପର୍ଯ୍ୟନ୍ତ ସେମାନଙ୍କୁ ପଥ ଦେଖାଇବାକୁ ହେବ, ତାହାହେଲେ ଶୀଘ୍ର ହେଉ ବା ବିଳମ୍ବରେ ହେଉ ସେମାନେ ଦିନେ ନିଜ ନିଜର ଉପଯୁକ୍ତ କ୍ଷେତ୍ର ସ୍ଥିର କରି ପାରିବେ । ଜର୍ଜର ଯନ୍ତ୍ରପାତି ଓ କଳକବ୍ଜା ବିଷୟରେ ଆଗ୍ରହ ଅଛି । ତାକୁ ସେ ଦିଗରେ ଉତ୍ସାହ ଦେବା ଦ୍ୱାରା ଲାଭ ଛଡ଼ା କ୍ଷତି ନାହିଁ । କିନ୍ତୁ ଏହା ସଙ୍ଗେ ସଙ୍ଗେ ଦେଖିବାକୁ ହେବ ଯେ ସେ ଯେପରି ତାର ଶିକ୍ଷାର ଅନ୍ୟାନ୍ୟ ବିଭାଗ ପ୍ରତି ଅବହେଳା ନ କରେ ।"

ସ୍କୁଲର ଅନ୍ୟାନ୍ୟ ପାଠ୍ୟବିଷୟରେ ସେ କିପରି ଜର୍ଜର ଆଗ୍ରହ ସୃଷ୍ଟି କରି ପାରି ଅଛନ୍ତି ତାହା ସେ ବର୍ଣ୍ଣନା କଲେ ।

ମିଷ୍ଟର ଓ୍ୱେଷ୍ଟିଙ୍ଗ ହାଉସ କହିଲେ, "ତା ହୋଇପାରେ । କିନ୍ତୁ ସେ ଏହି ଅଳ୍ପ ବୟସରେ ମୋ କାରଖାନାରେ ଏତେ ସମୟ ଅତିବାହିତ କରିବା ଆପଣ ଉଚିତ ମନେ କରନ୍ତି କି ? ସେ ଯେପରି ଭାବରେ ଗତି କରୁଛି, ସେଥିରୁ ମୋର ଆଶଙ୍କା ହେଉଛି ଯେ ଶେଷରେ ସେ ଗୋଟିଏ ସାଧାରଣ ମିସ୍ତ୍ରୀ ଛଡ଼ା ଆଉ କିଛି ହୋଇ ପାରିବ ନାହିଁ । ଆମର ପିଲାମାନଙ୍କ ସମ୍ବନ୍ଧରେ ଏହା ଅପେକ୍ଷା ଉଚ୍ଚତର ଆଶା ଆମେ ପୋଷଣ କରିଅଛୁ ।"

ଏହା ଶୁଣି ମିସ୍ ଗିଲ୍‌ବର୍ଟ ଟିକିଏ ହସି କହିଲେ, "ଅନେକ ସମୟରେ ପିତା ମାତା ନିଜର ଇଚ୍ଛା ଅନୁସାରେ ପିଲାଙ୍କୁ କୌଣସି ଗୋଟାଏ ନିର୍ଦ୍ଦିଷ୍ଟ ଛାଞ୍ଚରେ ପକାଇବାକୁ ବସନ୍ତି ; କିନ୍ତୁ ଜର୍ଜ ଏପରି ଦୃଢ଼ମନା ଯେ ତାକୁ କୌଣସି ଛାଞ୍ଚରେ ପକାଇ ଗଢ଼ି ହେବ ନାହିଁ । ଆପଣମାନେ ତା ସମ୍ବନ୍ଧରେ ଯେତେ ଉଚ୍ଚ ଆଶା ପୋଷଣ କରିଥାନ୍ତୁ ପଛକେ ସେ ଯଦି ମିସ୍ତ୍ରୀ ହେବାକୁ ଇଚ୍ଛାକରେ, ତେବେ ଆପଣ କେବେହେଲେ ତାକୁ ସେଥିରୁ ନିବୃତ୍ତ କରି ପାରିବେ ନାହିଁ । ଯେଉଁ ଜୀବିକାକୁ ସେ ଭଲ ନ ପାଏ, ସେଥିରେ ତାହାକୁ ପ୍ରବେଶ କରାଇବା ପାଇଁ କାହାର ସାଧ୍ୟ ନାହିଁ । ବ୍ୟକ୍ତିଗତ ଭାବରେ ମୋର ଦୃଢ଼ ବିଶ୍ୱାସ ଯେ ଜର୍ଜ ଯେପରି ବୁଦ୍ଧିମାନ୍ ଓ ଚପଳ, ସେ କେବେହେଲେ ସାମାନ୍ୟ ମିସ୍ତ୍ରୀ ହୋଇ ସନ୍ତୁଷ୍ଟ ରହିପାରିବ ନାହିଁ ।

ମିସ୍ ଗିଲବର୍ଟଙ୍କ କଥାରେ ମିଷ୍ଟର ଓୟେଷ୍ଟିଂହାଉସଙ୍କର ଆସ୍ଥା ଜନ୍ମିଲା । ଘରକୁ ଫେରି ଯିବା ପରେ ସେ ପୁଅ ବିଷୟରେ ଗୋଟିଏ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ।



## ଦୁଇ

# ଦେଶପ୍ରେମୀ ବାଳକ

"ଜର୍ଜ !"

"ବାପା, କଅଣ କହୁଛନ୍ତି ?"

"ମୋ ପାଖକୁ ଆ । ମୁଁ ତୋତେ କିଛି କହିବାକୁ ଚାହେଁ ।"

ଜର୍ଜ ଅତି ସନ୍ତର୍ପଣରେ ବାପାଙ୍କ ପାଖକୁ ଗଲା । ସେ ଭାବିଲା, "ମୁଁ କଅଣ କିଛି ଦୋଷ କରିଛି ? ବର୍ତ୍ତମାନ ମୋର କଅଣ ବିପଦ ଉପସ୍ଥିତ ?"

ପିତାଙ୍କ ମୁଖଭଙ୍ଗୀରୁ ସେ କିଛି ସୂଚନା ପାଇ ପାରିଲା ନାହିଁ ।

ମିଷ୍ଟର ଓ୍ୱେଷ୍ଟିଂହାଉସ ଧୀର ସ୍ୱରରେ କହିଲେ, "ଜର୍ଜ, ମୁଁ ତୋ ପାଇଁ ଗୋଟିଏ ପ୍ରସ୍ତାବ କରୁଛି । କାରଖାନାରେ ଚାକିରି କରିବାକୁ ତୋର ଇଚ୍ଛା ଅଛି କି ?"

ଜର୍ଜ ନିଜକୁ ସାବଧାନ କରିନେଲା । ଏ ପ୍ରସ୍ତାବଟି ତା ପକ୍ଷରେ ଏକାନ୍ତ ବିସ୍ମୟଜନକ । ମାସ ମାସ ଧରି ବାପା ତାହା ଉପରେ ବିରକ୍ତ ହେଉଥିଲେ ଯେ ସେ କାରଖାନାରେ ବହୁତ ସମୟ କଟାଉଅଛି । ଏବେ ସେ ନିଜେ ତାକୁ ସେହି କାରଖାନାରେ କାମ କରିବାକୁ କହୁ ଅଛନ୍ତି !

ଜର୍ଜ ଅତି ସାବଧାନରେ ସାହସ ବାନ୍ଧି ପଚାରିଲା, "ବାପା, କଅଣ ମଜୁରି ନେଇ କାମ କରିବା କଥା କହୁଛନ୍ତି ?" ମିଷ୍ଟର ଓ୍ୱେଷ୍ଟିଂହାଉସ

ଟିକଏ ହସି ହସି କହିଲେ, "ହଁ, ମଜୁରି ନେଇ କାମ କରିବା କଥା କହୁଛୁ । ଏଇଟା ହେଉଛି ଜୁନ ମାସ । ଅଳ୍ପ ଦିନ ପରେ ସ୍କୁଲ ବନ୍ଦ ହେବ । ତୁ ଯଦି ସ୍ୱୀକୃତ ହେଉ, ତେବେ ଏହି ଗ୍ରୀଷ୍ମ ଛୁଟିପାଇଁ ମୁଁ ତୋତେ କାରଖାନାରେ ଜଣେ ଶିକ୍ଷାନବିସ ମିସ୍ତ୍ରୀ କାର୍ଯ୍ୟ ଦେଇପାରେ ।"

ଜର୍ଜ ମନେ ମନେ ଖୁବ ଆନନ୍ଦିତ ହେଲା, କିନ୍ତୁ ବାହାରେ ସେ ସେହି ଆନନ୍ଦ ପ୍ରକାଶ ନ କରି ବ୍ୟବସାୟୀ ଢ଼ଙ୍ଗରେ ପଚାରିଲା, "ମୁଁ କେତେ ମଜୁରି ପାଇବି ?" ତାହାର ବାପା ହସକୁ ଚାପିରଖି ଗଳା ସଫା-କରି କହିଲେ, "ହଁ, ମୁଁ ଭାବୁଛି ଯେ ଜଣେ ନୂଆ ଶିକ୍ଷାନବିସ ପକ୍ଷରେ ସପ୍ତାହକୁ ଦୁଇ ଡଲାର ମଜୁରି ଉଚିତ ହେବ ।"

ତାହାର ବାପା କୌଣସି ବ୍ୟବସାୟ ବିଷୟରେ ଆଲୋଚନା କଲାବେଳେ ଭ୍ରୂଲତାକୁ କୁଞ୍ଚିତ କରିବାର ସେ ଦେଖିଥିଲା । ସେ ନିଜେ ସେହିପରି କରି ଶେଷରେ କହିଲା, "ହଁ ବାପା, ସପ୍ତାହକୁ ଦୁଇ ଡଲାର ନ୍ୟାଯ୍ୟ ମଜୁରି ହେବ ।"

ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ କହିଲେ, "ବେଶ୍, ଏବେ କଥା ଛିଡ଼ିଲା; କିନ୍ତୁ ମନେରଖିଥା, ତୋତେ କାରଖାନାର ଜଣେ ଶ୍ରମିକ ହେବାକୁ ହେବ । କାମ କଲାବେଳେ ତୁ କାରଖାନାମାଲିକର ପୁଅ ନୋହୁ, ଜଣେ ଶ୍ରମିକ ମାତ୍ର । କାମ କରି ତୋତେ ମଜୁରି ଅର୍ଜିବାକୁ ହେବ । ଅନ୍ୟାନ୍ୟ ଶିକ୍ଷାନବିସଙ୍କ ପ୍ରତି ଯେଉଁପରି ବ୍ୟବହାର ହୁଏ, ତାହାଠାରୁ କୌଣସି ଭିନ୍ନ ପ୍ରକାର ବ୍ୟବହାର ତୁ ଆଶା କରିବୁ ନାହିଁ । ତୋତେ ପ୍ରତିଦିନ ପୂର୍ବ ନିର୍ଦ୍ଦିଷ୍ଟ ସମୟପାଇଁ କାମ କରିବାକୁ ହେବ । ସପ୍ତାହରେ ଛଅ ଦିନ । କାରଖାନାର ଫୋରମାନ ଯେଉଁ କାମ ବରାଦ ଦେବ ତାହା କରିବାକୁ ପଡ଼ିବ । ସବୁ ବୁଝିଲୁତ ?"

ଜର୍ଜର ମନ ଆନନ୍ଦରେ ଉଲୁସି ଉଠୁଥାଏ । ସେ ସେହି ଭାବ ପ୍ରକାଶ ନ କରି କେବଳ ମୁଣ୍ଡ ନୁଆଇଁ ସ୍ୱୀକୃତି ଜଣାଇଲା ।

ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ଏହି ଯେଉଁ ପ୍ରସ୍ତାବ ଦେଲେ, ସେଥିରେ ତାଙ୍କ ସ୍ତ୍ରୀଙ୍କର ମନ ଆଦୌ ମାନିଲା ନାହିଁ । ସେ ସ୍ୱାମୀଙ୍କୁ କହିଲେ, "ସେ

ଯାହା ହେଉ ନା କାହିଁକି, ପିଲାଟାର ବୟସ ହେଲା ମୋଟେ ବାର ବର୍ଷ । ଏ ଖରାଦିନଯାକ ତାକୁ ପ୍ରତ୍ୟହ ନଅ ଦଶ ଘଣ୍ଟା କାମ କରାଇବାକୁ ଯାଉଛ । ତୁମେ ଯାହା ଇଚ୍ଛା ତାହା ମନରେ ପାଞ୍ଚିଥାଅ ପଛକେ, ଏହା ମୋତେ ଭଲ ବୋଧ ହେଉନାହିଁ ।"

ସ୍ୱାମୀ ଉତ୍ତର କଲେ, "ତୁମର ଆଶଙ୍କା ବୃଥା । ଜର୍ଜ ଗୋଟିଏ ବେଶ୍ ବଳୁଆ ପିଲା । କଠିନ ପରିଶ୍ରମ କଲେ ତାର ଉପକାର ହେବ । ତା ଛଡ଼ା ମିସ୍ ଗିଲବର୍ଟ କହିଲେ ଯେ ସେ ବଡ଼ ଜିଦ୍‌ଖୋର । ତାର କୌଣସି ଇଚ୍ଛାରୁ ତାକୁ ନିବର୍ତ୍ତାଇ ହେବ ନାହିଁ । ତାଙ୍କ କଥା ଯଦି ଠିକ୍ ହୋଇଥାଏ, ତେବେ ସେ ନିଜେ ପରୀକ୍ଷା କରି ଦେଖୁ, କାରଖାନାରେ ମଜୁରି ପାଇଁ କାମ କରିବା କେଡ଼େ କଠିନ । ଆଉ କିଛି ନ ହେଉ ପଛକେ, ଏଥିରୁ ସେ ବୁଝିପାରିବ ଜଣେ ସାଧାରଣ ମିସ୍ତ୍ରୀର ଜୀବନ ଯେଡ଼େ ସୁଖକର ବୋଲି ସେ ମନେ କରୁଛି, ପ୍ରକୃତରେ ତାହା ନୁହେଁ । ଖେଳନା ପରି କାରଖାନାର ହାତହତିଆରକୁ ଏଣେତେଣେ କରିବା ଏକ କଥା; ଇଚ୍ଛା ଥାଉ ଅବା ନ ଥାଉ ଅନ୍ୟ ଜଣକର ଆଦେଶ ଅନୁସାରେ କାମ କରିବା ଅନ୍ୟ ଏକ କଥା । ହୁଏ ତ ଏହା ଦ୍ୱାରା ସେ ପ୍ରକୃତ ମନୁଷ୍ୟ ହୋଇପାରିବ । ସେ ନିଜକୁ ଶୃଙ୍ଖଳିତ କରିବାକୁ ଶିଖିବ । ମୋର ମନେ ହୁଏ, ଆମେ ଆଜି ଯାଏ ତାକୁ ଏହି ଶୃଙ୍ଖଳା ଆଦୌ ଶିକ୍ଷା ଦେଇନାହୁଁ ।"

ମିସେସ୍ ଓ୍ୟେଷ୍ଟିଂହାଉସ ଅନିଚ୍ଛା ସହକାରେ ସ୍ୱାମୀଙ୍କ ସହିତ ଏକମତ ହେଲେ ।

ପ୍ରଥମ ଦିନ ଜର୍ଜ ଦେଖିଲା ଯେ ସେ ଯାହା ଆଶା କରିଥିଲା, କାମ କରିବା ପ୍ରକୃତରେ ତାହା ନୁହେଁ । ତାର ବାପା ସାବଧାନ କରି ଦେଇଥିଲେ ଯେ ଅନ୍ୟାନ୍ୟ ଶିକ୍ଷାନବିସଙ୍କ ପ୍ରତି ଯେପରି ବ୍ୟବହାର ହୁଏ, ତାହା ପ୍ରତି ଠିକ୍ ସେହିପରି ବ୍ୟବହାର କରାଯିବ । କିନ୍ତୁ ସେତେବେଳେ ବାଳକସୁଲଭ ଉତ୍ସାହରେ ଏହାର ପ୍ରକୃତ ଅର୍ଥ ସେ ବୁଝି ପାରି ନ ଥିଲା । ସେ ଆଶା କରିଥିଲା ଯେ ତାକୁ ନୂତନ ଯନ୍ତ୍ରରେ କିମ୍ବା ଇଂଲଣ୍ଡରୁ ଆସିଥିବା ରନ୍ଦାମାରିବା ଯନ୍ତ୍ରରେ କିଛି କାମ କରିବାକୁ

ଦିଆଯିବ ଓ ସେ ଖୁସିରେ ସେଥିରେ କାମ କରିବ । ଏପରି ଆଶା କରିବା ତା ପକ୍ଷରେ ସ୍ୱାଭାବିକ । କିନ୍ତୁ ତାକୁ କୁହାଗଲା—

"କାରଖାନା ଘର ମେଜିଆରେ ଧାତୁର ଯେଉଁସବୁ ଛୋଟ ଛୋଟ ଗୁଣ୍ଡ ପଡ଼ିଛି, ତାକୁ ଓଳାଇ ସଫା କର ।"

ସେ କୁଣ୍ଠା ପ୍ରକାଶ କରି କିଛି କହିବାକୁ ଯାଉଥିଲା, କିନ୍ତୁ ଜଣେ ପୁରୁଣା ମିସ୍ତ୍ରୀ ତାକୁ କିଛି କହିବାକୁ ନ ଦେଇ ହୁକୁମ ଦେଲା, "ଶିକ୍ଷାନବିସଠାରୁ କିଛି ଆପତ୍ତି ଶୁଣାଯିବ ନାହିଁ । ଯାଅ ପିଲା, ଯାହା କୁହାଗଲା, ତାହା କର ।"

ଲୋକଟି ବହୁ କଷ୍ଟରେ ପେଟର ହସକୁ ଚୁପି ରଖି ଗମ୍ଭୀର ସ୍ୱରରେ ଜର୍ଜକୁ ଏହିପରି କହିଲା ।

ଜର୍ଜ ଆଦେଶ ପାଳନ କରି କାମ କଲା ସତ, ମାତ୍ର ତାକୁ ବଡ଼ ଅପମାନ ବୋଧ ହେଲା । ଗତ କେତେ ମାସ ଧରି ସେ ଏହି ଲୋକମାନଙ୍କ ସଙ୍ଗେ ଚଳି ସେମାନଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଥିଲା । ସେ କାରଖାନାକୁ ଆସିଲେ ଏଇମାନେ ତାକୁ ହତିଆର ଓ କଳକବଜାର ବ୍ୟବହାର ଶିଖାଇ ଦେଉଥିଲେ । ଅନେକ ଥର ସେମାନେ ତାକୁ ଆପଣାର ଖାଦ୍ୟରୁ କିଛି ଖାଇବାକୁ ଦେଉଥିଲେ । ମାତ୍ର ଏବେ ସେଇମାନେ ପୂରା ବଦଳି ଯାଇଥିଲେ । ସେମାନଙ୍କର ବ୍ୟବହାର ଏତେ ରୁକ୍ଷ; କେବଳ କାର୍ଯ୍ୟ ବିଷୟରେ ସୀମାବଦ୍ଧ । ଏ ପରିବର୍ତ୍ତନର କାରଣ କଅଣ ?

ଜଳଖିଆ ଖାଇବାକୁ ଛୁଟି ହେଲା । ଏହି ଅବସରରେ ଜର୍ଜ ବାପାଙ୍କ ପାଖକୁ ଯାଇ ଆପତ୍ତି କଲା, "ବାପା, ମୋତେ ଖାଲି ଖରାପ ମଇଳା କାମ କରିବାକୁ ଦେଉଛନ୍ତି ।" ମିଷ୍ଟର ଓ୍ୱେଷ୍ଟିଂହାଉସ ପୁଅ ପ୍ରତି ସହାନୁଭୂତି ପ୍ରକାଶ କଲେ; ମାତ୍ର କାରଖାନା କାର୍ଯ୍ୟ ବିଷୟରେ ଲବମାତ୍ର ହସ୍ତକ୍ଷେପ କରି ପାରିବେ ନାହିଁ ବୋଲି କହିଲେ । ସେ ପୁଅକୁ ବୁଝାଇଲେ, "କାରଖାନାରେ ଶିକ୍ଷାନବିସ ହେଉଛି ନିମ୍ନତମ କର୍ମଚାରୀ । ତାକୁ ସବୁ କାର ଶ୍ରେଷ୍ଠ କାମ କରିବାକୁ ପଡ଼ିବ । କାରଖାନାରେ ଯେଉଁ କର୍ମଚାରୀମାନଙ୍କୁ ଦେଖୁଛୁ, ସେମାନେ ସମସ୍ତେ ଦିନେ ତୋହରି ପରି ଶିକ୍ଷାନବିସ କାମ କରିଥିଲେ ।"

ଜର୍ଜ ଜଭ କାମୁଡ଼ ପକାଇଲା, ମାତ୍ର କିଛି କହିଲା ନାହିଁ। ଉପରଓଳାଯାକ ସେ ଚୁପ୍ କରି କାରଖାନାର ମେଜିଆ ଓଳାଇ ସଫା କଲା। ମାତ୍ର ଏ କାମ ଯେପରି ସହଜ ନୁହେଁ। ଗୋଟାଏ ପାଖ ସଫା କଲା ବେଳକୁ ଆଉ ଗୋଟାଏ ପାଖରେ ମଇଳା ଜମିଯାଏ। କିନ୍ତୁ ଜର୍ଜ କାମ କରିବାରେ ଲାଗିଥାଏ। ଦିନର କାମ ଶେଷ ବେଳକୁ ସେ ମେଜିଆର ସବୁଆଡ଼ ଓଳାଇ ବେଶ ସଫା କରିଦେଲା। କୌଣସିଠାରେ ଟିକିଏ ହେଲେ ମଇଳା ରହିଲା ନାହିଁ। ଏତିକିରେ ତାର କାମ ଶେଷ ହୋଇ ନ ଥିଲା। ତାହାପରେ ଧାତୁର ଟୁକୁରାଗୁଡ଼ିକ ବାଲ୍‌ଟିରେ ଭର୍ତ୍ତିକରି ନେଇ ବାହାରେ ଗୋଟିଏ ଜାଗାରେ ଜମା କରିବାକୁ ହେଲା। ପରଦିନ ସେଗୁଡ଼ିକ ଗାଡ଼ିରେ ଲଦା ହୋଇ ତରଳାହେବା କାରଖାନାକୁ ଯିବାର କଥା। ଜର୍ଜ କାମ ଶେଷ କରି ଘରକୁ ଗଲା। ସେତେବେଳକୁ ତାର ଦେହ ଦରଜ ହୋଇ ଯାଇଥାଏ। ମାତ୍ର ସେଥିପାଇଁ ସେ କାହାରି ପାଖେ କିଛି ଆପତ୍ତି କଲା ନାହିଁ।

ସେ ସପ୍ତାହଟି ଯାକ ଜର୍ଜକୁ ଏହିପରି ମେଜିଆ ସଫାକରି ଲୁହା-ଟୁକୁରାସବୁ ଏକାଠି କରିବାକୁ ପଡ଼ିଲା। ମାତ୍ର ପରବର୍ତ୍ତୀ ସପ୍ତାହର ସୋମବାର ଦିନ ତାକୁ ଅଧିକା କାମ ଦିଆଗଲା ଯେ ସେ ହାତହତିଆର ମଧ୍ୟ ସଫା କରିବ। ଏ କାମଟି ବଡ଼ କଦର୍ଯ୍ୟ। କଳକବଜାରେ ସାଧାରଣତଃ ତେଲ ଓ ଚର୍ବି ବୋଳାଯାଇଥାଏ। କାମସାରି ଘରକୁ ଯିବା ପୂର୍ବରୁ ସେ ବ୍ରୁଶ ଧରି ସେଗୁଡ଼ିକୁ ସଫା କରେ ଓ ଠିକ୍‌କନାରେ ପୋଛି ଦିଏ। କଳକବଜା ପୁଣି ଚକ୍‌ଚକ୍ ଦିଶେ। ଏ କାମ ଶେଷ ହେଲା ବେଳକୁ ଜର୍ଜର ହାତରେ ମୁହଁରେ କଳା ଚକଟା ଲାଗି ଯାଇଥାଏ। ଘରେ ଖାଇବା ବେଳକୁ ନିଜକୁ ସଫା ସୁତୁରା ରଖିଥିବା ଦରକାର। ସେଥିପାଇଁ ସେ ପ୍ରାୟ ଅଧଘଣ୍ଟା ପରିଶ୍ରମ କରି ନିଜ ଦେହରୁ ସେ କଳାକୁ ଧୋଇ ସଫା କରୁଥିଲା। ଏତେ ପରିଶ୍ରମ ସତ୍ତ୍ୱେ ସେ କାହାରି ପାଖେ ଆପତ୍ତି କରୁ ନ ଥିଲା।

ତାର ବାପା ମନେ କରିଥିଲେ ଯେ ଜର୍ଜ ଦୁଇ ତିନି ଦିନ କାମ କଲାପରେ ଆପେ ଅପେ କାମ ଛାଡ଼ି ଦେବ। ମାତ୍ର ଜର୍ଜ କାମରେ ଲାଗି ରହିଥିବାର ଦେଖି ସେ ବଡ଼ ବିସ୍ମିତ ହେଲେ। ଏପରି କି ମିଷ୍ଟର

ଓ୍ୱେଷ୍ଟିଙ୍ଗହାଉସ ସୂଚନା ଦେଲେ ଯେ, ଜର୍ଜ ଇଚ୍ଛାକଲେ ତାର କାରଖାନା ଯନ୍ତ୍ରିତ ଚୁକ୍ତିର ପରିବର୍ତ୍ତନ କରାଯାଇ ପାରିବ ।

ଦିନେ ରାତିରେ ଖାଇବା ବେଳେ ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ କହିଲେ, "ଏବେ ଖୁବ୍ ଗରମ ପଡ଼ିଲାଣି । ତୁ କେବଳ ବେଳାକ ପାଇଁ କାରଖାନାରେ କାମ କଲେ ଉପରବେଳାକୁ ନଦୀକୁ ଯାଇ ପହଁରି ପାରିବୁ ।"

ଜର୍ଜ ଉତ୍ତର କଲା, "ନା ବାପା, ମୁଁ ପୂରା ଦିନଯାକ କାମ କରିବି ବୋଲି ଆଗରୁ ସ୍ୱୀକାର କରିଛି । ମୁଁ ପୂରା ଦିନଯାକ କାମ କରିବ ।"

ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ଏଥିରେ ଟିକିଏ ଚମକି ପଡ଼ି ଖଣ୍ଡିଏ ରୁଟି ଆଣି ଖାଇବାକୁ ଲାଗିଲେ । ତାଙ୍କର ସ୍ତ୍ରୀ କିଛି କହିଲେ ନାହିଁ ମାତ୍ର ତାଙ୍କ ଓଠରେ ବିସ୍ମୟର ଚିହ୍ନ ଦେଖାଗଲା । ପିଲାମାନେ ଜଣେ ପାଗଳ ଆଡ଼କୁ ଗୃହିଁଲାପରି ଜର୍ଜ ଆଡ଼କୁ ଅନାଇ ରହିଲେ ।

ମାତ୍ର କାରଖାନାର ଲୋକେ ଦିନକୁ ଦିନ ଏହି ବାରବର୍ଷର ପିଲାଟି ପ୍ରତି ଏକ ପ୍ରକାର ସମ୍ମାନ ପୋଷଣ କରିବାକୁ ଲାଗିଲେ । ପ୍ରକୃତ ପକ୍ଷରେ ସେମାନେ ନିଜ ପ୍ରଭୁଙ୍କର ଏହି ପୁଅଟିକୁ ବିଶେଷ ଆଦର କରୁଥିଲେ । ସେ ପ୍ରତିଦିନ ସେମାନଙ୍କୁ ନାନା ପ୍ରଶ୍ନ ପଚାରୁ ଥିଲା । ସେମାନେ ଯେଉଁସବୁ ଜଟିଳ ଯନ୍ତ୍ରରେ କାମ କରୁଥିଲେ, ସେଗୁଡ଼ିକୁ ସେ ଭଲ ପାଉଥିଲା । ଏବେ ତାର ମନର ଦୃଢ଼ତା ଦେଖି ସେମାନେ ମନେ ମନେ ପ୍ରଶଂସା ନ କରି ରହି ପାରିଲେ ନାହିଁ ।

ଜର୍ଜକୁ ପ୍ରଥମେ ଯେଉଁ ହଇରାଣ କରା ଯାଉଥିଲା, ସେଥିରେ ସେ ବିବ୍ରତ ହୋଇ ଯାଇନଥିଲା । ଜଣେ ବୟସ୍କ ଲୋକଭଳି ସେ ସବୁ ସହି ଯାଇଥିଲା । ତେଣୁ କାରଖାନାର ଲୋକମାନେ ତା ପ୍ରତି ଆଉ ସେପରି କଠୋର ବ୍ୟବହାର ଦେଖାଇଲେ ନାହିଁ । କୁନ୍ଦନ ଯନ୍ତ୍ରରେ ସାହାଯ୍ୟ କରିବାପାଇଁ ତାକୁ ଫୋରମାନ ବରାଦ କଲା । ଏଥିପୂର୍ବରୁ ସେ ଏହି ଯନ୍ତ୍ରର କାର୍ଯ୍ୟ ବିଷୟରେ ଅନେକ କଥା ଜାଣିଥିଲା । ତେଣୁ ଏଥିରେ ଘରସଫା ରଖିବା କାମ ଅପେକ୍ଷା ସେ ଅଧିକ ଆନନ୍ଦ ଅନୁଭବ କଲା ।

ତଥାପି ପ୍ରତିଦିନ କୋଭଳି କାମ କରିବା ତାକୁ ବିରକ୍ତିକର ବୋଧ ହେଉଥିଲା ।

ଜୁଲାଇ ମାସର ଶେଷ ଭାଗରେ ଦିନେ ବଡ଼ ଗରମ ହୋଇଥାଏ । ଉତ୍ତାପ ୯୫ ଡ଼ିଗ୍ରୀ ହୋଇଗଲା । କାରଖାନା ଘରଟି ଗୋଟିଏ ଅଗ୍ନିକୁଣ୍ଡ ପରି ବୋଧ ହେଉଥାଏ । କାରଖାନାର ଲୋକେ ଅଣ୍ଟା ପର୍ଯ୍ୟନ୍ତ ଦେହର ପୋଷାକ କାଢ଼ି ପକାଇଲେ; ମାତ୍ର ମୁଣ୍ଡଠାରୁ ଦେହସାକ ଝାଳ ବୋହି ପଡ଼ୁଥାଏ । ସକାଳଓଳି ଦିନ ଦୁଇଘଡ଼ି ବେଳକୁ କାମ କରିବା ଅସମ୍ଭବ ବୋଧ ହେଲା ।

ମିଷ୍ଟର ଓୟେଷ୍ଟିଂହାଉସ ଗୋଟିଏ ଶ୍ରେଷ୍ଠ ବଖରାରେ ବସି ତାଙ୍କ ଅଫିସ କାମ କରୁଥିଲେ । ସେ ବାହାରକୁ ଆସି କର୍ମଚାରୀମାନଙ୍କୁ କହିଲେ, "ଦେଖ, ଆଜି ବଡ଼ ଗରମ । ଜଳଖିଆ ଛୁଟି ପରେ କାମ ବନ୍ଦ କରାଯିବ । ଏ ବେଳାଟି କମ୍ପାନୀ ପକ୍ଷରୁ ଛୁଟି ଦିଆଗଲା । ଏଥିପାଇଁ ସମସ୍ତେ ଆଜି ଦିନକର ପୂରା ଦରମା ପାଇବେ ।"

ଲୋକେ ଆନନ୍ଦରେ ଚିତ୍କାର କରି ଉଠିଲେ । ସେମାନେ ଖୁବ୍ ଉତ୍ସାହରେ ନିଜ ନିଜ ଯନ୍ତ୍ର ପାଖକୁ ଯାଇ କାମରେ ଲାଗିଗଲେ । ଜଣେ କର୍ମଚାରୀ ଜର୍ଜର ପିଠିରେ ହାତ ମାରି ଆନନ୍ଦରେ କହିଲା, "ତମ ବାପା ଜଣେ ଖୁବ୍ ଭଲ ଲୋକ । ତାଙ୍କ ପାଖରେ କାମ କରିବାରେ ଆନନ୍ଦ ଅଛି । କେହି ଏହାର ପ୍ରତିବାଦ କଲେ ମୁଁ ତାକୁ ଛାଡ଼ିଦେବି ନାହିଁ ।

ଜର୍ଜ ମଧ୍ୟ ଆନନ୍ଦରେ ସିଟିମାରି ନିଜର କୁନ୍ଦନ ଯନ୍ତ୍ର(Lathe) ପାଖକୁ ଯାଇ କାମରେ ଲାଗିଗଲା । ସେ ଭାବୁଥାଏ;—ନଈର ପାଣି କେଡ଼େ ନିର୍ମଳ, କେଡ଼େ ଶୀତଳ ! ଉପରଓଳି ସେଥିରେ ପହଁରିଲେ କେଡ଼େ ମଜା ହେବ ?

ମାତ୍ର ଜଳଖିଆ ପାଇଁ ଛୁଟି ହେବାର ଠିକ୍ ପୂର୍ବରୁ ମିଷ୍ଟର ଓୟେଷ୍ଟିଂହାଉସ ଜର୍ଜକୁ ନିଜ ଅଫିସକୁ ଡ଼କାଇ କହିଲେ, "ଜର୍ଜ, ତୋ ପକ୍ଷରେ ଗୋଟିଏ ଦୁଃସମ୍ବାଦ ଅଛି । ଠିକ୍ ଏହି କ୍ଷଣି ଦୁଇଟି

ଥ୍ରେଶିଙ୍ଗମେଶିନର ବରାଦ ପଠାଇଥିଲା । ଆସନ୍ତା ସପ୍ତାହ ମଧ୍ୟରେ ମେଶିନ ଦୁଇଟି କରିଦେବାକୁ ହେବ । ଏଇଟି ହେଉଛି ଗୋଟିଏ ଜରୁରୀ ବରାଦ ତେଣୁ ଆଜ ଭିତରେ ସମାନ ଲମ୍ବର ଏକ ଡଜନ ଲୁହା ପାଇପ ଗଡ଼ି କରି ଦେଲେ ସୋମବାର ଦିନ ସକାଳକୁ କାରିଗରମାନେ ମେଶିନ ତିଆରି କରିପାରିବେ ।

ବାପାଙ୍କ କଥାର ଅର୍ଥଟା ହଠାତ୍ ଜର୍ଜକୁ ବୁଝା ପଡ଼ିଲା ନାହିଁ । ସେ କହିଲା, "ଆମ କମ୍ପାନୀ ଏ କାମର ବରାଦ ପାଇଛି ଶୁଣି ଆନନ୍ଦିତ ହେଲି । ଆନନ୍ଦର ବିଷୟ ନୁହେଁ କି ବାପା ?

କିଛିକ୍ଷଣ ପର୍ଯ୍ୟନ୍ତ ମିଷ୍ଟର ଓୟେଷ୍ଟିଂହାଉସ ପୁଅର ମନୋଭାବ ଲକ୍ଷ୍ୟ କରି କହିଲେ, "ମୋ କଥା ଆଦୌ ତୁ ବୁଝିପାରି ନାହୁଁ । ଆଜ ଏଇ ଉପରବେଳା ପାଇପ କାଟି ଗଡ଼ି କରି ଠିକ୍ କରିବାକୁ ହେବ । ସେ କାମଟି ମୁଁ ତୋତେ ଦେଉଛି ।"

ଏହା ଶୁଣିଲା କ୍ଷଣି ଜର୍ଜର ମୁହଁ ମଳିନ ପଡ଼ିଗଲା । ସେ କହିଲା "ମୋତେ ଏକାମ ଦେଉଛ କାହିଁକି ? ଆଜ ଉପରବେଳାଟି ସମସ୍ତଙ୍କର ଛୁଟି । ମୁଁ ନଈରେ ପହଁରିବାକୁ ଯିବି ବୋଲି ବିଚାର କରିଛି ।"

ମିଷ୍ଟର ଓୟେଷ୍ଟିଂହାଉସ ଟିକିଏ ଅସ୍ୱସ୍ତି ଅନୁଭବ କଲେ । ଥରେ ଛୁଟି ଦେବାକୁ କହି ପୁଣି ସେଥିରୁ ପୁଅକୁ ବଞ୍ଚିତ କରିବା ତାଙ୍କୁ ଭଲ ଲାଗିଲା ନାହିଁ । ସେ କହିଲେ, "ଜର୍ଜ, ତୋତେ ନିରାଶ କରିବାରେ ମୋର ବିଶେଷ ଦୁଃଖ ହେଉ ଅଛି । କିନ୍ତୁ ମୁଁ ଅନ୍ୟ କୌଣସି ଉପାୟ ଦେଖି ପାରୁ ନାହିଁ । ସମସ୍ତଙ୍କୁ ଛୁଟି ଦିଆଯିବ ବୋଲି କହି ସାରିବା ପରେ ବରାଦ ଆସି ପହଞ୍ଚିଲା । ଏପରି ସ୍ଥଳେ ସବୁଠାରୁ ତଳିଆ କର୍ମଚାରୀକୁ କାମ ଦେବାହିଁ ନ୍ୟାୟସଙ୍ଗତ । ତେଣୁ ଏ କାମଟି ତୋତେହିଁ କରିବାକୁ ହେବ ।"

ଜର୍ଜ ଆପତ୍ତି କଲା, "କିନ୍ତୁ ଏହା ଅନ୍ୟାୟ । ମୁଁ ଯଥେଷ୍ଟ ପରିଶ୍ରମ କରିଛି । ମଜୁରି ପାଇବା ପାଇଁ ଯାହା କରିବାର କଥା, ଯଥାସମ୍ଭବ ଚେଷ୍ଟା କରି ମୁଁ ତାହା କରି ସାରିଛି ।

ପିତା ଦୁଃଖ ପ୍ରକାଶ କରି ଦୃଢ଼ ସ୍ୱରରେ କହିଲେ, "ହଁ, ମୁଁ ସେ କଥା ଜାଣେ । କିନ୍ତୁ ମୋ ପକ୍ଷରେ ଏହାହିଁ କରିବା ନ୍ୟାୟସଙ୍ଗତ ବାଧହେଲା । ତେଣୁ ତୋତେ କାରଖାନାରେ ରହି ଏହି କାମ କରିବାକୁ ପଡ଼ିବ ।

ଆଉ ଯୁକ୍ତି କରିବା ଅନାବଶ୍ୟକ ମନେ କରି ଜର୍ଜ ବାପାଙ୍କ ଅଫିସରୁ ଚାଲି ଆସିଲା । ତା ମନରେ କ୍ରୋଧ ହେଉଥାଏ । ଆଖି ଲୁହରେ ଛଳଛଳ ।

ଜଳଖିଆ ଛୁଟି ଶେଷ ହେଲାବେଳକୁ କାରଖାନାର ସମସ୍ତେ ଏହି ଘଟଣା ଜାଣିପାରିଲେ । ସେମାନେ ଜର୍ଜପ୍ରତି ସହାନୁଭୂତି ପ୍ରକାଶ କରି ତା ପିଠି ଆଉଁଷିଲେ । ସେମାନେ କହିଲେ, "ଏହା ବଡ଼ ଅନ୍ୟାୟ ସତ; ମାତ୍ର ମଜୁରିପାଇଁ କାମ କରିବାକୁ ହେଲେ ବେଳେବେଳେ ଏପରି ଘଟିଥାଏ ।"

ଜଳଖିଆ ଖାଇ ସାରି ଶ୍ରମିକମାନେ ନିଜ ନିଜର ହତିଆର ଓ ମେସିନ ସଫାକରି ଚାଲିଗଲେ । ଏବେ କାରଖାନା ଘର ଶୂନ୍ୟ, ନିଃଶବ୍ଦ । କେବଳ ଝରକାର ବାହାରପାଖେ ଗୋଟିଏ ଘରଚଟିଆ ପକ୍ଷୀ ଚିଁ ଚିଁ ଶବ୍ଦ କରୁଥାଏ ।

ଜର୍ଜ ନିଜକୁ ହତଭାଗ୍ୟ ମନେକଲା । ସେ ଭାବିଲା ଯେ ବାପା ତାହା ପ୍ରତି ଅନ୍ୟାୟ କରିଅଛନ୍ତି । ଶନିବାର ଉପରବେଳା କାହାରିକୁ କାମ କରିବାକୁ ଦେବା ଅନ୍ୟାୟ । ସେ ଏହି ଅନ୍ୟାୟ ବିରୁଦ୍ଧରେ ଆତ୍ମବଳି ଦେବାକୁ ପ୍ରସ୍ତୁତ । ଏହି ଉତ୍ତେଜନାର ବଶବର୍ତ୍ତୀ ହୋଇ ସେ ପ୍ରତିଜ୍ଞା କଲା, "ଯଦି କେବେ ମୁଁ ଗୋଟିଏ କାରଖାନାର ମାଲିକ ହୁଏ, ତେବେ ମୁଁ ପ୍ରତି ରବିବାର ଛଡ଼ା ପ୍ରତି ଶନିବାର ଉପରବେଳା ମୋର ଶ୍ରମିକ-ମାନଙ୍କୁ ଛୁଟି ଦେବି ଓ ଏହି ଛୁଟିପାଇଁ ସେମାନେ ପୂରା ମଜୁରି ପାଇବେ ।"

ଏହି ଉଦାରତାର କଳ୍ପନା ସଙ୍ଗେ ସଙ୍ଗେ ଜର୍ଜର ମନର ବଳ ବୃଦ୍ଧି ପାଇଲା । ଏବେ କର୍ତ୍ତବ୍ୟ କର୍ମଟିକୁ ସେ ପରୀକ୍ଷା କରିବାକୁ ବସିଲା । କାଠ ଥାକ ଉପରେ ଥିବା ଲମ୍ବ ପାଇପଗୁଡ଼ିକୁ ସେ ନିରେଖି ଦେଖିଲା ।

ଦେଖିବାମାତ୍ରେ ତା ମନରେ ନୈରାଶ୍ୟ ଆସିଲା । ଏଗୁଡ଼ିକୁ ସମାନ ସମାନ ଗଡ଼ କରି କାଟିବା କମ୍ କଠିନ କାମ ନୁହେଁ । କରତରେ ପ୍ରତ୍ୟେକ ପାଇପକୁ ମାପ ଅନୁସାରେ କରତିବାକୁ ହେବ । ସେ ମନେ ମନେ ହିସାବ କରି ଦେଖିଲା ଯେ ବେଳବୁଡ଼ ପର୍ଯ୍ୟନ୍ତ କଠିନ ପରିଶ୍ରମ କଲେ ସେ ଅତି ବେଶୀ ଚାରି ପାଞ୍ଚଗଡ଼ ପାଇପ କାଟିପାରିବ । ଅବଶିଷ୍ଟ ପାଇପକୁ ସୋମବାର ଦିନ କାଟିବାକୁ ହେବ । ତେବେ ଏହାଦ୍ୱାରା ଅନ୍ତତଃ ଏତିକ ସୁବିଧା ହେବ ଯେ ସୋମବାର ବେଳକୁ କାରିଗରମାନେ ଥ୍ରେଶିଙ୍ଗ ମେସିନ ତିଆରି କାମ ଆରମ୍ଭ କରି ପାରିବେ ।

ସେ ଥାକରୁ ଗୋଟିଏ ଲମ୍ବା ପାଇପ ଟାଣି ଆଣି କରତିବା ଖୋପ-ଉପରେ ରଖିବାକୁ ଗଲା । ହଠାତ୍ ଧାତୁନିର୍ମାଣ ଯନ୍ତ୍ରକୁ (Metal-working machine) ଶକ୍ତି ଯୋଗାଉଥିବା ବାଷ୍ପୀୟ ଇଞ୍ଜିନ ଉପରେ ତାର ଦୃଷ୍ଟି ପଡ଼ିଲା । ତା ମୁଣ୍ଡରେ ଗୋଟାଏ ବୁଦ୍ଧି ଖେଳିଗଲା । ପାଇପଗୁଡ଼ାକୁ ଏତେ ପରିଶ୍ରମ କରି ହାତରେ କାଟିବା କି ଦରକାର ? କରତକୁ ଗୋଟାଏ କୁନ୍ଦନ ଯନ୍ତ୍ରରେ (Clamp) କ୍ଲାମ୍ପ ସାହାଯ୍ୟରେ ଦୃଢ଼ କରି ରଖି ବାଷ୍ପୀୟ ଶକ୍ତିଦ୍ୱାରା କାମଟା କରି ନ ହେବ କାହିଁକି ? କରତର ଧାରକୁ ପାଇପ ଦେହରେ ଲଗାଇ କୁନ୍ଦନ ଯନ୍ତ୍ରକୁ ବାଷ୍ପୀୟ ଶକ୍ତିଦ୍ୱାରା ଚଳାଇଲେ ଖୁସିରେ ଛେନା କାଟିଲା ପରି ଲୁହା ପାଇପ କଟିଯିବ !

ଏହା ଆବିଷ୍କାର କଲା କ୍ଷଣି ଜର୍ଜ ସେ ଭୀଷଣ ଗରମ ଭୁଲିଗଲା । ତାର ଆତ୍ମଗ୍ଳାନି, ରାଗ, ଅଭିମାନ ସବୁ କୁଆଡ଼େ ଉଭେଇଗଲା । ସେ ଯାହାକୁ ଏକ ବିରକ୍ତିକର କାର୍ଯ୍ୟ ବୋଲି ମନେ କରିଥିଲା, ତାହାକୁ ଏକ ପ୍ରତିଦ୍ୱନ୍ଦିତାର ଆହ୍ୱାନ ବୋଲି ମନେ କଲା । ସାରା ରାତି କାମ କରିବାକୁ ପଡ଼ିଲେ ମଧ୍ୟ ସେ ଏହି ଆହ୍ୱାନର ସମ୍ମୁଖୀନ ହେବ ।

ସୌଭାଗ୍ୟବଶତଃ ସେତେବେଳଯାଏ ବାଷ୍ପୀୟ ଇଞ୍ଜିନ ଗରମ ଥିଲା । ଗୋଟିଏ ବଡ଼ କୁନ୍ଦନ ଯନ୍ତ୍ରର ଏକ ପାର୍ଶ୍ୱରେ କ୍ଲାମ୍ପ ସାହାଯ୍ୟରେ ସେ ଗୋଟିଏ ସ୍ଥୋଟ ହାତକରତ ଦୃଢ଼ଭାବରେ ଖଞ୍ଜିଦେଲା । ସାଧାରଣତଃ ଧାତୁପିଣ୍ଡ ଘୂରିଲାବେଳେ ତାକୁ ଠିକ ଆକାର ଦେବାପାଇଁ କାଟୁଥିବା ହତିଆରକୁ ଧରି ରଖିବା ଉଦ୍ଦେଶ୍ୟରେ ଏହା ବ୍ୟବହୃତ ହୋଇଥାଏ ।

କିନ୍ତୁ ଏଥିରେ କରତ ଖଞ୍ଜାଯିବାରୁ ଏହା ଏକ ପ୍ରକାର ନୂତନ ଧରଣର ପାଇପ କାଟିବା ହତିଆରରେ ପରିଣତ ହେଲା ।

ଜର୍ଜ ଠିକ୍ ମାପ ଅନୁସାରେ ପାଇପରେ ଗୋଟିଏ ଚିହ୍ନ ଦେଇ ତାକୁ କୁନ୍ଦନ ଯନ୍ତ୍ରରେ ରଖିଲା ଏବଂ ବାଷ୍ପୀୟ ଶକ୍ତି ପ୍ରୟୋଗ କଲା । ଝଡ଼୍ ଘଡ଼୍ ଶବ୍ଦ କରି ମେଶିନ ଚାଲିଲା । ପାଇପ ଖୁବ୍ ବେଗରେ ଘୂରିବାକୁ ଲାଗିଲା । ଅତି ସାବଧାନରେ ସେ ପାଇପ ଦେହରେ କରତର ଧାରକୁ ଲଗାଇ ଦେଲା । କରତର ଦାନ୍ତ ପାଇପକୁ ଭେଦିଲା କ୍ଷଣି ଟିକିଏ କର୍ଣ୍ଣକଟୁ ଶବ୍ଦ ହେଲା । ମାତ୍ର କେତେକ ସେକେଣ୍ଡ ମଧ୍ୟରେ ପାଇପଟି କଟି ଦୁଇଗଡ଼ ହୋଇଗଲା । ଏହି ଉପାୟରେ ବିନା ପରିଶ୍ରମରେ ଯେ କାମ ହୋଇପାରିଲା, ଏହା ବଡ଼ ଆଶ୍ଚର୍ଯ୍ୟଜନକ । ସାଧାରଣତଃ ହାତରେ ଯେପରି କରତ ସାହାଯ୍ୟରେ ପାଇପ କଟାଯାଏ, ସେପରି କାଟିଥିଲେ ଗୋଟିଏ ଗଡ଼ କାଟିବାକୁ କୋଡ଼ିଏ ମିନିଟଠାରୁ ଅଧ ଘଣ୍ଟା ପର୍ଯ୍ୟନ୍ତ କଠିନ ପରିଶ୍ରମ କରିବାକୁ ପଡ଼ିଥାନ୍ତା । କିନ୍ତୁ ଜର୍ଜ ସେହି କାମକୁ ବିନା ପରିଶ୍ରମରେ ମୁହୂର୍ତ୍ତକ ଭିତରେ ଶେଷ କରିଦେଲା ।

କଟା ପାଇପଗଡ଼ଟିକୁ ସେ ଉତ୍ତମରୂପେ ପରୀକ୍ଷା କରି ଦେଖିଲା । ହାତରେ କରତ ଥିଲେ ଖୁବ୍ ଭଲ କାରିଗର ମଧ୍ୟ ଏଡ଼େ ସୁନ୍ଦର ଭାବରେ କାଟି ପାରି ନ ଥାନ୍ତା । ନିଜର କୃତିତ୍ୱରେ ଆନନ୍ଦିତ ହୋଇ ସେ ଅବଶିଷ୍ଟ ପାଇପଗୁଡ଼ିକୁ କାଟି ସମାନ ସମାନ ଗଡ଼ କରିଦେଲା । ଘଣ୍ଟାକରୁ କମ୍ ସମୟ ମଧ୍ୟରେ ତାର ସବୁ କାର୍ଯ୍ୟ ଶେଷ ହୋଇଗଲା । ନିର୍ଦ୍ଦିଷ୍ଟ ମାପର ବାର ଖଣ୍ଡି ପାଇପ ଗଡ଼କୁ ନେଇ ସେ ଗୋଦାମ ଘରେ ରଖିଦେଲା । ତା'ପରେ ସେ ନିଜର କୃତିତ୍ୱ ବିଷୟ ଚିନ୍ତା କରିବାକୁ ଲାଗିଲା । ସେତେବେଳେ ସେହି ବାର ବର୍ଷର ବାଳକଟି ଜୀବନରେ ପ୍ରଥମ ଥର ପାଇଁ ଉପଲବ୍ଧି କଲା ଯେ ଯନ୍ତ୍ରର ଉଦ୍ଭାବନ ଦ୍ୱାରା ମାନବ ଜାତି ନିଜର ଶ୍ରମଂଗଠନ କରିବାର ଉପାୟ ବାହାର କରି ପାରିଛି ।

ଏହି ବିରାଟ ସତ୍ୟ ବୁଝିପାରି ସେ ନିଜକୁ ଟିକିଏ ସଂଯତ କରି ନେଲା । ତତ୍ପରେ ସେ କାରଖାନାର ଦ୍ୱାର ବନ୍ଦ କରି ଧୀର

ଘାବରେ ସଦର ରାସ୍ତାବାଟେ ନଦୀ ଆଡ଼କୁ ଗଲା । ଗୋଟିଏ ନିର୍ଜନ ସ୍ଥାନରେ ସେ ପୋଷାକ ବାହାର କରି ଖୋଲା ଦେହରେ ନଦୀର ନିର୍ମଳ ଓ ଶୀତଳ ଜଳ ମଧ୍ୟରେ ପ୍ରବେଶ କଲା ।

ପ୍ରାୟ ଅଧଘଣ୍ଟା ପରେ ସେ ନିଜକୁ ସତେଜ ଓ ପରିଷ୍କୃତ ମନେ କରି ଘରକୁ ଗଲା । ସେତେବେଳକୁ ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ବିଛଣା ଉପରେ ପଡ଼ି ଗଡ଼ପଡ଼ ହେଉଥିଲେ । ଜର୍ଜ ଆସିବାର ଶବ୍ଦ ଶୁଣି ସେ ବିଛଣାରେ ବସି ପଡ଼ିଲେ ।

"କିଏ ? ଜର୍ଜ ? ତୁ ଘରେ କଣ କରୁଛୁ ? ତୋତେ ପରା କାମ କରିବାକୁ ଦିଆ ହୋଇଥିଲା ?

"ହଁ ବାପା ! ମୁଁ ମୋର କାମ କରି ସାରିଛି ।"

ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ତାଙ୍କର ସୁନା ପକେଟ ଘଡ଼ିଟି ବାହାର କରି ଅନେକ ବେଳଯାଏ ଚୁହିଁ ରହିଲେ । ସେ ଜର୍ଜର କଥାକୁ ବିଶ୍ବାସ କରି ନ ପାରି କହିଲେ, "ବର୍ତ୍ତମାନ ମୋଟେ ସାଢେ ତିନିଟା ବାଜିଛି । ତୋର କଅଣ ହୋଇଛି କହିଲୁ ।"

"ମୁଁ ଜାଣେ, ବର୍ତ୍ତମାନ ସାଢ଼େ ତିନିଟା ସମୟ । ପାଇପଗୁଡ଼ିକ ମାପ ଅନୁସାରେ କଟା ହୋଇ ସରିଛି ।"

ପିତା ବିରକ୍ତ ଭାବରେ ଜର୍ଜ ଆଡ଼କୁ ଚୁହିଁ କହିଲେ, "ଜର୍ଜ ଏପରି ଥଟ୍ଟା କରିବା ବଡ଼ ଖରାପ । ମୁଁ ଏପରି ଥଟ୍ଟା ଭଲ ପାଏ ନାହିଁ । ପାଇପଗୁଡ଼ିକୁ କାଟିବାପାଇଁ ଦୁଇ ଜଣ ଲୋକକୁ ସାରା ଉପର ବେଳାଟି ଲାଗିଥାନ୍ତା । କଟା ସରିଲା କପରି ?

ଜର୍ଜ ଟିକିଏ ହସି କହିଲା, "ବାପା, ମୁଁ ସବୁ ପାଇପ କାଟି ସାରିଛି ।"

ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ବିଛଣାରୁ ଉଠିପଡ଼ି କହିଲେ, "ଆଚ୍ଛା ବର୍ତ୍ତମାନ ହିଁ କଥାଟା ତଲେଇ ଦେଖିବାକୁ ହେବ । ଜର୍ଜ ମୋ ସାଥିରେ କାରଖାନାକୁ ଚାଲ ।"

ଏହା କହି ସେ ଖୁବ୍ ଦ୍ରୁତଗତିରେ ଚାଲିଲେ । ପିଷ୍ଟନ ଗତି କଲି ଭଳି ତାଙ୍କ ପାଦ ଆଗକୁ ପଡ଼ୁଥାଏ । ତାଙ୍କ ସାଙ୍ଗରେ ଚାଲିବାପାଇଁ ଜର୍ଜଙ୍କୁ ଦଉଡ଼ିବାକୁ ହେଉଥାଏ । କାରଖାନା ପାଖରେ ପହଞ୍ଚିବାରୁ ଜର୍ଜ ତାଲ ଫିଟାଇ ଗୋଦାମ ଘର ଦେଖାଇ ଦେଲା । ନିର୍ଦ୍ଦିଷ୍ଟ ମାପରେ ପାଇପ ଗୁଡ଼ିକ ସଜା ହୋଇ ରହିଥିବାର ଦେଖି ସେ ବିସ୍ମୟରେ ସ୍ତବ୍ଧ ହୋଇ-ଗଲେ । ତାଙ୍କ ଆଖିର ପଲକ ପଡ଼ିଲା ନାହିଁ । ତହୁଁ ଜର୍ଜ କିପରି ଖୁବ୍ ଅଳ୍ପ ସମୟ ମଧ୍ୟରେ ସବୁ କାମ କରି ପାରିଥିଲା, ତାହା ବୁଝାଇ ଦେଲା । ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସଙ୍କ ତୁଣ୍ଡରୁ କଥା ବାହାରିଲା ନାହିଁ । ଘରକୁ ଫେରିଲା ବେଳେ ସେ ଶାନ୍ତ ଭାବରେ ଧୀରେ ଧୀରେ ଚାଲୁଥାନ୍ତି; ଜର୍ଜ ତାଙ୍କର ପାଖେ ପାଖେ ଚାଲିଥାଏ । ଶେଷରେ ସେ ପୁଅର କାନ୍ଧ ଉପରେ ହାତ ରଖି ଗର୍ବ ସହକାରେ କହିଲେ, "ଜର୍ଜ, ତୁ ମୋର ପୁଅ । ମୋର ମାଂସରେ, ମୋର ରକ୍ତରେ ତୋର ଦେହ ଗଢ଼ା । ତଥାପି ମୁଁ ତୋତେ କଅଣ କରିବ, ତାହା ବୋଧହୁଏ କେବେ ହେଲେ ଜାଣି ପାରିବି ନାହିଁ ।"

ସ୍କୁଲ ଖୋଲିବାରୁ ଜର୍ଜ ସାରାଦିନ କାରଖାନାରେ କାମ କରିବା ସମ୍ଭବପର ହେଲା ନାହିଁ । ପିତା ସ୍ୱୀକୃତ ହେଲେ ଯେ ଜର୍ଜ ପ୍ରତ୍ୟହ ଦୁଇ ଘଣ୍ଟା ଲେଖାଏଁ କାରଖାନାରେ କାମ କରିବ । ଶନିବାର ଦିନ ପୂରାଦିନଟି କାମ କରିବ । ମାତ୍ର ଏଥିରେ ଯେପରି ତାର ପଢ଼ାପଢ଼ିରେ ତ୍ରୁଟି ନ ହୁଏ ।

ପାଇପ କାଟିବା ଘଟଣାରେ ବାଷ୍ପୀୟ ଶକ୍ତି ବିଷୟରେ ଜର୍ଜର ଆଗ୍ରହ ବଢ଼ି ଯାଇଥାଏ । ଏହି ଶକ୍ତିବିଷୟରେ ସେ ଯେତେ ପାରେ ସେତେ ଶିଖିବାକୁ ଇଚ୍ଛାକଲା । ସେନେକଟାଡିର ଦାତବ୍ୟ ପୁସ୍ତକାଳୟରେ ଏ ବିଷୟରେ କେତେକ ପୁସ୍ତକ ଥିଲା । ସେ ସେଗୁଡ଼ିକ ଆଣି ପଢ଼ିଲା । ଯେଉଁ କମ୍ପାନୀମାନେ ବାଷ୍ପୀୟ ଇଞ୍ଜିନ ତିଆରି କରୁଥିଲେ, ସେମାନଙ୍କୁ ପତ୍ର ଲେଖି ସେ ସମ୍ବନ୍ଧରେ ପ୍ରକାଶିତ ହୋଇଥିବା ପୁସ୍ତିକା ସବୁ ମଗାଇ ସେ ସେଗୁଡ଼ିକୁ ପଢ଼ିଲା । ଏହି କମ୍ପାନୀମାନେ ଆନନ୍ଦରେ ସେଗୁଡ଼ିକୁ ଯୋଗାଇ ଦେଇଥିଲେ ।

ସେ ସମୟରେ ଯେତେ ବାଷ୍ପୀୟ ଇଞ୍ଜିନ ଥିଲା, ସେଗୁଡ଼ିକର ପିଷ୍ଟନ ପର୍ଯ୍ୟାୟ କ୍ରମେ ଅଗ୍ରପଶ୍ଚାତ୍ ଗତି କରୁଥିଲା । ଜୀ, ଓ୍ୱେଷ୍ଟିଙ୍ଗ-

ହାଜପ ଏଣ୍ଡ କୋମ୍ପାନୀରେ ମଧ୍ୟ ଏହି ପ୍ରକାର ପଶ୍ଚାଦଗ୍ର ଇଞ୍ଜିନ ଥିଲା । ଏହି ଇଞ୍ଜିନଗୁଡ଼ିକ ଖୁବ୍ ବଡ଼ ଓ ଦେଖିବାକୁ ଅସୁନ୍ଦର ଥିଲା । ଏଥିରେ ବାଷ୍ପକୁ ଗୋଟିଏ ନଳଦ୍ୱାରା ଏକ ଆବଦ୍ଧ ସିଲଣ୍ଡର ଭିତରକୁ ନିଆଯାଉଥିଲା । ଏହା ଫଳରେ ଗୋଟିଏ ବଡ଼ ପିଷ୍ଟନ ଆଗକୁ ପଛକୁ ଗତି କରୁଥିଲା । ପିଷ୍ଟନରେ ଗୋଟିଏ ଜଟିଳ କବାଟିର (Valve) ବ୍ୟବସ୍ଥା ଥିଲା । ଏହି (Valve) କବାଟି ଦ୍ୱାରା ବାଷ୍ପ ସିଲଣ୍ଡର ଭିତରକୁ ପ୍ରବେଶ କରୁଥିଲା ଓ ବାହାରୁଥିଲା । ଗୋଟିଏ (Piston rod) ପିଷ୍ଟନ ଦଣ୍ଡଦ୍ୱାରା ପିଷ୍ଟନଟି ଗୋଟିଏ ଲୌହଦଣ୍ଡ ସହିତ ସଂଯୁକ୍ତ ଥିଲା । ଏହି ପିଷ୍ଟନଦଣ୍ଡ ସାହାଯ୍ୟରେ ପିଷ୍ଟନର ଅଗ୍ରପଶ୍ଚାତ୍ ଗତିକୁ ବୃତ୍ତାକାର ଗତିରେ ପରିବର୍ତ୍ତିତ କରାଯାଉଥିଲା । ଲୌହଦଣ୍ଡଟିର ଘୂର୍ଣ୍ଣନ ଦ୍ୱାରା ବେଲ୍ଟ ସାହାଯ୍ୟରେ ମେଶିନକୁ ଶକ୍ତି ଯାଉଥିଲା ।

ଜର୍ଜ ଦେଖିଲା ଯେ ଏ ପ୍ରକାରର ବାଷ୍ପୀୟ ଇଞ୍ଜିନ ଯଥେଷ୍ଟ କାର୍ଯ୍ୟକ୍ଷମ ନୁହେଁ । ସେଗୁଡ଼ିକ ବୃହଦାକାର ହୋଇଥିବାରୁ ଅନେକ ସ୍ଥଳରେ ବ୍ୟବହୃତ ହୋଇ ପାରୁନଥିଲା । ପିଷ୍ଟନର ଅଗ୍ରପଶ୍ଚାତ ଗତିକୁ ବୃତ୍ତାକାର ଗତିରେ ପରିବର୍ତ୍ତନ କରିବାପାଇଁ ଯେଉଁସବୁ ଜଟିଳ ସଂଯୋଜନା (Connections) ଆବଶ୍ୟକ ହେଉଥିଲା, ସେସବୁ ଫଳରେ ଉତ୍ପାଦିତ ଶକ୍ତିର ଅନେକାଂଶର ଅପବ୍ୟୟ ହେଉଥିଲା ।

ଲୌହଦଣ୍ଡକୁ ଚଳାଇବାପାଇଁ ପିଷ୍ଟନଯୁକ୍ତ ଇଞ୍ଜିନ ବ୍ୟବହାର କରିବାର ଆବଶ୍ୟକତା କଅଣ ? ଏହି ପ୍ରଶ୍ନ ଜର୍ଜର ମନରେ ଉଦିତ ହେଲା । ଏକାଥରକେ ବାଷ୍ପୀୟ ଶକ୍ତିକୁ ଘୂର୍ଣ୍ଣୀ ଶକ୍ତିରେ ( Rotary-Power) ପରିଣତ କରିବାପାଇଁ ଗୋଟିଏ ଭିନ୍ନପ୍ରକାର ଇଞ୍ଜିନ କରାଯାଇ ପାରିବ ନାହିଁ କି ? ଏହା ହୋଇପାରିଲେ ଏକ ବିରାଟ ଉନ୍ନତି ହେଲା ବୋଲି କହିବାକୁ ହେବ । ତାହାହେଲେ ପିଷ୍ଟନର ଅଗ୍ରପଶ୍ଚାତ୍ ଗତିକୁ ଘୂର୍ଣ୍ଣୀ ଗତିରେ ପରିବର୍ତ୍ତନ କରିବାପାଇଁ ଏତେ ଜଟିଳ ଯନ୍ତ୍ରପାତିର (Complicated Mechanism) ଆବଶ୍ୟକତା ରହିବ ନାହିଁ; ଶକ୍ତିର ଅପଚୟ ମଧ୍ୟ ହେବ ନାହିଁ । ଅଳ୍ପସଂଖ୍ୟକ ଓ ସାଧାସିଧା ଅଂଶଦ୍ୱାରା ମେଶିନଟି ତିଆରି ହେବ, ଖରଚ କମ ପଡ଼ିବ ଓ ଯାନ୍ତ୍ରିକ ଅଚଳତାର (Mechanical breakdown) ଆଶଙ୍କା ଊଣା ହେବ ।

ଏହିପରି ଏକ ଉଚ୍ଚ ଆଶାର ବଶବର୍ତ୍ତୀ ହୋଇ ଜର୍ଜ ଗୋଟିଏ ଘୂର୍ଣ୍ଣୀଇଞ୍ଜିନର (Rotary Engine) କଳ୍ପନାରେ ତାହାର ସମସ୍ତ ଅବସର ସମୟ କଟାଇବାକୁ ଲାଗିଲା । କେତେ ମାସ ଧରି ସେ ନିଜର ଗୋଟିଏ ଭିନ୍ନ ଜଗତରେ ରହିଲା ପରି ସମୟ କଟାଇଲା । ସେ ଜଗତର ସୀମା କେବଳ ଚାପର ପରିମାଣ, ବାଷ୍ପୀୟ ଶକ୍ତିର ରୂପ, ନିୟନ୍ତ୍ରଣକାରୀ (Valve) କବାଟି ମଧ୍ୟରେ ଆବଦ୍ଧ ଥିଲା । ଜର୍ଜର ହାତରେ ସବୁବେଳେ କାଗଜ ଓ ପେନ୍‌ସିଲ । ତାର ବାପା କମ୍ବା ମାଆ ଯେତେବେଳେ ତାକୁ ଦେଖିବାକୁ ପାଆନ୍ତି, ସେତେବେଳେ ସେ କଠିନ ପରିଶ୍ରମ କରି ତାର କଳ୍ପିତ ବିଚିତ୍ର ଆକାରର ଓ ନାନା ଜଟିଳତାପୂର୍ଣ୍ଣ ଇଞ୍ଜିନର ଛବି ଆଙ୍କୁଥାଏ ।

ସାଧାରଣତଃ ଗୋଟିଏ ଛବି ଶେଷ ହେବା ପୂର୍ବରୁ ଜର୍ଜ କାଗଜ-ଖଣ୍ଡିକୁ ମୋଡ଼ି ଫିଙ୍ଗି ଦେଉଥିଲା; କାରଣ ସେତେବେଳକୁ ତାର ଦୃଢ଼ ବିଶ୍ୱାସ ହୋଇଯାଇଥାଏ ଯେ ସେ ଉପଯୁକ୍ତ ପନ୍ଥାରେ ଗତି କରୁନାହିଁ । ତା'ପକ୍ଷରେ ପ୍ରଧାନ ସମାସ୍ୟା ଥିଲା—ପିଷ୍ଟନର ସରଳ ଅଗ୍ରପଶ୍ଚାତ୍ ଗତି ପରିବର୍ତ୍ତରେ ଅନ୍ୟ କି ବ୍ୟବସ୍ଥା କରାଯାଇ ପାରିବ ? ପୁଣି ଯଦି ପିଷ୍ଟନ ବ୍ୟବହାର କରା ନ ଯାଏ ତେବେ ବାଷ୍ପକୁ କିପରି ଯାନ୍ତ୍ରିକ ଶକ୍ତିରେ (Mechanical power) ପରିଣତ କରି ହେବ ? ଯେତେ କଠୋର ପରିଶ୍ରମ କଲେହେଁ ସେ ପିଷ୍ଟନ ପରିବର୍ତ୍ତରେ ଅନ୍ୟ କୌଣସି ବ୍ୟବସ୍ଥା ଭାବି ପାରିଲା ନାହିଁ ।

୧୮୬୦ ଖ୍ରୀଷ୍ଟାବ୍ଦର ଜୁନ ମାସରେ ଦିନେ ରବିବାର ଉପରବେଳା ବଡ଼ ଗରମ ହେଉଥାଏ । ଜର୍ଜ ନଈରେ ପହଁରିବାକୁ ବାହାରିଲା । ତାର ପୂର୍ବଦିନ ଖୁବ୍ ଅସରାଏ ବର୍ଷା ହୋଇ ଯାଇଥିଲା । ନଈଠାରୁ ପ୍ରାୟ ଶହେ ଗଜ ଦୂରରେ ଗୋଟିଏ ବଡ଼ ଖାଲରେ ବର୍ଷା ପାଣି ଜମି ଗୋଟିଏ ଛୋଟ ପୋଖରୀ ପରି ହୋଇଥାଏ । ଏହି ସ୍ଥାନଟି ଖୁବ୍ ଉଚ୍ଚରେ ଅବସ୍ଥିତ ଥିଲା । ସେହି ଖାଲରୁ ଗୋଟିଏ ଧାରରେ ପାଣି ଗଡ଼ି ଆସୁଥାଏ । ମାଟି ଗୋଡ଼ି ପଥର କାଠ ପ୍ରଭୃତି ଅତିକ୍ରମ କରି ସେହି ଧାରଟିର ପାଣି ନଈରେ ପଡ଼ୁଥିଲା । ପାଣି ପଡ଼ିବା ଜାଗାରେ ଗୋଟିଏ ଅତି ଛୋଟ ଜଳପ୍ରପାତର ସୃଷ୍ଟି ହୋଇଥିଲା ।

ଜର୍ଜ ପହଁରିବା ପାଇଁ ଦେହରୁ ପୋଷାକ କାଢ଼ୁ କାଢ଼ୁ ଏହି ଦୃଶ୍ୟଟିକୁ ଭଲରୂପେ ଲକ୍ଷ୍ୟକଲା । ଏହାକୁ ଦେଖିଲାକ୍ଷଣି ସେଣ୍ଟ୍ରାଲବ୍ରିଜଠାରେ ଗୋଟିଏ ଶସ୍ୟକଳ ନିକଟରେ ସେ ଦେଖିଥିବା ଏକ ଜଳପ୍ରପାତ କଥା ତାର ମନେ ପଡ଼ିଲା । ସେଠାରେ ଏହି ଜଳପ୍ରପାତର ପ୍ରଖର ସ୍ରୋତଦ୍ୱାରା ଗୋଟିଏ ବିରାଟ ପତ୍ରବିଶିଷ୍ଟ ଚକ୍ର (Paddle wheel) ଚାଳିତ ହେଉଥିଲା ଓ ତାହା ଶସ୍ୟକଳକୁ (Grain mill) ଶକ୍ତି ଯୋଗାଉଥିଲା ।

ହଠାତ୍ ତା ମନରେ ଗୋଟାଏ ଚିନ୍ତାର ଉଦୟ ହେଲା । ଯଦି ଗୋଟିଏ ପତ୍ରବିଶିଷ୍ଟ ଚକ୍ରକୁ (Paddle wheel) ଚଳାଇ ପାରିଲା, ତେବେ ଜଳୀୟ ବାଷ୍ପ କାହିଁକି ସେହି ଉଦ୍ଦେଶ୍ୟରେ ବ୍ୟବହୃତ ହୋଇ ପାରିବ ନାହିଁ ? ବିସ୍ତୃତିଶୀଳ ବାଷ୍ପର ଅସାଧାରଣ ଶକ୍ତି ଅଛି । ଏହି ଶକ୍ତିଦ୍ୱାରା ସିଲିଣ୍ଡରରେ ଥିବା ଗୋଟିଏ ପିଷ୍ଟନକୁ ଆଗକୁ ପଛକୁ ଚାଳିତ କରା ଯାଇ ପାରିବ । ପ୍ରକୃତରେ ପିଷ୍ଟନଯୁକ୍ତ ଇଞ୍ଜିନ (Reciprocating Engine) ଏହି ମତର ଅବଲମ୍ବନରେ ଚାଳିତ । ତାହାହେଲେ ଜଳୀୟ-ବାଷ୍ପ ଗୋଟିଏ ପତ୍ରବିଶିଷ୍ଟ ଚକ୍ରକୁ (Paddle wheel) ଚଳାଇ ନ ପାରିବାର କୌଣସି କାରଣ ନାହିଁ । ଗୋଡ଼ର ପଟେ ଜୋତା ହାତରେ ଧରି ଠିଆ ହୋଇ ଜର୍ଜ ଏହି ପ୍ରକାର ଚିନ୍ତାରେ ବୁଡ଼ି ରହିଥାଏ । ଗୋଟିଏ ସିଲିଣ୍ଡର ମଧ୍ୟରେ ରହିଲାଭଳି ପଖାବିଶିଷ୍ଟ ଏକ ଚକ (Bladed wheel) ତିଆରି କଲେ ତହିଁରେ କାହିଁକି ପାଣିଚକର ମତ (Principle of a water wheel) ବ୍ୟବହୃତ ହୋଇପାରିବ ନାହିଁ ? ଯଦି ପାଇପବାଟେ ସିଲିଣ୍ଡର ଭିତରକୁ ଜଳୀୟ ବାଷ୍ପ ଭର୍ତ୍ତି କରାଯାଏ ଓ ତାହା ଚକର ପଖାମାନଙ୍କୁ ଆଘାତକରେ ତେବେ ଚକଟି ନିଶ୍ଚୟ ବୁଲିବ । ଘୂର୍ଣ୍ଣ୍ୟମାନ ଚକର କେନ୍ଦ୍ର (axle) ସହିତ ଗୋଟିଏ ଗୋଲାକାର ଶଳାକା (Shaft) ସଂଯୁକ୍ତ କରିଦେବ । ଚକ ବୁଲିବା ସଙ୍ଗେ ଏହି ଶଳାକାଟି ଘୂରିବ । ଏତେ ସହଜ ଉପାୟରେ କାମ ହୋଇ ପାରିବ ବୋଲି ଭାବି ଜର୍ଜ କ୍ଷଣକ-ପାଇଁ ସ୍ତମ୍ଭୀଭୂତ ହୋଇଗଲା । ସେ ବାଷ୍ପୀୟ ଶକ୍ତିକୁ ସିଧାସିଧା ଘୂର୍ଣ୍ଣାୟମାନ ଯାନ୍ତ୍ରିକ ଶକ୍ତିରେ ପରିଣତ କରିବାର ଗୋଟିଏ ସହଜ ଓ କର୍ମକ୍ଷମ ପ୍ରଣାଳୀ ଖୋଜୁଥିଲା, ଯେପରି କି ପିଷ୍ଟନର ଅଗ୍ର-ପଶ୍ଚାତ୍ ଗତିକୁ ବୃତ୍ତାକାର ଗତିରେ ପରିଣତ କରିବାର ଅଯଥା ମଧ୍ୟବର୍ତ୍ତୀ ସୋପାନ ଆବଶ୍ୟକ ହେବ ନାହିଁ ।

ପରବର୍ତ୍ତୀ କେତେକ ସମୟ କାଳ ଜର୍ଜ ତାର ରୋଟାରଇଞ୍ଜିନର (Rotary Engine) କଳ୍ପନାରେ ଲଗିରହିଲା । ସେ ଠିକ୍ ସ୍କେଲ ଅନୁସାରେ ଇଞ୍ଜିନର ନକ୍ସା ତିଆରି କଲା । ସେଥିରେ ଇଞ୍ଜିନର ପ୍ରତ୍ୟେକ ସୂକ୍ଷ୍ମ ଅଂଶ ମଧ୍ୟ ଦେଖାଇ ଦିଆଗଲା । ୧୮୬୧ ମସିହାରେ ଶୀତ ଦିନ ବେଳକୁ ଚଉଦ ବର୍ଷର ବାଳକ ଜର୍ଜ ଗୋଟିଏ ରୋଟାରି ଇଞ୍ଜିନର ପରୀକ୍ଷାମୂଳକ ମଡ଼େଲ (Model) ତିଆରି ଆରମ୍ଭ କରିଦେଲା । ସେ ବାପାଙ୍କୁ ଅନୁମତି ମାଗିଲା ଯେ ସେ ପ୍ରତିଦିନ ସାନ୍ଧ୍ୟଭୋଜନ ପରେ ମେଶିନ କାରଖାନାକୁ ଆସି ତାର ଇଞ୍ଜିନ ତିଆରି କାମ କରିବ । ପୁଅର ଉତ୍ସାହ ଦେଖି ମିଷ୍ଟର ଓ୍ବେଷ୍ଟିଙ୍ଗହାଉସ ଏଥିରେ ସ୍ୱୀକୃତ ହେଲେ । କିନ୍ତୁ ଜର୍ଜ ତାର ଇଞ୍ଜିନତିଆରି ଆରମ୍ଭ କଲାବେଳକୁ ଏପରି ଏକ ଘଟଣା ଘଟିଲା ଯେ କିଛି କାଳପାଇଁ ସେ ତାହାର ରୋଟାରି-ଇଞ୍ଜିନ କଥା ଏକେବାରେ ଭୁଲିଗଲା ।

୧୮୬୧ ମସିହା ଏପ୍ରିଲ ମାସ ୧୨ ତାରିଖ ଦିନ ଦକ୍ଷିଣ ଆମେରିକାର ସୈନ୍ୟମାନେ ୟୁନିଅନର ସୈନ୍ୟମାନଙ୍କୁ କାରୋଲିନାର ଫୋର୍ଟ ସୁମ୍‌ଟର-ଠାରେ ଆକ୍ରମଣ କଲେ । ସେ ଦିନ ସେଠାରେ ଯେଉଁ ବନ୍ଧୁକ ଧ୍ୱନି ଶୁଣା ଯାଇଥିଲା, ତାହାର ପ୍ରତିଧ୍ୱନି ପରବର୍ତ୍ତୀ ଚାରି ବର୍ଷ ପର୍ଯ୍ୟନ୍ତ ଶୁଣିବାକୁ ମିଳିଥିଲା । ଏହାହିଁ ହେଉଛି ଆମେରିକା ଗୃହଯୁଦ୍ଧର (Civil-War) ଆରମ୍ଭ ।

ନିଉଇଂଲଣ୍ଡରୁ ଆସିଥିବା ଅନ୍ୟାନ୍ୟ ଆମେରିକାବାସୀଙ୍କ ପରି ମିଷ୍ଟର ଓ୍ବେଷ୍ଟିଙ୍ଗହାଉସ ଦାସତ୍ୱପ୍ରଥାର ବିରୋଧୀ ଥିଲେ । ଇଲିନଏସର ଯେଉଁ କ୍ଷୀଣକାୟ ସାମାନ୍ୟ ରେଲ ଶ୍ରମିକ ଲିଙ୍କନ ଅଳ୍ପ ଦିନ ହେଲା ୟୁନିଅନର ପ୍ରେସିଡ଼େଣ୍ଟ ପଦରେଆସୀନ ହୋଇଥିଲେ ତାଙ୍କୁ ମିଷ୍ଟର ଓ୍ବେଷ୍ଟିଙ୍ଗହାଉସ ପୂର୍ଣ୍ଣପ୍ରାଣରେ ସମର୍ଥନ କରୁଥିଲେ । ସେ ଆବ୍ରାହାମ୍ ଲିଙ୍କନଙ୍କୁ ସଭାପତି ପଦପାଇଁ ଭୋଟ ଦେଇଥିଲେ । ଲିଙ୍କନ ଯେତେବେଳେ ଘୋଷଣା କଲେ ଯେ ୟୁନିୟନକୁ ଯେ କୌଣସିମତେ ରକ୍ଷା କରିବାକୁ ହେବ, ସେତେବେଳେ ଓ୍ବେଷ୍ଟିଙ୍ଗହାଉସ ତାଙ୍କୁ ଦୃଢ଼ ସମର୍ଥନ ଜଣାଇଥିଲେ । ଉତ୍ତର ଆମେରିକାର ଅନେକ ଲୋକଙ୍କର ଭ୍ରାନ୍ତ ଧାରଣା ଥିଲା ଯେ ଅଳ୍ପ ଦିନଭିତରେ ଦକ୍ଷିଣ ଆମେରିକା ସୈନ୍ୟମାନେ ପରାସ୍ତ ହୋଇଯିବେ । ଓ୍ବେଷ୍ଟିଙ୍ଗହାଉସ ମଧ୍ୟ ସେହି ଭ୍ରାନ୍ତ ଧାରଣାର ବଶବର୍ତ୍ତୀ ଥିଲେ ।

ରାଜନୈତିକ ମତବାଦ ବିଷୟରେ ପରିବାରର ସବୁ ପିଲା ପିତାଙ୍କର ଅନୁଗାମୀ ଥିଲେ । କିନ୍ତୁ ସେମାନଙ୍କ ମଧ୍ୟରେ ସବୁଠାରୁ ଉତ୍ସାହୀ ଦେଶପ୍ରେମୀକ ଥିଲା କିଶୋର ଜର୍ଜ । ସେ ଆଗ୍ରହ ସହକାରେ ସମ୍ବାଦପତ୍ରରୁ ଯୁଦ୍ଧର ବିବରଣ ପାଠ କରୁଥିଲା ଏବଂ ମନେମନେ କାଳ୍ପନିକ ଯୁଦ୍ଧକ୍ଷେତ୍ରରେ ବୀରତ୍ୱପୂର୍ଣ୍ଣ କାର୍ଯ୍ୟ କରିବାର ସ୍ୱପ୍ନ ଦେଖୁଥିଲା ।

ଦିନେ ସନ୍ଧ୍ୟାସମୟରେ ଜର୍ଜ ଖବର କାଗଜରୁ ଫିଲାଡ଼େଲଫିଆର ଗୋଟିଏ ବାଳକ ଉତ୍ମବାଦକର ବୀରତ୍ୱ କାହାଣୀ ପଢ଼ିବାକୁ ପାଇଲା । ଏହି ବାଳକଟି ଦକ୍ଷିଣଆମେରିକାର ସୈନ୍ୟମାନଙ୍କ ବନ୍ଧୁକ ଆକ୍ରମଣ ଆଗରେ ଯୁଦ୍ଧକରି ନିଜର ପ୍ରାଣ ଦେଇଥିଲା । ଜର୍ଜ ଏହି ବିବରଣଟିକୁ ବାରମ୍ବାର ପଢ଼ିଲା । ତାର ଚକ୍ଷୁ ଲୋତକ ପୂର୍ଣ୍ଣ ହୋଇଗଲା । ପରିଶେଷରେ ଜର୍ଜ ଖବରକାଗଜରୁ ଏହି ଅଂଶଟି କାଟିନେଇ ନିଜ ପକେଟରେ ରଖିଲା ।

ତାହାପର ଦିନ ଦ୍ୱିପ୍ରହର ବେଳେ ସ୍କୁଲର ଖେଳଛୁଟି ହେଲା । ଜର୍ଜ ଉକ୍ତ କାଗଜ ଖଣ୍ଡିକ ପକେଟରୁ ବାହାର କରି ଟମାସ ହ୍ୱାଲ ନାମକ ତାର ଜଣେ ସହପାଠୀକୁ ତାହା ଦେଖାଇଲା । ଜର୍ଜ ଭଳି ହ୍ୱାଲ ମଧ୍ୟ ଯୁଦ୍ଧ ସମ୍ବନ୍ଧରେ ଅନେକ ଅଦ୍ଭୁତ ଧାରଣା ପୋଷଣ କରିଥିଲା । ସେ ସାମରିକ ପୋଷାକ ପିନ୍ଧି ଯୁଦ୍ଧ କ୍ଷେତ୍ରରେ ଗୌରବ ଅର୍ଜିବାର ସ୍ୱପ୍ନ ଦେଖୁଥିଲା । ସନ୍ଧ୍ୟାପୂର୍ବରୁ ବାଳକ ଦୁହେଁ ଗୋଟିଏ ଦୁଃସାହସିକ ପ୍ରସ୍ତାବ କାର୍ଯ୍ୟରେ ପରିଣତ କରିବାକୁ ସ୍ଥିର କରି ସାରିଥିଲେ ।

ପରଦିନ ପ୍ରଭାତ ନ ହେଉଣୁ ଜର୍ଜ ବିଛଣାରୁ ଉଠିଲା । ସେ ନିଜ ମଜୁରିରୁ ଦଶ ଡଲାର ସଞ୍ଚୟ କରି ରଖିଥିଲା । ସେତକ ପକେଟରେ ପୂରାଇ ଜର୍ଜ ଘରୁ ବାହାରି ପଡ଼ ଜାଫ୍ରି ବାଡ଼ର ଧାରେ ଧାରେ ଚାଲିଲା । ସେ ଧୀରେ ଧୀରେ ହତା ପାର ହୋଇ ଅନ୍ଧାରୁଆ ରାସ୍ତା ଉପରେ ଦଉଡ଼ିଲା । ଲାଲବର୍ଣ୍ଣର ସୂର୍ଯ୍ୟ ଦିଗ୍‌ବଳୟ ଉପରକୁ ଉଠି ଆସିଲା ବେଳକୁ ଫ୍ରୁନଅନଷ୍ଟ୍ରୀଟ ଓ ଷ୍ଟେଟଷ୍ଟ୍ରୀଟର ମିଳନ ସ୍ଥଳରେ ଟମ-ହ୍ୱାଲକୁ ଭେଟିଲା ।

ଟମ ପଚାରିଲା, "ଗାଡ଼ିଭଡ଼ା ପାଇଁ ତୋ ପାଖରେ ଟଙ୍କା ଅଛି ତ ?"

ଜର୍ଜ ଉତ୍ତର କଲା, "ହଁ, ମୋ ପାଖରେ ଦଶ ଡଲାର ଅଛି ।" ସେତେବେଳକୁ ଜର୍ଜ ବଡ଼ବଡ଼ ଅଣନିଶ୍ୱାସୀ ହୋଇ ଯାଇଥାଏ ।

ଟମର ମୁହଁ କଳା ପଡ଼ିଗଲା । ସେ କହିଲା, "ମୋ ପାଖରେ ପାଞ୍ଚ ଡଲାର ମାତ୍ର ଅଛି । ଏତିକରେ କଅଣ ଆମର କାମ ଚଳିବ ?"

ଜର୍ଜ ମଥା ନୁଆଇଁ କହିଲା, "ହଁ, ବେଶ୍ ଚଳିଯିବ । ଆମର ନ୍ୟୁୟର୍କ ପର୍ଯ୍ୟନ୍ତ ଯିବାପାଇଁ ଗାଡ଼ିଭଡ଼ା ଦରକାର । ତା'ପରେ ଆମେ ସୈନ୍ୟ ବିଭାଗରେ ଯୋଗଦେବା । ତେଣିକି ଆମକୁ କିଛି ଖର୍ଚ୍ଚ ଦେବାକୁ ପଡ଼ିବ ନାହିଁ ।"

ଦୁହେଁଯାକ ସଦର ରାସ୍ତାରେ ରେଲଷ୍ଟେସନ ଆଡ଼କୁ ଚାଲିବାକୁ ଆରମ୍ଭ କଲେ । ହଠାତ୍ ଟମ ଚାଲି ଛିଡ଼ା ହୋଇ ରହିଗଲା ।

ଜର୍ଜ ପଚାରିଲା, "କିରେ ଘଟନା କଅଣ ?"

ଟମ ଚୁପ୍‌ଚାପ୍ କରି ଗମ୍ଭୀର ସ୍ୱରରେ କହିଲା, "ସୈନ୍ୟ ବିଭାଗର କର୍ମଚାରୀମାନେ ଆମର ବୟସ ପଚାରିଲେ କଅଣ କହିବା ?"

ଜର୍ଜ ଅଧୀର ଭାବରେ ଉତ୍ତର କଲା, "କାହିଁକି ? ଆମେ କହିବା ଯେ ଆମର ବୟସ ଅଠର ବର୍ଷ । ଆମେ ଦୁହେଁଯାକ ଖୁବ୍ ଡେଙ୍ଗା । ମୁଁ ତ ପ୍ରାୟ ଛଅ ଫୁଟ ଉଚ୍ଚ । ତୁ ମଧ୍ୟ ବେଶ୍ ଜଣେ ଯୁବକ ଭଳି ଡେଙ୍ଗା ଦେଖା ଯାଉଛୁ ।"

ଦୁହେଁଯାକ ଷ୍ଟେସନ ପାଖରେ ପହଞ୍ଚିଲା ବେଳକୁ ଟମର ଆଶଙ୍କା ଖୁବ୍ ବୃଦ୍ଧି ପାଇଲା । ତାର ମନେ ହେଲା ଯେ ଏତେ ଚଞ୍ଚଳ ଏପରି କାମ କରିବା ଭଲ ହେଉନାହିଁ । କିନ୍ତୁ ଜର୍ଜ ତାକୁ ସାହସ ଦେଉଥାଏ । ଷ୍ଟେସନ ହତାରେ ପହଞ୍ଚି ସେମାନେ ବୁକିଙ୍ଗହାଉସ ପାଖକୁ ନ ଯାଇ ମାଲଗୋଦାମ ପାଖରେ ଏଣେତେଣେ ବୁଲିଲେ । ସେମାନଙ୍କର ଦୃଢ଼ ବିଶ୍ୱାସ ଥିଲା ଯେ ମାଲଗୋଦାମ ଆଡ଼େ କେହି ସେମାନଙ୍କୁ ଲକ୍ଷ୍ୟ କରି ପାରିବେ ନାହିଁ ।

ଜର୍ଜ ଟମକୁ ପରାମର୍ଶ ଦେଲା, "ଅସଲ କଥା ହେଉଛି, ଆମେ ଷ୍ଟେସନରୁ ଟିକେଟ କିଣିବା ନାହିଁ । ଗାଡ଼ିରେ ବସି ସାରିଲା ପରେ

ଗାର୍ଡ଼ଠାରୁ ଟିକେଟ କଣିବା । ତାହାହେଲେ କେହି ଜାଣି ପାରିବେ ନାହିଁ ଯେ ଆମେ ଘରୁ ପଳାଇ ଯାଉଛୁ ।"

ଅନେକ ବେଳ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିଲା । ସେମାନଙ୍କୁ ଭୋକ ହେଲା । ଟମ ରାତିରେ ମାଆଙ୍କ ଭଣ୍ଡାରଘରୁ ଗୋଟିଏ ବିସ୍କୁଟ ଟିଣ ଲୁଚାଇ ଆଣିଥିଲା । ତାହାକୁ ଫିଟାଇ ଦୁହେଁଯାକ କିଛି ବିସ୍କୁଟ ଖାଇଲେ ।

ସାଢ଼େ ଆଠଟା ବେଳକୁ ଗାଡ଼ି ଆସିବାର ଘର୍ଘର ଶବ୍ଦ ଦୂରରୁ ଶୁଭାଗଲା । ଧୀରଗତିରେ ଷ୍ଟେସନ ପ୍ଲାଟଫର୍ମକୁ ଆସି ଗାଡ଼ି ଛିଡ଼ାହେଲା । ଟମ ଓ ଜର୍ଜ ଦୁହେଁଯାକ ଖୁବ୍ ସାବଧାନରେ ଚାରିଆଡ଼କୁ ଚାହିଁ ଟ୍ରେନର ସବାଶେଷ ଡବା ଭିତରକୁ ପଶିଗଲେ । ଡବା ଭିତରେ ତିନିଚାରିଜଣ ମାତ୍ର ଯାତ୍ରୀ ଘୁମାଉଥିଲେ । ଦୁହେଁଯାକ ଡବାର ଆଗ ବେଞ୍ଚରେ ବସିଲେ । ବଡ଼ ଉତ୍କଣ୍ଠିତ ଭାବରେ ପ୍ରାୟ ପନ୍ଦର ମିନିଟ ଅପେକ୍ଷା କରିବା ପରେ ଗାର୍ଡ ଟ୍ରେନ ଛାଡ଼ିବାର ସିଟି ବଜାଇଲେ । ଦୁହେଁଯାକ ନିଶ୍ବାସ ବନ୍ଦ କଲା ପରି ବସିଥାନ୍ତି ।

"ଜର୍ଜ ! ଟମ୍ ହିଲ !"

ଏ ସ୍ୱର ବେଶ ପରିଚିତ । ଟମର ମନ ଏକାବେଳକେ ମରିଗଲା ।

ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ଫୁଟବୋର୍ଡ଼ ଉପରକୁ ଉଠି ଆସି ପିଲା ଦୁହିଁଙ୍କ ଆଡ଼କୁ ଆଙ୍ଗୁଠି ଦେଖାଇ କହିଲେ, "ମୁଁ କହୁଛି, ତୁମେ ଦୁହେଁ ମୋ ସାଙ୍ଗରେ ଘରକୁ ଚାଲିଗଲେ ଭଲ ହେବ ।"

ପଦେ ସୁଦ୍ଧା ଉତ୍ତର ନ ଦେଇ ଦୁହେଁଯାକ ଚୁପ୍ କରି ଡ଼ବାରୁ ଓହ୍ଲାଇ ପଡ଼ିଲେ ଓ ନୀରବରେ ଷ୍ଟେସନରୁ ଚାଲି ଆସିଲେ ।

ସେଦିନ ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ଜର୍ଜକୁ ପାଖରେ ବସାଇ ଧୀର ଭାବରେ କହିଲେ, "ଜର୍ଜ, ମୁଁ ଯାହା କହୁଛି, ଶୁଣ୍ । ଯୁଦ୍ଧ ଘୋର ଭୟଙ୍କର ବ୍ୟାପାର । ମୋର ବିଶ୍ୱାସ ଏ ଯୁଦ୍ଧ ବେଶି ଦିନ ଚାଲିବନାହିଁ । ଯଦି ବା ଚାଲେ, ତେବେ ତୁ ଯେତେବେଳେ ବଡ଼ ହୋଇ ନିଜ କାର୍ଯ୍ୟର ଭଲମନ୍ଦ ବୁଝିପାରିବୁ ; ସେତେବେଳେ ତୋତେ ଯୁଦ୍ଧ ବିଭାଗରେ

ଯିବାକୁ ମୁଁ ଅନୁମତି ଦେବି ! କିନ୍ତୁ ତା ପୂର୍ବରୁ ନୁହେଁ । ମୋ କଥା ବୁଝି ପାରୁଛୁ ତ ?"

ଜର୍ଜ ନମ୍ର ଭାବରେ ସ୍ୱୀକୃତି ଜଣାଇଲା ।

ପିତା ନିଜର ପକେଟ ଘଡ଼ିକୁ ଚାହିଁ କହିଲେ, "ତୋର ସ୍କୁଲକୁ ଯିବାର ବେଳ ହୋଇଗଲା । ସ୍କୁଲକୁ ଯିବାପାଇଁ ପ୍ରସ୍ତୁତ ହୁଅ ।

ଦ୍ୱାରମୁହଁ ପାଖରେ ଅଟକି ଯାଇ ଜର୍ଜ କହିଲା, "ବାପା ।"

"କଅଣ, କହ ।"

ତୁମେ କିପରି ଜାଣିଲ ଯେ ମୁଁ ଟମ ସାଥିରେ ପଳାଇ ଯାଉଥିଲି ?

ମିଷ୍ଟର ଓ୍ୱେଷ୍ଟିଂହାଉସ ମୁହଁର ହସ ଦମନ କରି କହିଲେ, "ତୁମେ ଡବାକୁ ଉଠିଲା ବେଳେ ଗାର୍ଡ ତୁମକୁ ଦେଖି ମୋ ପାଖକୁ ଖବର ଦେଇଥିଲେ । ଆଜି ସକାଳେ ଯାହା ହୋଇଗଲା, ସେ ବିଷୟରେ ଆଉ କିଛି କଥାବାର୍ତ୍ତା କରିବା ଦରକାର ନାହିଁ । ବୁଝିଲୁ ?"

ଜର୍ଜ ଉତ୍ତର କଲା, "ହଁ ବାପା ।"

ମିଷ୍ଟର ଓ୍ୱେଷ୍ଟିଂହାଉସ ତାଙ୍କ କଥା ରକ୍ଷା କରିଥିଲେ । ସେ ଆଉ କେବେହେଲେ ଏହି ଘଟଣା ବିଷୟରେ କହି ନ ଥିଲେ ।

ଯୁବକସୁଲଭ ଆଗ୍ରହ ସହକାରେ ଜର୍ଜ ପରବର୍ତ୍ତୀ ଦୁଇବର୍ଷ କାଳ ସେହି ଭୀଷଣ ଗୃହଯୁଦ୍ଧର ଗତି ଲକ୍ଷ୍ୟ କରୁଥିଲା । ରୋଟାରି ଇଞ୍ଜିନ କଥା ସେ ପ୍ରାୟ ଭୁଲି ଯାଇଥିଲା । ୧୮୬୨ ମସିହାରେ ତାର ବଡ଼ ଭାଇ ଆଲବର୍ଟ ନ୍ୟୁୟର୍କ ସ୍ୱେଚ୍ଛାବାହିନୀରେ ଯୋଗ ଦେଇ ଲେଫ୍‌ଟେନାଣ୍ଟ ପଦରେ କମିଶନ ପାଇଲା । ତାହାପରେ ଜନ ନୌସେନା ବିଭାଗରେ ଭର୍ତ୍ତି ହେଲା ।

୧୮୬୩ ମସିହାର ସେପ୍‌ଟେମ୍ବର ମାସ ବେଳକୁ ଜର୍ଜକୁ ଯୁଦ୍ଧ-ବିଭାଗରେ ଯୋଗ ଦେବାରୁ ନିବୃତ୍ତ କରିବା ସମ୍ଭବ ହେଲା ନାହିଁ । ସେତେବେଳକୁ ତାର ବୟସ ୧୬ ବର୍ଷ । ମିଷ୍ଟର ଓ୍ୱେଷ୍ଟିଂହାଉସ ଅନିଚ୍ଛାସତ୍ତ୍ୱେ ତାହାକୁ ଯୁଦ୍ଧ ବିଭାଗରେ ଯୋଗ ଦେବାପାଇଁ ଅନୁମତି ଦେଲେ ।

---

## ତିନି

# ରେଲଗାଡ଼ିରେ

ଜର୍ଜ ତାର ଜିନିଷପତ୍ର ବାନ୍ଧି ନ୍ୟୁୟର୍କ ଯିବାପାଇଁ ରେଲଗାଡ଼ିରେ ବସିଲା । ତା ପର ଦିନ ନ୍ୟୁୟର୍କରେ ସେ ଶପଥ ଗ୍ରହଣ କରି କମିଶନ ବିହୀନ ସୈନିକରୂପେ ଯୁକ୍ତରାଷ୍ଟ୍ର ସୈନ୍ୟ ଦଳରେ ଯୋଗ ଦେଲା । ସୈନ୍ୟ ଦଳର କେଉଁ ବିଭାଗରେ ସିଏ ବୋଲି ପଚରାଯିବାରୁ ସେ ତାର ବଡ଼-ଭାଇ ଅଲବର୍ଟ ପରି ଅଶ୍ୱାରୋହୀ ସୈନ୍ୟ ବିଭାଗରେ ଯୋଗ ଦେବ ବୋଲି କହିଲା ।

ଅଳ୍ପ ଦିନ ମଧ୍ୟରେ ଅଶ୍ୱାରୋହୀ ସୈନ୍ୟବିଭାଗରେ ଯିବାକୁ କହିବା ଦ୍ୱାରା ବିଜ୍ଞତାର କାର୍ଯ୍ୟ କରିଛି କି ନା ଏ ବିଷୟରେ ତାର ସନ୍ଦେହ ଜନ୍ମିଲା । ସେ ମନେ କରିଥିଲା ଯେ ସୈନିକ ଜୀବନରେ ସେ ଅନେକ ଗୌରବପୂର୍ଣ୍ଣ କାର୍ଯ୍ୟ କରିବାର ସୁଯୋଗ ପାଇବ । କିନ୍ତୁ ଏ ବିଷୟରେ ସେ ନିରାଶ ହେଲା । ସେ ଦେଖିଲା ଯେ ଏଥିରେ କେବଳ ଗ୍ରୀଷ୍ମର ଘୋର ଖରାରେ ଡ୍ରିଲ କରିବାକୁ ହେଉଛି; କେତେବେଳେ କାଦୁଅରେ ଘୁଷୁରିବାକୁ ପଡ଼ୁଛି ତ ଆଉ କେତେବେଳେ ହାଡ଼ଭଙ୍ଗା ଶାରୀରିକ ବ୍ୟାୟାମ କରିବାକୁ ପଡ଼ୁଛି । ଖାଇବାପାଇଁ ଖାଲି ମୋଟା ବିସ୍କୁଟ; ସେ ତେଲରେ ଭଜା ହୋଇଥାଏ । ତା ସାଥିରେ କେବେକେବେ ବୁଟସିଝା ।

ଆହୁରି ମଧ୍ୟ ସେ ବିରକ୍ତି ସହକାରେ ଅନୁଭବ କଲା ଯେ ଯେଉଁ-ମାନେ ଅଶ୍ୱାରୋହୀ ସୈନ୍ୟବିଭାଗରେ ଥିଲେ ସେମାନଙ୍କୁ ଆପଣା ଆପଣାର ଘୋଡ଼ାର ଯତ୍ନ ନେବାକୁ ହେଉଥିଲା । ଏପରି କି ନିଜର ଖାଇବା ବା ବିଶ୍ରାମ ନେବା ପୂର୍ବରୁ ଏ କାମ କରିବାକୁ ପଡ଼ୁଥିଲା । ଅନେକ ସମୟରେ

ବହୁଦୂର ବୁଲି ଘୋଡ଼ାପାଇଁ ଘାସ ବା ନୂଆ ସଂଗ୍ରହ କରି ସନ୍ଧ୍ୟାପରେ କ୍ୟାମ୍ପକୁ ଫେରି ଆସିଲା ବେଳକୁ ଖାଇବାପାଇଁ କିଛି ନ ଥାଏ । ଅନ୍ୟ ସୈନିକମାନେ ସବୁ ଖାଦ୍ୟ ଶେଷ କରି ଦେଇଥାନ୍ତି ।

ପ୍ରାଥମିକ ଟ୍ରେନିଂ ଶେଷ ହେବାରୁ ଜର୍ଜ ଯେଉଁ ଦଳରେ ଥିଲି ସେହି ଦଳଟିକୁ ଉତ୍ତର ଭର୍ଜିନିଆର ପାର୍ବତ୍ୟ ଅଞ୍ଚଳରେ ଜଗୁଆଳି କାର୍ଯ୍ୟ କରିବାକୁ ପଠାଗଲା । ଏହି ଅଞ୍ଚଳଟି ନିର୍ଜନ ଥିଲା । ଖୁବ୍ କ୍ୱଚିତ୍ ଶତ୍ରୁ ସହିତ ସଂଘର୍ଷ ଘଟୁଥିଲା । ଏପରି ସ୍ଥଳେ କୃତିତ୍ୱ ପ୍ରଦର୍ଶନ କରିବାର ସୁଯୋଗ ପ୍ରାପ୍ତ ଆଦୌ ନ ଥିଲା । ଏହି ଦଳର ପ୍ରଧାନ କାର୍ଯ୍ୟ ଥିଲା—ଶତ୍ରୁ ପକ୍ଷର ସୈନ୍ୟମାନଙ୍କ ଗତିବିଧି ବିଷୟରେ ସତର୍କ ରହିବା ଓ କେବେ କେବେ ଲୁଣ୍ଠନକାରୀ ଦଳ ୟୁନିଅନର ସୀମା ମଧ୍ୟରେ ପ୍ରବେଶ କରିବାକୁ ଚେଷ୍ଟା କଲେ ସେମାନଙ୍କୁ ବିତାଡ଼ିତ କରିବା । ଦୁଇମାସ କାଳ ଏହିପରି ରହିବା ପରେ ଜର୍ଜକୁ ବଡ଼ ବିରକ୍ତ ଲାଗିଲା । ଘରକୁ ଫେରି ଯିବାକୁ ତାର ମନହେଲା ।

କିନ୍ତୁ ଡ଼ିସେମ୍ବର ମାସରେ ଏହି ଦଳଟି ଗୋଟିଏ ବିସ୍ମୟ ଜନକ ଆଦେଶ ପାଇଲେ । ବଡ଼ଦିନ ଉତ୍ସବ ପାଳିବା ପାଇଁ ସମସ୍ତଙ୍କୁ ଛୁଟି ଦିଆଗଲା । ଜର୍ଜ ବାପମାଆଙ୍କୁ ଏହି ଶୁଭ ସମ୍ବାଦ ଜଣାଇ ଦେଲା । ସେ ଖବର ପାଇଲା ଯେ ତାର ଅନ୍ୟ ଦୁଇ ଭାଇ ଜନ୍ ଓ ଆଲବର୍ଟ ଛୁଟିରେ ଆସିବେ । ବ୍ୟବସ୍ଥା ହେଲା ଯେ ମିଷ୍ଟର ଓ୍ୱେଷ୍ଟିଂହାଉସ ସସ୍ତ୍ରୀକ ନ୍ୟୁୟର୍କକୁ ଆସିବେ ଓ ସେଠାରେ ପରିବାରର ସମସ୍ତେ ମିଳିତ ହେବେ ।

ଜର୍ଜ ଓ୍ୱାଶିଂଟନଠାରୁ ରେଲଗାଡ଼ିରେ ବସିଲା । ନ୍ୟୁୟର୍କ ଠାରେ ତାର ଦୁଇ ଭାଇ, ବାପା ଓ ମାଆଙ୍କ ସଙ୍ଗେ ସାକ୍ଷାତ ହେଲା । ମିଷ୍ଟର ଓ୍ୱେଷ୍ଟିଂହାଉସ ଗମ୍ଭୀର ଭାବରେ ଜର୍ଜ ସହିତ କରମର୍ଦ୍ଦନ କଲେ । ମାଆ ଆଖିରୁ ଲୁହ ଗଡ଼ାଇ ତାକୁ ଆଲିଙ୍ଗନ କଲେ ।

ଗୋଟିଏ ଘୋଡ଼ା ଗାଡ଼ିରେ ବସି ସମସ୍ତେ ମିସେସ ଓ୍ୱେଷ୍ଟିଂ-ହାଉସଙ୍କର ନ୍ୟୁୟର୍କରେ ଥିବା ଜଣେ ମାଉସୀଙ୍କ ଘରକୁ ଗଲେ । ସେଠାରେ ସମସ୍ତେ ଏକାଠି ଭୋଜନ କଲେ । ଏହି ଘରଟି ସହରର

ଗୋଟିଏ ପ୍ରାନ୍ତରେ । ଆକସ୍ମିକ ଦରକାର ପଡ଼ିଲେ ସମ୍ବାଦ ଦେବାପାଇଁ ଆଲବର୍ଟ ଏହି ମହିଳାଙ୍କ ଘର ଠିକଣା ଦେଇଥିଲା । ସେଠାରେ ପହଞ୍ଚିଲା ମାତ୍ରେ ଦେଖାଗଲା ଆଲବର୍ଟ ପାଖକୁ ଏକ ପତ୍ର ଆସିଛି । ଏଥିରେ ଲେଖାଥିଲା—ତୁମର ଛୁଟି ରଦ୍ଦ କରାଗଲା । ତୁମ୍ଭେ ସଙ୍ଗେ ସଙ୍ଗେ ସିଟିହଲ୍ ପାର୍କର ସାମରିକ ହେଡ଼କ୍ୱାର୍ଟରରେ ଉପସ୍ଥିତ ହୋଇ ତୁମର ଦଳ ସହିତ ଯୁଦ୍ଧ କ୍ଷେତ୍ରକୁ ଯିବାକୁ ପ୍ରସ୍ତୁତ ହୁଅ ।

ଆଦେଶଟି ପାଇବା ମାତ୍ରେ ଆଲବର୍ଟ ମାଆକୁ ଆଲିଙ୍ଗନ କରି ବିଦାୟ ନେଲା । ବାପା ଓ ଭାଇମାନଙ୍କ ସହିତ କର ମର୍ଦ୍ଦନ କରି ସେମାନେ ଯେଉଁ ଘୋଡ଼ାଗାଡ଼ିରେ ଆସିଥିଲେ, ସେଥିରେ ବସିଲା । ଗାଡ଼ି ଚାଲିବାରୁ ସେ ଗାଡ଼ିର ଝରକାବାଟେ ହାତ ହଲାଇ ସମସ୍ତଙ୍କଠାରୁ ଶେଷ ଥର ପାଇଁ ବିଦାୟ ନେଲା ।

ଆଲବର୍ଟ ଚାଲିଯିବାରୁ ସେମାନଙ୍କର ମିଳନ ସୁଖ ବହୁ ପରିମାଣରେ ଊଣା ହୋଇଗଲା । ତଥାପି ଅନେକ ରାତି ପର୍ଯ୍ୟନ୍ତ ସମସ୍ତେ ବସି ଗଳ୍ପ କଲେ । ଜନ୍ ଓ ଜର୍ଜ ନିଜ ନିଜର କୌତୁହଳପୂର୍ଣ୍ଣ ଅନୁଭୂତି ବର୍ଣ୍ଣନା କରି ବାପାମାଆଙ୍କୁ ଆନନ୍ଦିତ କଲେ । ରାତିଟି ସୁଖରେ କଟିଗଲା ।

ଜର୍ଜ କହିଲା—"ଦିନେ ରାତିରେ ମୁଁ ଜଗୁଆଳି କାର୍ଯ୍ୟରେ ନିଯୁକ୍ତ ଥିଲି । ଏହି ସମୟରେ ମୋର ପଛପଟେ ଗୋଟାଏ ବୁଦା ଭିତରୁ ଖସ୍ ଖସ୍ ଶବ୍ଦ ଶୁଣାଗଲା । ମୁଁ ହୁକୁମ ଦେଲି—ଯେଉଁଠି ଅଛ, ସେହିଠାରେ ରହ ।" ଉତ୍ତରରେ ଶୁଣାଗଲା ଘୋଡ଼ାର ହିଁ ହିଁ ଶବ୍ଦ । ଘୋଡ଼ାଟି ହେଉଛି ଆମ କାପ୍ଟେନଙ୍କର । ଏହା କହି ଜର୍ଜ ହସି ହସି ଗଡ଼ିଗଲା ।

ଜନ୍ କହିଲା ଯେ—ଥରେ ନୌବାହିନୀର ଜଣେ ସୈନିକକୁ କୁହାଗଲା ଯେ ସେ ନୂଆ ଭର୍ତ୍ତି ହୋଇଥିବା ସୈନ୍ୟମାନଙ୍କୁ ତାଲିମ କରାଇବ । ଆଗକୁ ଚାଲୁଥିବା ସୈନ୍ୟମାନଙ୍କୁ ପଛକୁ ଫେରାଇବା ପାଇଁ କି ଆଦେଶ ଦେବାକୁ ହେବ, ତାହା ସେହି ସୈନିକ ଭୁଲି ଯାଇଥିଲା । ତେଣୁ ଅବସ୍ଥା ଏପରି ହେଲା ଯେ ନୂଆ ସୈନ୍ୟମାନେ ସମସ୍ତେ ଜାହାଜରୁ ସମୁଦ୍ରରେ ପଡ଼ି ଯାଇଥାନ୍ତେ ।

ପୁଅ ଦୁହେଁ ଏହିପରି ଗଳ୍ପ କହିଲା ବେଳେ ବାପ ମାଆ ଅନ୍ୟ ପିଲାଙ୍କ ସଙ୍ଗେ ହସିବାର ଚେଷ୍ଟା କରୁଥିଲେ; ମାତ୍ର ଆଲବର୍ଟ ଯୁଦ୍ଧକ୍ଷେତ୍ରକୁ ଯାଉଥିବ—ଏହି କଥା ସେମାନଙ୍କ ମନରେ ପ୍ରଧାନ ସ୍ଥାନ ଅଧିକାର କରିଥିଲା ।

୧୮୬୪ ମସିହା ପ୍ରାରମ୍ଭରେ ପ୍ରେସିଡେଣ୍ଟ ଲିଙ୍କନ ଇଉଲିସେସଗ୍ରାଣ୍ଟ ନାମକ ଜଣେ ଅଖ୍ୟାତନାମା ଜେନେରାଲଙ୍କ ହାତରେ ସମଗ୍ର ୟୁନିଅନ ସେନାବାହିନୀର ଅଧିନାୟକତ୍ୱ ଅର୍ପଣ କଲେ । ଗ୍ରାଣ୍ଟ କାଳ ବିଳମ୍ବ ନକରି ବିଦ୍ରୋହୀ ସେନାବାହିନୀକୁ ଦୁଇଭାଗରେ ବିଭକ୍ତ କରିଦେବା ଉଦ୍ଦେଶ୍ୟରେ ଅଭିଯାନ ଆରମ୍ଭ କରିଦେଲେ । ଏତେ ଦିନେ ଆଶା ଦେଖାଗଲା ଯେ ନିକଟ ଭବିଷ୍ୟତରେ ଯୁଦ୍ଧ ଶେଷ ହୋଇଯିବ; ୟୁନିୟନ ସୈନ୍ୟମାନେ ବିଜୟୀ ହେବେ । କିନ୍ତୁ ଜର୍ଜ ଯେଉଁ ସେନାଦଳରେ ଥିଲା, ସେହି ଦଳଟି ପୂର୍ବପରି ନିର୍ଜ୍ଜନ ପାହାଡ଼ ଭିତରେ ଜଗୁଆଳି କାମରେ ନିଯୁକ୍ତ ରହିଥିଲେ ।

ସେହି ବର୍ଷ ଏପ୍ରିଲ ମାସରେ ଜର୍ଜ ଗୋଟିଏ ସିଦ୍ଧାନ୍ତରେ ଉପନୀତ ହେଲା । ସେ ନୌବିଭାଗକୁ ବଦଳି ହେବାପାଇଁ ଦରଖାସ୍ତ ଦେବାକୁ ସ୍ଥିର କଲା । ତାର ଦଳର କର୍ତ୍ତା ଜର୍ଜର ସମସ୍ତ ଆପତ୍ତି ଶୁଣି ବିଧିବଦ୍ଧ ଦରଖାସ୍ତ କରିବା ଉଦ୍ଦେଶ୍ୟରେ ୱାଶିଂଟନକୁ ଯିବାପାଇଁ ଅନୁମତିପତ୍ର ଦେଲେ ।

ନୌବିଭାଗର ସଦର ଅଫିସରେ ସବୁ କର୍ମଚାରୀ କାର୍ଯ୍ୟବ୍ୟସ୍ତ । ବାହାରୁ ଦେଖିଲେ ମନେ ହେବ ଯେ ଏଠାରେ ଯେପରି କିଛି ଶୃଙ୍ଖଳା ନାହିଁ ।

ଜର୍ଜକୁ ପ୍ରଶ୍ନ ହେଲା, "ତୁମେ କାହିଁକି ନୌବାହିନୀକୁ ବଦଳି ହେବାକୁ ଚାହୁଁଛ ?"

ସେ ସରଳ ଭାବରେ ଉତ୍ତର ଦେଲା, "ମୁଁ କାରିଗରି କାମ ଶିକ୍ଷା କରିଛି । ମୋର ସେହି ଅଭିଜ୍ଞତାକୁ ଦେଶସେବାରେ ଅଧିକ ଉପଯୁକ୍ତ ଭାବରେ ନିୟୋଗ କରିପାରିବି ।"

ନୌବିଭାଗର ଜଣେ ଇଞ୍ଜିନିଅର ଜର୍ଜର କାରିଗରି ଜ୍ଞାନ ପରୀକ୍ଷା କରିବାକୁ ଆଦେଶ ପାଇଥିଲେ । ଜର୍ଜ କିପରି ବାପାଙ୍କ କାରଖାନାରେ

କାମ ଶିଖିଥିଲା, ତାହା ତାଙ୍କୁ ବୁଝାଇ ଦେଲା ଓ ତାଙ୍କର ଅନ୍ୟାନ୍ୟ ପ୍ରଶ୍ନର ଯଥାଯଥ ଉତ୍ତର ଦେଲା ।

ଏହି ଇଞ୍ଜିନିଅର କହିଲେ, "ତୁମେ ବେଶ୍ ଜ୍ଞାନ ଅର୍ଜ୍ଜନ କରିଛ, ତୁମର କିଛି ଅଭିଜ୍ଞତା ମଧ୍ୟ ଅଛି । ବିଶେଷତଃ ଷ୍ଟୀମ ଇଞ୍ଜିନ ବିଷୟରେ ତୁମର ଭଲ ଜ୍ଞାନ ଅଛି । ମୋର ମନେ ହୁଏ, ନୌବିଭାଗରେ ତୁମେ ଭଲ କାମ ଦେଖାଇ ପାରିବ ।

ସପ୍ତାହକ ମଧ୍ୟରେ ଜର୍ଜର ବଦଳି ହୁକୁମ ଆସିଗଲା । ମସ୍କୁଟୋ ଜାହାଜର ତୃତୀୟ ସହକାରୀ ଇଞ୍ଜିନିଅର ପଦରେ ତାକୁ ନିଯୁକ୍ତ କରାଯାଇଥିଲା । ମସ୍କୁଟୋ ଗୋଟିଏ ଷ୍ଟୀମ ଚାଳିତ ଜାହାଜ । ଏଥିରେ ବନ୍ଧୁକ ସଂଲଗ୍ନ ଥିଲା । ଏହା ଫଟୋମାକ ନୌବହର ସଙ୍ଗେ ସଂଯୁକ୍ତ ଥିଲା । ଏହି ନୌବହର ଶତ୍ରୁର ପଥରୋଧ କରିବା କାର୍ଯ୍ୟରେ ନିଯୁକ୍ତ ରହିଥିଲା ।

ଜାହାଜର ଡେକ୍ ତଳକୁ ଇଞ୍ଜିନରୁମ୍ । ଜର୍ଜ ଏହି ଇଞ୍ଜିନରୁମ୍‌ରେ ପ୍ରବେଶ କଲା କ୍ଷଣି ତାକୁ ନିଜ ଘରେ ରହିଥିଲା ଭଳି ବୋଧ ହେଲା । ଯନ୍ତ୍ରପାତି ପାଖରେ ରହିବାଦ୍ୱାରା ତାର ଉତ୍ସାହ ଶତଗୁଣରେ ବଢ଼ିଗଲା । ଆଶ୍ୱାରୋହି ସୈନିକ ଭାବରେ ସେ ଯେଉଁ କେତେ ମାସ ଅଶାନ୍ତିରେ କଟାଇଥିଲା, ତାହା ଏକବାରେ ଭୁଲିଗଲା । ଜାହାଜର ଇଞ୍ଜିନିଅରିଂ ଜ୍ଞାନ ଅର୍ଜିବା ପାଇଁ ସେ ଯଥାସାଧ୍ୟ ଲାଗିପଡ଼ିଲା । ପ୍ରକୃତ ପକ୍ଷରେ ସ୍ଥଳ ଭାଗରେ ଯେଉଁ ଧରଣର ଷ୍ଟୀମ ଇଞ୍ଜିନ ବ୍ୟବହୃତ ହେଉଥିଲା, ଏହି ଇଞ୍ଜିନ ଠିକ୍ ସେହି ଧରଣର । ଅଳ୍ପ ଦିନ ମଧ୍ୟରେ ସେ ଜାହାଜର ଯାନ୍ତ୍ରିକ କୌଶଳ ବିଷୟରେ ତାର ସାଥି ମାନଙ୍କଠାରୁ ଅଧିକ ଜ୍ଞାନ ଅର୍ଜନ କରିପାରିଲା ।"

ନିର୍ଦ୍ଦିଷ୍ଟ ଦୈନିକ କାର୍ଯ୍ୟ ଶେଷରେ ଜର୍ଜ ତାର ସେହି ପୂର୍ବ ରୋଟାରି ଇଞ୍ଜିନ ବିଷୟରେ ଗଭୀର ଚିନ୍ତା କରୁଥିଲା । ଦୁଇ ବର୍ଷରୁ ଅଧିକ କାଳ ପୂର୍ବେ ସେ ତାର ନକ୍‌ସା କରି ସାରିଥିଲା । ଏବେ ମଧ୍ୟ ତାର ସେହି ପରିକଳ୍ପନା ଉପରେ ଦୃଢ଼ ବିଶ୍ୱାସ ଥିଲା । ଜାହାଜର ଲେଦ ଓ ଅନ୍ୟାନ୍ୟ ଯନ୍ତ୍ରପାତି ଅବସର ସମୟରେ ବ୍ୟବହାର କରିବାପାଇଁ ସେ ଚିଫ୍‌ଇଞ୍ଜିନିଅରଙ୍କ ଅନୁମତି ପ୍ରାର୍ଥନା କଲା । ଚିଫ୍ ଇଞ୍ଜିନିଅର ଏଥି

ମଧ୍ୟରେ ଜର୍ଜଙ୍କୁ ବିଶେଷ ଭଲ ପାଉଥିଲେ । ତେଣୁ ସେ ସହଜରେ ଏଥି ଅନୁମତି ଦେଲେ ।

କାର୍ଯ୍ୟ ପରେ ଅବସରମିଳିଲେ ଜର୍ଜର ସହକର୍ମୀମାନେ ଖେଳରେ ମାତି ଯାଆନ୍ତି, କିମ୍ବା ବନ୍ଦରରେ ଛୁଟି ପାଇଲେ କିପରି ମଉଜ ମଜଲିସ ହୁଏ ସେ ବିଷୟରେ ବାହୁଲ୍ୟପୂର୍ଣ୍ଣ ବର୍ଣ୍ଣନା କରି ଗଳ୍ପ କରନ୍ତି । ମାତ୍ର ସେହି ସମୟରେ ଜର୍ଜ ତାହାର ପରୀକ୍ଷାମୂଳକ ଇଞ୍ଜିନର ବିଭିନ୍ନ ଅଂଶ ତିଆରି କରିବାରେ ଲାଗିଥାଏ । ଏହି ଜାହାଜରେ ପଚାଶ ବର୍ଷର ଜଣେ ବୃଦ୍ଧ କାରିଗର ଥିଲେ । ତାଙ୍କର ନାମ ହାନସନ । ସେ ଦିନେ ଜର୍ଜଙ୍କୁ ପଚାରିଲେ, "ତୁମେ ଏତେ ଦିନ ହେଲା କି କାମରେ ଲାଗିଛ ?" ଜର୍ଜ ନିଜର ନକ୍‌ସାଟି ଦେଖାଇ ଏହାର ବିଭିନ୍ନ ଅଂଶ ଦ୍ୱାରା କି କି କାର୍ଯ୍ୟ ହେବ ତାହା ବୁଝାଇ ଦେଲା ।

ହାନସନ ଜଣେ ଅଭିଜ୍ଞ କାରିଗର । ଜର୍ଜର ନକ୍‌ସା ଦେଖି ସେ ଏହା ବିଷୟରେ ଉଚ୍ଚମତ ପୋଷଣ କରିଥିଲେ । ସେ କହିଲେ "ଏପରି ଇଞ୍ଜିନଟି ହୋଇପାରିଲେ ଅନେକ ସୁବିଧା ହେବ ।" ତା'ପରେ ଟିକିଏ ରହିଯାଇ ମୁଣ୍ଡ କୁଣ୍ଡାଉ କୁଣ୍ଡାଉ କହିଲେ, "କିନ୍ତୁ ଏହି ଇଞ୍ଜିନ କଅଣ ପ୍ରକୃତରେ କାମ ଦେଇ ପାରିବ ?"

ଘୂର୍ଣ୍ଣାୟମାନ ଚକର ଗ୍ରେଟ ଗ୍ରେଟ ପଖାଗୁଡ଼ିକ ଖଞ୍ଜୁ ଖଞ୍ଜୁ ଜର୍ଜ କହିଲା, "ମୋର ମନେ ହୁଏ, ଏହି ଇଞ୍ଜିନ କାମ ଦେଇପାରିବ । ତେବେ ଏହାକୁ ପରୀକ୍ଷା କଲେ ଠିକ ଜଣାପଡ଼ିବ ।"

"କିପରି ଏହାକୁ ପରୀକ୍ଷା କରିବ ?"

ଜର୍ଜ ଚିନ୍ତା କରିବାକୁ ଲାଗିଲା । ଇଞ୍ଜିନର ମଡେଲଟି ତିଆରି ସରିଲେ କିପରି ତାହାକୁ ପରୀକ୍ଷା କରଯିବ, ସେ ବିଷୟ ସେ ଭଲରୂପେ ଚିନ୍ତା କରି ନ ଥିଲା । ମାତ୍ର ହାନସନ ଯେ ଗୋଟିଏ ଗୁରୁତର ପ୍ରଶ୍ନ ଉତ୍‌ଥାପନ କରିଥିଲେ, ଏଥିରେ ସନ୍ଦେହ ନାହିଁ । ଇଞ୍ଜିନ ତିଆରି କରାଯାଇପାରେ ଓ ତାହା ଘୂରିପାରେ, ଏହା ଏକ କଥା; ମାତ୍ର ତାହା ଯେ ପ୍ରକୃତରେ କାର୍ଯ୍ୟ କ୍ଷେତ୍ରରେ ଲଗାଯାଇ ପାରିବ, ଏହା ଏକ ଭିନ୍ନ କଥା ।

ଜର୍ଜ ଟିକିଏ ଲଜ୍ଜିତ ଭାବରେ କହିଲା, "ସତ କହିବାକୁ ଗଲେ, ମୁଁ ଏ ବିଷୟ ଏକବାରେ ଭୁଲି ଯାଇଛି ।"

ହାନସନ ଉତ୍ତର କଲେ, "ଟିକିଏ ଅପେକ୍ଷା କର । ହୁଏତ ଏ ବିଗରେ ମୁଁ ତୁମକୁ ସାହାଯ୍ୟ କରିପାରେଁ ।" ଏତିକି କହି ସେ ନିଜ କୋଠରୀକୁ ଚାଲିଗଲେ ଏବଂ କିଛି ସମୟ ପରେ ଗୋଟିଏ ଷ୍ଟିମ ଯୁଦ୍ଧଜାହାଜର ତିନି ଫୁଟିଆ ମଡେଲ ଆଣି ଜର୍ଜକୁ ଦେଖାଇ କହିଲେ, "ଏଇ ମଡେଲଟିକୁ ମୁଁ ନିଜେ ତିଆରି କରିଛି । ଏହାର ବିଭିନ୍ନ ଅଂଶର ଅନୁପାତ ଠିକ୍ ଅଛି । ଏହାକୁ ତିଆରି କରିବାକୁ ମୋତେ ଦୁଇ ମାସ ଲାଗିଛି । ମୋ କୋଠରୀରେ ଏହିପରି ତିନି ଚାରୋଟି ମଡେଲ ରଖିଛି ।"

ଜର୍ଜ ଏହି ଷ୍ଟିମ ମଡେଲଟିର ଖୁବ୍ ପ୍ରଶଂସା କଲା । ମଡେଲଟି ଅତି ସୁନ୍ଦର ଭାବରେ ତିଆରି ହୋଇଥିଲା । ଏହା ଏଡ଼େ ସର୍ବାଙ୍ଗସୁନ୍ଦର ହୋଇଥିଲା ଯେ ଏଥିରେ ଥିବା ଷ୍ଟିମ ଚକଟି ଘୂରିଲା ବେଳକୁ ଜାହାଜର କଣ୍ଟିଟି ଚାଲୁଥିଲା ।

ହାନସନ ପଚାରିଲେ, "ତୁମର ଇଞ୍ଜିନକୁ ଏହି ଜାହାଜ-ମଡେଲରେ ଲଗାଇ ପରୀକ୍ଷା କଲେ କିପରି ହେବ ? ଆମେ ଏହାକୁ ମଡେଲର ଗୋଟିଏ ପାଖରେ ଲଗାଇ ଇଞ୍ଜିନର ପ୍ରକୃତ କାର୍ଯ୍ୟକାରିତା ପରୀକ୍ଷା କରି ପାରିବା ।"

ଜର୍ଜ ଅତି ଆନନ୍ଦରେ ଏହି ପ୍ରସ୍ତାବରେ ସ୍ୱୀକୃତ ହେଲା । ସେ ରୋଟାରିଇଞ୍ଜିନର ମଡେଲ ତିଆରି କରିସାରି ତାହାକୁ କିପରି ଜାହାଜ-ମଡେଲ ସଙ୍ଗେ ଖଞ୍ଜିବାକୁ ହେବ, ତାହା ହାନସନଙ୍କୁ ବୁଝାଇ ଦେଲା । ହାନସନ ଜଣେ କୌଶଳୀ କାରିଗର । ତେଣୁ ସେ ଦୁଇଦିନ ମଧ୍ୟରେ ଇଞ୍ଜିନଟିକୁ ନେଇ ଜାହାଜରେ ଖଞ୍ଜିଦେଲେ । ଜାହାଜର ପଛପାଖେ ଗୋଟିଏ ଷ୍ଟିମ ଛିଦ୍ର ରଖାଗଲା । ବଏଲରକୁ ଗରମ କରିବା ପାଇଁ ଫର୍ଣ୍ଣେସ ଭିତରକୁ ଏହି ଛିଦ୍ରବାଟେ ଜାଳେଣି ପୂରାଇବାର ବ୍ୟବସ୍ଥା ହେଲା ।

ଏହାପରେ ଯେତେବେଳେ ମସ୍କୁଟା ଜାହାଜ ଓ୍ୱାଶିଙ୍ଗଟନ ବନ୍ଦରରେ ଲଙ୍ଗର ନେବାକୁ ପହଞ୍ଚିଲା ଓ କର୍ମଚାରୀମାନେ ଛୁଟି ପାଇଲେ,

ସେତେବେଳେ ଜର୍ଜ ଓ ହାନସନ ସେହି ଇଞ୍ଜିନ ଲଗିଥିବା ମଡେଲ-ଜାହାଜଟିକୁ କୂଳକୁ ନେଇଗଲେ । ପୋଖରୀମାନଙ୍କ ନଦୀର ଧାରରେ ଗୋଟିଏ ଖାଲ ଥିଲା । ଜର୍ଜ ମୋଟା ସୂତାଗୁଳାର ଗୋଟିଏ ମୁଣ୍ଡ ମଡେଲର ପଛ-ପଟେ ବାନ୍ଧିଦେଲା; ଷ୍ଟୋଭ ବଏଲରରେ ଉତ୍ତାପ ଦେଇ ମଡେଲଟିକୁ ସେହି ଖାଲରେ ଭସାଇ ଦେଲା । ଏକ ମିନିଟରୁ କମ୍ ସମୟ ମଧ୍ୟରେ ଷ୍ଟୋଭ ପଖାବିଶିଷ୍ଟ ଚକଟି ଘୂରିବାକୁ ଆରମ୍ଭ କଲା । ପ୍ରଥମେ ପ୍ରଥମେ ଏହା ଧୀର ଭାବରେ ବୁଲିଲା; ଆସ୍ତେ ଆସ୍ତେ ଖୁବ୍ ବେଗରେ ବୁଲି ପାଣିକୁ ଆନ୍ଦୋଳିତ କଲା । ଜାହାଜ-ମଡେଲଟି ଚାଲିବାକୁ ଲାଗିଲା । ମଡେଲ ଦୂରକୁ ଚାଲିବା ସଙ୍ଗେ ସଙ୍ଗେ ଜର୍ଜ ଗୁଳାର ସୂତାକୁ ଫିଟାଇ ଦେଉଥାଏ ।

ସେ ଆନନ୍ଦରେ ଚିତ୍କାର କଲା, "ହାନସନ, ଦେଖିଲ, ଆମ ଜାହାଜ କେତେ ବେଗରେ ଚାଲିଛି ? ସେ ଏତେ ବେଗରେ ଯାଉଛି ଯେ ମୁଁ ସେତେ ଶୀଘ୍ର ଗୁଳାର ସୂତା ଛାଡ଼ି ପାରୁନାହିଁ ।"

"ବେଶ୍, ସାବାସ୍ ଜର୍ଜ । ତୁମ ଇଞ୍ଜିନଟି ସଫଳ ହୋଇଛି ।"

ହାନସନ ଏହା କହିବା ପରେ ପରେ ଟିକିଏ କୁଟିଳ ହାସ୍ୟ କରି କହିଲେ, "ମାତ୍ର ଦେଖିଲ, ତୁମ ଜାହାଜରେ ପାଣି ପଶୁଛି ବୋଲି ମୋର ଅନୁମାନ ହେଉଛି ।"

ଜର୍ଜ ଜାହାଜର କର୍ଣ୍ଣଟିକୁ ଏପରି ରଖିଥିଲା ଯେ ଜାହାଜଟି ଗୋଟିଏ ବଡ଼ ବୃତ୍ତାକାର ପଥରେ ଗତି କରିବ । ବର୍ତ୍ତମାନ ତାହାର ଗତିର ବେଗ ଏବଂ ପଖାବିଶିଷ୍ଟ ଚକ ଓ ଇଞ୍ଜିନର ଓଜନ ହେତୁ ଜାହାଜଟି ଡାହାଣ ପାଖକୁ ତଳି ପଡ଼ୁଥିଲା; ପାଣି ଜାହାଜ ଭିତରକୁ ପଶି ଯାଉଥିଲା । ହଠାତ୍ ଇଞ୍ଜିନଟି ଘଡ଼୍ ଘଡ଼୍ ଶବ୍ଦ କରି ବନ୍ଦ ହୋଇଗଲା ।

ଜର୍ଜ କହିଲା," ଇଞ୍ଜିନରେ ପାଣି ପଶିବାରୁ ନିଆଁ ଲିଭି ଯାଇଥିବ ।"

ଦୁହେଁଯାକ ମଡେଲଟିକୁ ପାଖକୁ ଟାଣି ଆଣି ସେଥିରୁ ପାଣି ବାହାର କରିଦେଲେ । ମାତ୍ର ଇଞ୍ଜିନଟି ଓଦା ହୋଇ ଯାଇଥିବାରୁ ସେମାନେ ପୁଣି ନିଆଁ ଜାଳି ଇଞ୍ଜିନକୁ ଚଳାଇ ପାରିଲେ ନାହିଁ । ଦୁହେଁଯାକ ମସ୍କୁଟା ଜାହାଜକୁ ଫେରି ଆସିଲେ ।

ବାହାରେ ଜର୍ଜ କହିଲି, "ହାନସନ, ମୁଁ ଦେଖୁଛି, ଇଞ୍ଜିନର କେତେକ ଅଂଶର ଉନ୍ନତି କରିବା ଦରକାର । ଯାହାହେଉ ଇଞ୍ଜିନଟା କାମ ଦେଉଛି ।"

ହାନସନ ପଚାରିଲେ, "ତୁମେ ଏ ଇଞ୍ଜିନକୁ ନେଇ କଅଣ କରିବ ବୋଲି ଭାବିଛ ?"

ଜର୍ଜ ଟିକଏ ଚିନ୍ତା କରି କହିଲି, "ମୁଁ ଏତେବେଳଯାଏ କିଛି ସ୍ଥିର କରିନାହିଁ । ବୋଧହୁଏ, ଯୁଦ୍ଧ ବନ୍ଦ ହୋଇଗଲେ ଏହାର ପେଟେଣ୍ଟ ପାଇଁ ଦରଖାସ୍ତ କରିବି । ମୋର ବାପା କୃଷି ଯନ୍ତ୍ରପାତିର ଉନ୍ନତି କରି ସେ ସବୁ ପାଇଁ ଅନେକ ପେଟେଣ୍ଟ ପାଇଛନ୍ତି । ତାଙ୍କୁ କହିଲେ ସେ ମୋତେ ଦରଖାସ୍ତ ଲେଖା ଇତ୍ୟାଦିରେ ସାହାଯ୍ୟ କରିବେ ।

ହାନସନ ବନ୍ଧୁଭାବ ଦେଖାଇ କହିଲେ, "ବେଶ୍, ତୁମର ସୌଭାଗ୍ୟ ବୃଦ୍ଧି ପାଉ । ଏବେ ଆଜିର ଏହି କୃତିତ୍ୱ ଉପଲକ୍ଷରେ ଚାଲ ଟିକଏ ମଦ୍ୟ ପାନ କରିବା ।"

କିଛିଦିନ ପରେ ଜର୍ଜ ଷ୍ଟାରସ୍ ଏଣ୍ଡ ଷ୍ଟ୍ରାଇପ୍ସ ନାମକ ଅନ୍ୟ ଏକ ଜାହାଜକୁ ବଦଳି ହୋଇଗଲି । ଏହା ମଧ୍ୟ ପୋଟୋମାକ ନୌବହରର ଗୋଟିଏ ଷ୍ଟୀମଚାଳିତ ଜାହାଜ । ମସ୍କୁଟା ତ୍ୟାଗ କରି ଯିବାବେଳେ ଜର୍ଜର ମନରେ ଗଭୀର ଦୁଃଖ ହେଲି; କାରଣ ସେ ହାନସନଙ୍କୁ ବିଶେଷ ଭଲ ପାଉଥିଲି । ଏବେ ତାଙ୍କଠାରୁ ତାକୁ ଅନ୍ତର ହେବାକୁ ପଡ଼ିବ । ହାନସନ ବିଦାୟ କାଳରେ ସ୍ମୃତିଚିହ୍ନ ସ୍ୱରୂପ ଜର୍ଜକୁ ସେହି ଜାହାଜ-ମଡେଲଟି ଦେଲେ ।

ହାନସନ କହିଲେ, "ଏଇଟିକୁ ଖୁବ୍ ଯତ୍ନରେ ରଖିବ । ଏହା ମୋର ତୁମ ପ୍ରତି ଗଭୀର ଶ୍ରଦ୍ଧାର ନିଦର୍ଶନ । ମୋର ଦୃଢ଼ ବିଶ୍ୱାସ, ତୁମେ ଜୀବନରେ ଖୁବ୍ ଉନ୍ନତି କରିବ ।"

୧୮୬୫ ମସିହାର ପ୍ରଥମ ଭାଗରେ ଜର୍ଜ ମାଆଙ୍କଠାରୁ ଗୋଟିଏ ଦୁଃସମ୍ବାଦ ପାଇ । ସେଥିରୁ ସେ ଜାଣିଲି ଯେ ବିଦ୍ରୋହି ସୈନ୍ୟମାନଙ୍କ

ସମ୍ପ୍ରତି ଲୁଇସିଆନା କ୍ଷେତ୍ରରେ ଯୁଦ୍ଧ କରୁ କରୁ ଆଲବର୍ଟ ମୃତ୍ୟୁ ମୁଖରେ ପତିତ ହୋଇଅଛି । ମାଆ ଲେଖିଥିଲେ, "ସେ ଦିନ ନ୍ୟୁୟର୍କରେ ଆମ ସମସ୍ତଙ୍କର ପୁନର୍ମିଳନ ବେଳେ ତୋର ଭାଇ ପାଖକୁ ଯୁଦ୍ଧ-କ୍ଷେତ୍ରର ଡ଼ାକରା ପହଞ୍ଚିଲା କିନ୍ତୁ ସେତେବେଳେ କିଏ ଜାଣିଥିଲା ଯେ ଆମେ ତାକୁ ଆଉ ଦେଖିବାକୁ ପାଇବୁ ନାହିଁ । ଆଲବର୍ଟ ପ୍ରକୃତ ବୀର ଭଳି ଯୁଦ୍ଧକ୍ଷେତ୍ରରେ ପ୍ରାଣବଳି ଦେଇଛି । ସେ ଦିନର ସ୍ମୃତି ତାହାକୁ ଫେରାଇ ଆଣି ପାରିବ ନାହିଁ ସତ; ମାତ୍ର ଭବିଷ୍ୟତରେ ବିପଦ ବେଳେ ଆମ୍ଭମାନଙ୍କ ହୃଦୟରେ ଶକ୍ତି ସଞ୍ଚାର କରିପାରିବ ।"

ସେ ଦିନ ରାତିରେ ଜର୍ଜ ବିଛଣାରେ ପଡି କେବଳ କାନ୍ଦିଲା । ଜାହାଜରେ ଥିବା ତାହାର ସଙ୍ଗୀମାନେ ତାର ସେହି ବିକଳ କ୍ରନ୍ଦନ ଧ୍ୱନି ଶୁଣୁଥିଲେ କି ନା ସେ ଖବର ନଥିଲା ।

ସେହି ବର୍ଷ ଅପ୍ରେଲ ମାସ ନଅ ତାରିଖ ଦିନ ଭର୍ଜିନିଆର ଅପୋମାଟକସ୍‌ଠାରେ କଚେରୀ ଘରେ ଜେନେରାଲ ରବର୍ଟ ଲୀ ନିଜର ଅସି ପ୍ରଦାନ କରି ଜେନେରାଲ ଇଅଲସସ ଗ୍ରାଣ୍ଟଙ୍କ ନିକଟରେ ଆତ୍ମ-ସମର୍ପଣ କଲେ । ଏହି ଘଟଣାର ସତର ଦିନ ପରେ ବିଦ୍ରୋହୀ ସୈନ୍ୟବାହିନୀର ଅନ୍ୟତମ ଜେନେରାଲ ଜନଷ୍ଟନ ମଧ୍ୟ ଲୀ-ଙ୍କ ପନ୍ଥା ଅନୁସରଣ କରି ୟୁନିଅନ ସେନାବାହିନୀ ନିକଟରେ ଆତ୍ମସମର୍ପଣ କଲେ । ଗୃହ ଯୁଦ୍ଧର ଅବସାନ ହେଲା ।

ଜର୍ଜ ଏହି ବିଜୟ ସମ୍ବାଦ ଶ୍ରବଣ କରି ନୌବାହିନୀରୁ ବିଦାୟ ନେବାକୁ ଅପେକ୍ଷା କରି ରହିଲା । ଆଲବର୍ଟର ମୃତ୍ୟୁ ସମ୍ବାଦ ପାଇ ସେ ନିଜକୁ ଏକ ପ୍ରକାର ଅପରାଧୀ ମନେ କରୁଥିଲା । ଆଲବର୍ଟ ଲୁଇସିଆନାର ରକ୍ତାକ୍ତ ଯୁଦ୍ଧ କ୍ଷେତ୍ରରେ ବୀରତ୍ୱ ସହକାରେ ଯୁଦ୍ଧ କରି ପ୍ରାଣ ଦେଇଥିଲା; ମାତ୍ର ଜର୍ଜ ନିଜର ଦେଶ ପ୍ରେମ ବିଷୟରେ ଏତେ ଗର୍ବ କରୁଥିଲେ ସୁଦ୍ଧା ଗତ ଦୁଇ ବର୍ଷ ଯାକ ଶତ୍ରୁର ଗୋଳାଠାରୁ ଦୂରରେ ନିରାପଦରେ ରହିଆସିଛି ।

ଅବଶ୍ୟ ସେ ଯେ ଇଚ୍ଛା କରି ଏପରି ନିରାପଦ ରହିଥିଲା, ତାହା ନୁହେଁ । ପୋଟୋମାକ ନୌବହରର ଦକ୍ଷିଣସ୍ଥ ବନ୍ଦରମାନଙ୍କର ପ୍ରବେଶ

ପଥ ରୋଧ କରି ରଖିବା ଦ୍ୱାରା ବିଦ୍ରୋହୀ ସୈନ୍ୟମାନଙ୍କୁ ପରାସ୍ତ କରିବା ଦିଗରେ ଯଥେଷ୍ଟ ସାହାଯ୍ୟ କରିଥିଲି । ଜର୍ଜ ଏହି ନୌବନ୍ଦରରେ କାର୍ଯ୍ୟ କରିଥିଲି । ତଥାପି ତାର ବିସ୍ମୟ ଜାତ ହେଉଥିଲା । ଆଲବର୍ଟ କାହିଁକି ମୃତ୍ୟୁ ମୁଖରେ ପଡ଼ିଲା ? ତାର କାହିଁକି ମୃତ୍ୟୁ ହେଲା ନାହିଁ ?

ଏହିପରି ସେ ପ୍ରଥମ ଥର ପାଇଁ ମୃତ୍ୟୁର ରହସ୍ୟ ସହିତ ପରିଚିତ ହେଲା । ସେତେବେଳକୁ ତାର ବୟସ ଊଣାଇଶ ବର୍ଷ ମାତ୍ର ।

୧୮୬୫ ମସିହାର ଜୁନମାସ ୧୫ ତାରିଖଦିନ ଅପରବେଳା ହଡସନ ନଦୀଧାରରେ ଟ୍ରେନରେ ବସି ଯିବାବେଳେ ଜର୍ଜର ମନରେ ଆଦୌ ସୁଖ ନ ଥିଲା । ଏହି ଚିନ୍ତାହିଁ ତାର ବିଷାଦର କାରଣ ଥିଲା । ସେ ନୌବାହିନୀରୁ ବିଦାୟ ନେଇ ଘରକୁ ଫେରୁଥିଲା । ଘରକୁ ଫେରିବା ତା ପକ୍ଷରେ ଆନନ୍ଦର ବିଷୟ ହେବାର କଥା; କିନ୍ତୁ ସେ ବ୍ରଡ଼ ବିଷଣ୍ଣ ଓ ଚିନ୍ତିତ ଥିଲା । ସେ ଦିନ ସକାଳେ ନାଶଭିଲ୍ ଯୁଦ୍ଧରେ ଗୋଟିଏ ପୁତ୍ର ହରାଇଥିବା ବୃଦ୍ଧଙ୍କ ସହିତ କଥାବାର୍ତ୍ତାରେ ଜର୍ଜର ଦୁଃଖ ଊଣା ହୋଇ ନ ଥିଲା । ଏହା ଫଳରେ ବରଂ ଗତ କେତେ ମାସ ହେଲା ସେ ଯେଉଁ ବିଷାଦ ଅନୁଭବ କରୁଥିଲା, ତାହା ପ୍ରବଳ ଆକାର ଧାରଣ କରିଥିଲା ।

ଜର୍ଜ ଆଗରେ ଥିବା ଇଞ୍ଜିନର ଧପ୍ ଧପ୍ ଶବ୍ଦ ଶୁଣୁଥାଏ ଏବଂ ଗାଡ଼ି ଠିକ ସମୟରେ ପହଞ୍ଚିବା ବିଷୟରେ ଟିକିଏ ସନ୍ଦେହ କରୁଥାଏ । ସାଧାରଣତଃ ଗାଡ଼ି ପହଞ୍ଚିବାରେ କେତେକ ଘଣ୍ଟା ଡେରି ହୋଇଥାଏ । ସେ ଝରକାବାଟେ ବାହାରକୁ ଚାହିଁ ଦେଖିଲା ଯେ ସୂର୍ଯ୍ୟ ପଶ୍ଚିମ ଦିଗରେ ଅସ୍ତ ହେବାକୁ ଯାଉଛନ୍ତି । ପ୍ରାୟ ଘଣ୍ଟାକ ମଧ୍ୟରେ ଅନ୍ଧାର ମାଡ଼ିଆସିବ ।

ତାକୁ ନିଦ ମାଡ଼ି ଆସୁ ଥାଏ । ସେ ଯଥାସମ୍ଭବ ଗୋଡ଼ ଲମ୍ବାଇ, ଆଖି ବୁଜି ଶୋଇବାର ଚେଷ୍ଟା କଲା । ଟିକିଏ ନିଦ ମାଡ଼ି ଆସିଲା ବେଳକୁ ସେ ଗୋଟିଏ ବିକଟ ଶବ୍ଦ ଶୁଣିବାକୁ ପାଇଲା । ସଙ୍ଗେ ସଙ୍ଗେ ଏକ ଧକ୍କାରେ ସେ ନିଜ ଆସନରୁ ତଳକୁ ଖସି ପଡ଼ିଲା ।

---

# ଗ୍ୟାର

## ଉଦ୍ଭାବକ ଜର୍ଜ

ଜର୍ଜ ଦେଖିଲା ଯେ ବେଞ୍ଚର ଦୁଇଧାଡ଼ି ମଝିରେ ଥିବା ଖୋଲା ଜାଗାରେ ସେ ପଡ଼ି ଯାଇଛି । ସେ ଧକ୍‌କା ଖାଇଥିଲା ସତ, ମାତ୍ର ତା ଦେହରେ କିଛି ଆଘାତ ଲାଗିନଥିଲା । ଓଁବା ବାହାରେ ଲୋକେ ହୋହା ଗୋଳମାଳ କରୁଥିଲେ । ସେ ଉଠି ପଡ଼ି ଝରକା ବାଟେ ବାହାରକୁ ଚାହିଁଲା । ଜଣେ ବ୍ରେକମ୍ୟାନ ଗୋଟାଏ ଲମ୍ବ ମୋଟା ଶାବଲ ଧରି ଧାଉଁ ଥିବାର ଦେଖାଗଲା । ତାର ପୋଷାକର ନାନା ସ୍ଥାନରେ ମଇଳା ଲାଗିଥାଏ । ତାକୁ ଡାକି ଜର୍ଜ ପଚାରିଲା, "କଣ ହେଲା ?"

ଲୋକଟି ବଡ଼ ପାଟି କରି କହିଲା, "ଆଗର ଗୋଟାଏ ଡବା ଲାଇନଚ୍ୟୁତ ହୋଇ ପଡ଼ିଛି । ଆପଣ ଚିନ୍ତିତ ହେବାର କିଛି କାରଣ ନାହିଁ ।

ଗାଡ଼ି ଭିତରୁ ଜଣେ ବର୍ଷିୟସୀ ମହିଳା କହିଲେ, "ବାଃ, ଚିନ୍ତା କରିବାର କାରଣ ନାହିଁ ତ ଆଉ କଅଣ ? ହୁଏତ ଆମ ସମସ୍ତଙ୍କର ଜୀବନ ଚାଲି ଯାଇଥାନ୍ତା ।"

ଆଉ ଜଣେ ପ୍ରୌଢ଼ ଭଦ୍ରବ୍ୟକ୍ତି ଏଥିରେ ଯୋଗଦେଇ କହିଲେ : "ଆପଣ ଯାହା କହିଲେ ତାହା ପ୍ରକୃତରେ ଠିକ୍ । ଏ ରେଲଗାଡ଼ି ଗୋଟାଏ ଲଜ୍ଜାର ବିଷୟ । ହୁଏ ତ ଆମକୁ ସାରା ରାତିଟି ଏଇଠାରେ ରହିବାକୁ ପଡ଼ିବ ।"

ଜର୍ଜ ଗାଡ଼ିର ଦୁଆର ଖୋଲି ବାହାରକୁ ଡେଇଁ ପଡ଼ିଲା । ସେ ଦେଖିଲା ଯେ ବ୍ରେକମ୍ୟାନର କଥା ଠିକ୍ । ଇଞ୍ଜିନର ପଛକୁ ଲାଗିଥିବା କୋଇଲାଡବାଟି ଲାଇନରୁ ଖସି ପଡ଼ିଛି ।

ସେ ଠିଆ ହୋଇ ଦେଖିଲା ଯେ ଗାଡ଼ିର ଶ୍ରମିକମାନେ ଗାର୍ଡଙ୍କ ଆଦେଶ ଅନୁସାରେ କୋଇଲା ଡବାର ଚକ ତଳେ ବଡ଼ ବଡ ଶାବଳ ଲଗାଇ ଡବାକୁ ଠେକ ଟିକିଏ ଟିକିଏ କରି ଲାଇନ ଉପରକୁ ଉଠାଇବାକୁ ଚେଷ୍ଟା କରୁଅଛନ୍ତି । କାମ ଅତି ଧୀରେ ଧୀରେ ଚାଲୁଥାଏ ଓ ଶ୍ରମିକମାନଙ୍କୁ ହାଡ଼ଭଙ୍ଗା ପରିଶ୍ରମ କରିବାକୁ ହେଉଥାଏ । ଶେଷରେ ଜର୍ଜ କହିଲା, "ମୁଁ ଏ କାମରେ ସାହାଯ୍ୟ କରିପାରେ କି ?

ବ୍ରେକମ୍ୟାନ ଗୋଟିଏ ଲମ୍ବ ଶାବଳ ଧରି ଚକକୁ ଉଠାଇବାର ଚେଷ୍ଟା କରୁଥିଲା । ସେ କହିଲା, "ନିଶ୍ଚୟ, ତୁମେ ସାହାଯ୍ୟ କରିପାର । ତୁମେ ବେଶ ବଳିଷ୍ଠ ପରି ବୋଧ ହେଉଛି । ଏଇ ଶାବଳଟା ନିଅ । ମୁଁ ଠେକିବାବେଳେ ତୁମେ ମଧ୍ୟ ଠେକିବ ।"

ପ୍ରାୟ ଦୁଇଘଣ୍ଟା ପର୍ଯ୍ୟନ୍ତ ଜର୍ଜ ରେଳଗାଡ଼ିର କୋଇଲା ଡବାକୁ ଆସ୍ତେ ଠେକ ଠେକ ଲାଇନ ପାଖକୁ ନେବାରେ ଶ୍ରମିକମାନଙ୍କୁ ସାହାଯ୍ୟ କଲା । ସେ ଦିନ ରାତିରେ ଘରି ଗରମ ପଡ଼ିଥାଏ । ଦମ୍ ନେବା ପାଇଁ ସେମାନଙ୍କୁ ମଝିରେ ମଝିରେ କାମ ବନ୍ଦ କରିବାକୁ ପଡ଼ୁଥାଏ । ଶେଷରେ ଡବାର ଚକ ଲାଇନ ପାଖକୁ ଆସିଗଲା । ଖାଲି ଚକକୁ ଲାଇନ ଉପରେ ରଖିବା କାମ ବାକି ଥାଏ । ସେତେବେଳକୁ ଜର୍ଜ ନିତାନ୍ତ କ୍ଳାନ୍ତ ହୋଇ ପଡ଼ିଥାଏ ଓ ଝାଳରେ ତାର ପୋଷାକ ଏକବାରେ ଓଦା ହୋଇ ଯାଇଥାଏ ।

ଗାର୍ଡ଼ କହିଲେ, "ଖୁବ୍ କାମ କଲଣି । ଏଇ ଶେଷଥରକ ଡବାକୁ ଲାଇନ ଉପରକୁ ଉଠାଇବା ସବୁଠାରୁ କଠିନ କାମ । ଆଗ ଟିକିଏ ବିଶ୍ରାମ ନିଅ ।"

ଜର୍ଜ ଓ ବ୍ରେକମ୍ୟାନ ନିଜ ନିଜ ଶାବଳ ରଖି ଦେଇ ମୁହଁରୁ ଝାଳ ପୋଛି ପକାଇଲେ । ଜର୍ଜ ପଚାରିଲା, "ଏଇପରି କଅଣ ଗାଡ଼ି ଅନେକ ଥର ଲାଇନଚ୍ୟୁତ ହୋଇଥାଏ ।"

ବ୍ରେକମ୍ୟାନ ଉତ୍ତର କଲା, "ଖୁବ୍ ହୁଏ, ଅନେକ ବାର ହୁଏ । ଲାଇନର ଏଇ ଅଂଶଟାକୁ ଦେଖ । ଏହାରି ସକାଶେ ଆଜିର ଏ ଦୁର୍ଘଟନା ।

ଲାଇନର ଏହି ଅଂଶଟି ଏଠାରେ ହୁଗୁଳ ଯାଇଥିଲା ।" ଏହା କହି ସେ ଇଞ୍ଜିନର ପଛକୁ ଥିବା ଲାଇନର ଗୋଟିଏ ଅଂଶକୁ ଦେଖାଇ ଦେଲା । ସେଠାରେ ଦୁଇ ଜଣ ଲୋକ ହାତୁଡ଼ି ଧରି ସ୍ଲିପର୍ ଉପରେ କଣ୍ଟା ପିଟୁଥିଲେ ।

ଜର୍ଜର ରେଳପଥ ବିଷୟରେ କିଛି ଅଭିଜ୍ଞତା ନ ଥିଲେହେଁ ସେ ସ୍ପଷ୍ଟ ଜାଣି ପାରିଲା ଯେ ରେଳପଥର ସେହି ଅଂଶଟି ହୁଗୁଳା ହୋଇ ପଥର ଅନ୍ୟ ଅଂଶଠାରୁ ପୃଥକ୍ ହୋଇ ଯାଇଥିବାରୁ ଏପରି ଦୁର୍ଘଟନା ଘଟିଲା । ସେ ବ୍ରେକମ୍ୟାନର କଥାରେ ଏକମତ ହେଲା ।

ସେ ବିସ୍ମିତ ହୋଇ ପଚାରିଲା, "ଇଞ୍ଜିନ ଡବା କୋଇଲା ଡବାର ଆଗରେ ଥିଲା । କୋଇଲା ଡବା ଲାଇନଚ୍ୟୁତ ହେଲା, ଅଥଚ ଇଞ୍ଜିନଡବା ଲାଇନଚ୍ୟୁତ ନ ହେଲା କିପରି ?

ବ୍ରେକମ୍ୟାନ ଧୀର ଭାବରେ ବୁଝାଇ ଦେଲା, "ଇଞ୍ଜିନ ଡବାର ଓଜନ ଖୁବ୍ ବେଶୀ ବୋଲି ଲାଇନଚ୍ୟୁତ ହେଲାନାହିଁ । ତଥାପି ବେଳେ ବେଳେ ଖୁବ୍ ଓଜନଗାଡ଼ି ମଧ୍ୟ ଦ୍ରୁତ ବେଗରେ ଯାଉଥିଲେ, ଲାଇନଚ୍ୟୁତ ହୋଇଥାଏ "

ଜର୍ଜ ଚିନ୍ତା କରିବାକୁ ଲାଗିଲା । ଯଦି ଗାଡ଼ି ଲାଇନଚ୍ୟୁତ ହେବା ଏତେ ବାରମ୍ବାର ଘଟୁଛି ତେବେ କିପରି ଗାଡ଼ିକୁ ପୁଣି ଲାଇନକୁ ନିଆ ଯାଇପାରିବ, ସେଥିପାଇଁ କେହି ଗୋଟାଏ ସହଜ ଉପାୟ ବାହାର କରୁନାହାନ୍ତି କାହିଁକି ?

ଏହି ସମୟରେ ଗାର୍ଡ଼ ଉଚ୍ଚ ସ୍ୱରରେ କହିଲେ, "ବେଶ୍ । ରେଲରାସ୍ତା ମରାମତି ହୋଇଗଲାଣି । ଏବେ ଡବାକୁ ଲାଇନ ଉପରକୁ ଉଠାଇବାକୁ ହେବ ।"

ଜର୍ଜର ଚିନ୍ତାଧାରାରେ ବ୍ୟାଘାତ ପହଞ୍ଚିଲା ।

ଟ୍ରେନର ଲୋକେ କୋଇଲାଡବାର ଚକତଳେ ପୁଣି ଶାବଳ ପୂରାଇ ଏକାବେଳେକେ ସମସ୍ତେ ଠେଲିବାକୁ ଲାଗିଲେ । ଡବାଟି ଥରେ ଥରେ

ଉଠୁଥାଏ । ଏଣେ ଗାର୍ଡ଼ ସେମାନଙ୍କୁ ଉତ୍ସାହ ଦେବାକୁ କହୁଥାନ୍ତି, "ସାବାସ୍, ଏଇ ଉଠିଲା । ହଁ, ଆଉ ଥରେ ସମସ୍ତେ ଚେଷ୍ଟା କର । ଉଠିଯିବ ।"

ସେମାନେ ଏକ ସମୟରେ ଆଉ ଥରେ ଡବାକୁ ଉଠାଇବାକୁ ଚେଷ୍ଟା କଲେ । ଡବାଟିର ଚକ ଚାରୁ ଉଠି ମୁହୂର୍ତ୍ତକ ପାଇଁ ଶୂନ୍ୟରେ ରହି ଲାଇନ ଉପରେ ପଡ଼ିଗଲା । ଲୋକମାନେ ଆନନ୍ଦରେ ଚିତ୍କାର କରି ଉଠିଲେ ।

ରେଲଗାଡ଼ିର ଲୋକେ କୋଇଲା ଡବାକୁ ଅନ୍ୟାନ୍ୟ ଡବା ସହିତ ପୁଣି ସଂଯୁକ୍ତ କରିଦେଲେ । ଏଣେ ଜର୍ଜର ମସ୍ତିଷ୍କରେ ଚିନ୍ତାର ବିରାମ ନ ଥାଏ । ସେ ଭାବୁଥାଏ—ଲାଇନଚ୍ୟୁତ ଗାଡ଼ିକୁ ପୁଣି ଲାଇନ ଉପରକୁ ଉଠାଇବା ଉଦ୍ଦେଶ୍ୟରେ ଯାନ୍ତ୍ରିକ ଶକ୍ତି ବ୍ୟବହାର କରାଯାଇ ପାରିବ ନାହିଁ କାହିଁକି ?

ସାତବର୍ଷ ତଳର ଗୋଟିଏ ଗ୍ରୀଷ୍ମ ଅପରାହ୍ନର କଥା ତାର ସ୍ମୃତି-ପଥରେ ଜାଗି ଉଠିଲା । ସେ ଦିନ ସେ ତାର ବାପାଙ୍କ କାରଖାନାରେ ଲୁହାପାଇପକୁ ଗଡ଼ଗଡ଼ କରି କାଟିବା ଉଦ୍ଦେଶ୍ୟରେ ଷ୍ଟୀମଶକ୍ତିର ବ୍ୟବହାର କରିଥିଲା । ତାର ମନେ ହେଲା ଯେ ଉପସ୍ଥିତ ସମସ୍ୟାଟି ଠିକ୍ ସେହି ରକମର । ସେହି ପ୍ରକାଣ୍ଡ ଇଞ୍ଜିନ ଆଡ଼କୁ ସେ ଚାହିଁ ରହିଲା । ଚନ୍ଦ୍ରକିରଣରେ ଇଞ୍ଜିନକୁ ଚାହିଁଲେ ମନେ ହେଉଥିଲା, ଯେପରି ଏକ ପ୍ରକାଣ୍ଡ ଦୈତ୍ୟ ମୁହଁରୁ ମେଘଖଣ୍ଡ ଭଳି ଧୂଆଁ ବାହାରୁଛି ।

ଷ୍ଟୀମଶକ୍ତି ଦରକାର ! ତ ହାତ ଦୂରର କଥା ନୁହେଁ । ଗାଡ଼ିର ଇଞ୍ଜିନ ଭିତରେ ତା ରହିଛି । ଜର୍ଜ ଏହା ଭାବିଲାକ୍ଷଣି ଆନନ୍ଦରେ ଅଧୀର ହୋଇ ପଡ଼ିଲା । କେବଳ ଏହି ଶକ୍ତିଦ୍ୱାରା ଲାଇନଚ୍ୟୁତ ଡବାକୁ ଟାଣିନେଇ ପୁଣି ଲାଇନ ଉପରେ ରଖି ପାରିଲେ ହେଲା ।

ତାର ଚିନ୍ତାସ୍ରୋତରେ ବିରାମ ନ ଥିଲା । ସେ ଯେତିକି ବେଶୀ ଚିନ୍ତା କଲା, ତାର ଚିନ୍ତାଧାରା ସେତିକି ନିର୍ଦ୍ଦିଷ୍ଟ ଓ ଯୁକ୍ତିଯୁକ୍ତ ପନ୍ଥାରେ ଗତି କଲା । ସେ ଭାବିଲା—ମନେକର, ଲାଇନଚ୍ୟୁତ ଡବାର ଆଗ ଚକ

ପାଖରେ ଦୁଇଟି ଲାଇନ ପକାଗଲା ଓ ଏହି ଲାଇନଦ୍ୱୟର ଅପର ପ୍ରାନ୍ତ ଦୁଇଟିକୁ ଭୂମିସଂଲଗ୍ନ ସ୍ଥାୟୀ ରେଲଲାଇନ ସହିତ ସଂଯୋଗ କରାଗଲା। ତାହାହେଲେ ଇଞ୍ଜିନକୁ ଘୁଞ୍ଚାଇ ଘୁଞ୍ଚାଇ ଲାଇନଚ୍ୟୁତ ଡବାପାଖକୁ ଅଣାଯାଇ ପାରିବ । ତେଣିକି ଇଞ୍ଜିନ ଏହାକୁ ଟାଣି ସ୍ଥାୟୀ ରେଲଲାଇନ ଉପରକୁ ନେଇ ପାରିବ ନାହିଁ କାହିଁକି ? ରେଲଗାଡ଼ିକୁ ଗୋଟିଏ ରେଲ-ଲାଇନରୁ ଅନ୍ୟ ଏକ ରେଲଲାଇନକୁ ଯେପରି ନିଆଯାଏ, ଏହା ଠିକ୍ ସେହିପରି ସହଜରେ ହୋଇପାରିବ ।

ଏହି ଉପାୟରେ କାମ ଠିକ୍ ହୋଇ ପାରିବ ବୋଲି ଜର୍ଜର ଧାରଣା ହେଲା । ସେ ଏହି ଉପାୟଟି ବ୍ରେକମାନକୁ ବୁଝାଇ ଦେଇ କହିଲା, "ଏହି ଉପାୟରେ ଦୁଇ ଘଣ୍ଟା ପରିବର୍ତ୍ତେ ପନ୍ଦର ମିନିଟରେ ଲାଇନଚ୍ୟୁତ ଡବାକୁ ପୁଣି ଲାଇନ ଉପରକୁ ନେଇ ହେବ ।"

ବ୍ରେକମାନ ଜଣଙ୍କ ସନ୍ଦେହପୂର୍ଣ୍ଣଭାବରେ ଜର୍ଜକୁ ଚାହିଁ ରହି ନିଜର ଦାଢ଼ି ଆଉଁଷିବାରେ ଲାଗିଲା । କିଛି କ୍ଷଣ ପରେ ସେ କହିଲା, "ମୁଁ ଜଣେ ସାମାନ୍ୟ ବ୍ରେକମାନ । କଳକବଜା ବିଷୟରେ ମୁଁ କଅଣ ଜାଣେ ? ତୁମେ ଯେଉଁ ଉପାୟ କହୁଛ, ତାହା ଖୁବ୍ ସହଜ ଜଣାଯାଉଛି । ତୁମ ପୋଷାକରୁ ଜାଣୁଛି ଯେ ତୁମେ ନୌବିଭାଗର ଜଣେ କର୍ମଚାରୀ । ତୁମକୁ ଅସମ୍ମାନ କରିବା ମୋର ଉଦ୍ଦେଶ୍ୟ ନୁହେଁ । କିନ୍ତୁ ତୁମେ ବୟସରେ ବାଳକ ମାତ୍ର । ରେଲଗାଡ଼ି ଚଳାଇବା କାମରେ ଯେଉଁମାନଙ୍କର ବାଳ ପାଚିଲାଣି ସେମାନଙ୍କଠାରୁ ତୁମେ କଅଣ ବେଶି ଜାଣ ?"

ଏପରି କଥା ଶୁଣି ଜର୍ଜ ନିରାଶ ହେବାର ପାତ୍ର ନୁହେଁ । ସେ ଯେତେବେଳ ଯାଏ ରେଲ ଡବାରେ ବସି ରହିଥିଲା ସେତେବେଳ ପର୍ଯ୍ୟନ୍ତ ଅଦ୍ଭୁତ ରକମର ରେଲଲାଇନ ନକ୍ସା ଆଙ୍କିବାରେ ଲାଗିଥାଏ । ତା ପାଖରେ କାଗଜ ନ ଥିଲା ବୋଲି ସେ ଗୋଟିଏ ଚିଠିର ପଛପାଖଟି ଏହି ନକସା ଅଙ୍କନ କରିବା ଉଦ୍ଦେଶ୍ୟରେ ବ୍ୟବହାର କରୁଥିଲା ।

ଜର୍ଜ ଘରେ ପହଞ୍ଚିଲା । ତାର ବାପା ମା ଓ ଭାଇଭଉଣୀମାନେ ତାକୁ ସ୍ୱାଗତ ଜଣାଇଲେ । ସେ ପ୍ରାୟ ସପ୍ତାହେ ପର୍ଯ୍ୟନ୍ତ ପୂରା ବିଶ୍ରାମ ନେଲା । କେବଳ ଖାଇବା ଓ ଶୋଇବାରେ ତାର ସମୟ କଟୁଥାଏ ।

ମାଆ ପୁଅ ପାଇଁ ଭଲଭଲ ଖାଇବା ଜିନିଷ ତିଆରି କରି ଦେଉଥିଲେ । ତାଙ୍କର ବିଶ୍ୱାସ ହୋଇଥିଲା ଯେ ନୌବିଭାଗରେ ଥିଲାବେଳେ ପୁଅ ଖାଇବାକୁ ନ ପାଇ ଏକବାରେ ଶୁଖି ଯାଇଛି । ଯଥେଷ୍ଟ ଖାଇବାକୁ ଦେଇ ତା ଦେହରେ ମାଂସ ପୂରଣ କରିବାକୁ ହେବ ।

ଜୁଲାଇ ମାସର ଶେଷ ଆଡ଼କୁ ଜର୍ଜ ଜ. ଓ‌ୟେଷ୍ଟିଙ୍ଗହାଉସ କମ୍ପାନିର କାମକୁ ଫେରିଗଲା । ଲାଇନଚ୍ୟୁତ ଗାଡ଼ିକୁ ଉଠାଇବା ପାଇଁ ଉପାୟ ବାହାର କରିବା ଚିନ୍ତା ତା ମୁଣ୍ଡରେ ସବୁବେଳେ ଖେଳୁଥାଏ । ପ୍ରତି ଦିନର କାମ ଶେଷ ହେଲା କ୍ଷଣି ସେ ଘରକୁ ଚାଲି ଯାଉଥିଲା । ଘରେ ଖାଇସାରି ସେ ପୁଣି ରାତିରେ କାରଖାନାକୁ ଆସି ତାର ନୂଆ ଯନ୍ତ୍ରର ଗୋଟିଏ ମଡେଲ ଠିକ ସ୍କେଲ ଅନୁସାରେ ତିଆରି କରିବାରେ ଲାଗି ଯାଉଥିଲା । ଏଥି ମଧ୍ୟରେ ବାପାଙ୍କ ସାହାଯ୍ୟରେ ସେ ରୋଟାରି ଇଞ୍ଜିନର ପେଟେଣ୍ଟ ସକାଶେ ଦରଖାସ୍ତ ଦେବାପାଇଁ କାଗଜପତ୍ର ଠିକ୍ କରି ନେଇଗଲା ।

ଅଗଷ୍ଟ ମାସର ଶେଷଆଡ଼କୁ ଦିନେ ଉପରବେଳା ମିଷ୍ଟର ଓ‌ୟେଷ୍ଟିଙ୍ଗହାଉସ ସାଥିରେ ବୁଲି ଯିବାପାଇଁ ଜର୍ଜକୁ ଡାକଲେ । ଯାଉ ଯାଉ ମିଷ୍ଟର ଓ‌ୟେଷ୍ଟିଙ୍ଗହାଉସ କହିଲେ, "ଜର୍ଜ," ତୁ ଏବେ ଘରକୁ ନିରାପଦରେ ଫେରିଆସିଛୁ । ସାଂସାରିକ ଜୀବନ ବିଷୟରେ ତୋର କିଛି ଅଭିଜ୍ଞତା ଜନ୍ମିଛି । ଏବେ ତୋର ଭବିଷ୍ୟତ ବିଷୟରେ ତୁ କଅଣ ଭାବୁଛୁ, ମୋତେ କହ ।"

ଜର୍ଜ ଟିକିଏ ଚିନ୍ତା କରି କହିଲା, "ବାପା, ମୋର ଇଚ୍ଛା, ମୁଁ ଜଣେ ଉଦ୍ଭାବକ ହେବି ।"

"କଅଣ ହେବୁ ?"

"ଜଣେ ଉଦ୍ଭାବକ । ମୁଁ ବିଭିନ୍ନ ଯନ୍ତ୍ର, କଳକବଜା ଉଦ୍ଭାବନ କରିବାକୁ ଇଚ୍ଛା କରେଁ । ଏ ଦିଗରେ ମୋର ସ୍ୱାଭାବିକ ଆକର୍ଷଣ ଅଛି । ପୃଥିବୀରେ ଏହାହିଁ କରିବାକୁ ମୋର ପ୍ରବଳ ଇଚ୍ଛା । ଉଦାହରଣ ସ୍ୱରୂପ, ମୁଁ ଯେଉଁ ଗାଡ଼ି ଉଠାଇବା ଯନ୍ତ୍ର କଥା କହୁଥିଲି, ସେକଥା ଭାବନ୍ତୁ । ରେଲକମ୍ପାନୀମାନଙ୍କୁ ମୁଁ ତାହା ବିକ୍ରି କରିପାରିବି ।"

ମିଷ୍ଟର ଓ୍ୱେଷ୍ଟିଙ୍ଗ ହାଉସ କିଛି ସମୟ ଚିନ୍ତା କଲେ । ତା'ପରେ ପୁଅ ଆଡ଼କୁ ବୁଲି ପଡ଼ି ଅନେକ ବେଳଯାଏ ତାର ମୁହଁକୁ ଚାହିଁ ରହି କହିଲେ, "ଜର୍ଜ, ମୁଁ ତୋ ଆଗରେ ସଫା ସଫା ମୋ ମନ କଥା ଖୋଲି କହୁଛି । ତୁ ସବୁବେଳେ ତୋ ଇଚ୍ଛାନୁସାରେ ଚାଲି ଆସିଛୁ । ଏବେ ତୁ ଯୁଦ୍ଧକୁ ଯାଇ କେତେ କଥା ଦେଖିଛୁ । ତେଣୁ ତୁ କିପରି ଜୀବନଯାତ୍ରା ନିର୍ବାହ କରିବୁ, ସେ ବିଷୟରେ ମୋର କିଛି କହିବା ଅନାବଶ୍ୟକ ହୋଇପାରେ । କିନ୍ତୁ ମୋର ମନେ ହୁଏ, ତୁ ବାସ୍ତବତା ଦୃଷ୍ଟିରୁ ବିଚାର କରୁନାହୁଁ । ତୁ ଉଦ୍ଭାବନ କରିବାକୁ ଚାହୁଁ । ବେଶ୍, ଭଲ କଥା । ମାତ୍ର ଜଣେ ଉଦ୍ଭାବକ ଭାବରେ ତୁ ଜୀବିକା ଅର୍ଜନ କରିପାରିବୁ ନାହିଁ; କାରଣ, ଯେତେହେଲେ ଏପରି ଜୀବିକାରେ ଘୋର ଆଶଙ୍କା ଅଛି । କୌଣସି ଉଦ୍ଭାବନ ସଫଳ ହୋଇପାରେ; କିନ୍ତୁ ଏହା ବିଫଳ ହେବାର ସମ୍ଭାବନା ରହିଛି । ଏହା ଏକ ପ୍ରକାର ଜୁଆଖେଳ । ଜୁଆଖେଳରେ ଜିତିବାର ଆଶା ଯେପରି ଥାଏ, ହାରିବାର ଆଶଙ୍କା ମଧ୍ୟ ସେହିପରି ଥାଏ । ଏଇ ଯେଉଁ କଅଣ ଗୋଟାଏ ଗାଡ଼ି ଉଠାଇବା ଯନ୍ତ୍ର କଥା କହୁଥିଲୁ, ତାରି କଥା ବିଚାର କର । ରେଲ ଚଳାଚଳ ବିଷୟରେ ତୋର କି ଜ୍ଞାନ ଅଛି ? ଏପରି ଲୋକ ଅଛନ୍ତି ଯେଉଁମାନେ କି ଏଇ ରେଲ ଚଳାଚଳ ବିଷୟ ଚିନ୍ତାକରି କରି ସେମାନଙ୍କର ଜୀବନ କଟାଇ ଦେଲେଣି । ତଥାପି ତୁ ମନେ କରିଛୁ ଯେ ସେମାନେ ଯାହା କରି ପାରି ନାହାନ୍ତି, ତୁ ତାହା କରି ପାରିବୁ । ମୁଁ ଭାବୁଛି—ଏହା ତୋ ପକ୍ଷରେ ନିତାନ୍ତ ·········ନିତାନ୍ତ ମୂର୍ଖତା ।

ଜର୍ଜ ଅସ୍ଥିର ଭାବରେ ପାଦର ପୋତାରେ ଗୋଟାଏ ବାଲିଗରଡ଼ାକୁ ଫିଙ୍ଗି ଦେଲା । ସେ ଇରି କେନାଲର ଉଜ୍ଜ୍ୱଳ ଜଳରାଶି ଆଡ଼କୁ ଚାହିଁରହିଲା । କ୍ଷୀଣ କୁଜ୍‌ଝଟିକା ନଗରଟିକୁ ଆବୃତ କରି ରଖିଥିଲା ଓ ଦୂରରେ କେନାଲରେ ଥିବା ଗୋଟିଏ ବାଷ୍ପୀୟ ପୋତ କରୁଣ ଶିଙ୍ଗାଧ୍ୱନି କରୁଥିଲା । ବାପା ଯାହା କହିଲେ, ଜର୍ଜ ସେହି ବିଷୟ ଚିନ୍ତା କରୁଥିଲା; ବିଶେଷତଃ ଲାଇନଚ୍ୟୁତ ଡବା ଉଠାଇବା ଯନ୍ତ୍ର ବିଷୟରେ ତାର ବାପାଙ୍କର ମତ ବିଷୟ ସେ ଭାବୁଥିଲା ।

ସେ ବିସ୍ମିତ ହେଲା ଯେ ସେଦିନ ବ୍ରେକମାନ ଜଣକ ଯାହା କହିଥିଲା, ତାର ବାପାଙ୍କ ମତ ତାହା ସହିତ ମିଳି ଯାଉଥିଲା । ଦୁହେଁ ଠିକ୍ ଏକାକଥା କହିଛନ୍ତି । ସେମାନଙ୍କର କହିବାର ତାତ୍ପର୍ଯ୍ୟ ହେଉଛି; ଜର୍ଜ ଜଣେ ଯୁବକ । ରେଲ ଚଳାଚଳ ବିଷୟରେ ତାର କିଛି ଜ୍ଞାନ ନାହିଁ । ଏ ପ୍ରକାର ବିଷୟ ଚିନ୍ତା କରିବାର କଥା ହେଉଛି ରେଲ ଚଳାଚଳରେ ନିଯୁକ୍ତ ଥିବା ବୟୋଜ୍ୟେଷ୍ଠ ବ୍ୟକ୍ତିମାନଙ୍କର; ଜର୍ଜ ଭଳି ଯୁବକମାନଙ୍କର ନୁହେଁ ।

ଜର୍ଜର ମନେ ପଡ଼ିଗଲା ଯେ ତା ବାପାଙ୍କର ଓ ସେହି ବ୍ରେକମାନର ବୟସ ପ୍ରାୟ ସମାନ । ଦୁହିଁଙ୍କର ବୟସ ପଚିଶ ବର୍ଷରୁ କିଛି ବେଶୀ ହେବ । ସେମାନେ ଜର୍ଜର ଉଦ୍ଭାବନ ବିଷୟରେ ଯେଉଁ ମତ ଦେଲେ, ତାହା ମୂଳତଃ ସେମାନଙ୍କର ପ୍ରୌଢ଼ ଜୀବନଦର୍ଶନର ପରିଚାୟକ । ଏ ବୟସର ଲୋକ ଦୀର୍ଘ ଜୀବନ କଟାଇଅଛନ୍ତି, ଜୀବନରେ ବହୁ ବିଫଳତା ଓ ନୈରାଶ୍ୟର ସମ୍ମୁଖୀନ ହୋଇଅଛନ୍ତି । କେବଳ ଯେ ନିଜେ ଏସବୁର ସମ୍ମୁଖୀନ ହୋଇଅଛନ୍ତି ତାହା ନୁହେଁ; ନିଜର ସମବୟସ୍କ-ମାନଙ୍କ ଜୀବନରେ ତାହାହିଁ ଲକ୍ଷ୍ୟ କରିଅଛନ୍ତି । ତେଣୁ ଅତି ସବଧାନରେ ଜୀବନପଥରେ ଗତି କରିବା ପ୍ରୌଢ଼ ଲୋକଙ୍କ ପକ୍ଷରେ ସ୍ୱାଭାବିକ ।

କିନ୍ତୁ ଜର୍ଜର ବୟସ ଆଦୌ ଊଣେଇଶ ବର୍ଷ, ବାପାଙ୍କ ଭଳି ତାର ବୟସ ପଚିଶ ପାର ହୋଇ ନାହିଁ । ସେମାନଙ୍କର ଯୌବନକାଳଠାରୁ ଏଥି ମଧ୍ୟରେ ପୃଥିବୀରେ ଯେ କି ବିରାଟ ପରିବର୍ତ୍ତନ ହୋଇଗଲାଣି ତାହା ସେ କିପରି ସେମାନଙ୍କୁ ବୁଝାଇ ପାରିବ ? ସେମାନେ ଏକ ଭିନ୍ନ ଯୁଗର ଲୋକ । ଜର୍ଜ ଗୋଟାଏ ଗୃହ ଯୁଦ୍ଧ ମଧ୍ୟରେ ଗତି କରି ଆସିଛି । ଯୁଦ୍ଧ ଫଳରେ ଯେ କେତେ ପରିବର୍ତ୍ତନ ଘଟିଅଛି, ତାହା ସେ ଜାଣେ । ଏହି ଭୀଷଣ ବିପ୍ଳବ ଯୋଗୁଁ ଉନ୍ନତି ନିମନ୍ତେ ଯୁବସମ୍ପ୍ରଦାୟର ଯେଉଁ ଆନ୍ତରିକ ଆବେଗ ଓ ଉତ୍ସାହ ଜନ୍ମିଛି, ତାହାର ସୂଚନା ସେ ପାଇଛି ।

ମନୁଷ୍ୟ ପ୍ରତ୍ୟେକ କ୍ଷେତ୍ରରେ ଅଗ୍ରଗତି କରି ଚାଲିଛି । ଚିକିତ୍ସା କ୍ଷେତ୍ରରେ ଯନ୍ତ୍ରଣାହାରକ ଔଷଧର ଆବିଷ୍କାର ଫଳରେ ଡାକ୍ତରମାନେ

ଅସ୍ତ୍ରୋପଚାରର ପୂର୍ବରୁ ରୋଗୀକୁ ଅଚେତନ କରି ତାହାର ଯନ୍ତ୍ରଣା ଦୂର କରି ପାରୁଅଛନ୍ତି ଓ ମାନବର ଆୟୁ ବୃଦ୍ଧି କରି ପାରୁଅଛନ୍ତି । କେତେ ବୈଜ୍ଞାନିକ ସ୍ଥଳଭାଗରେ ତାର ସାହାଯ୍ୟରେ ମହାଦେଶର ଏକ ପ୍ରାନ୍ତରୁ ଅପର ପ୍ରାନ୍ତକୁ ସମ୍ବାଦ ପ୍ରେରଣ କରିପାରୁଅଛନ୍ତି । ଏବେ ଶୁଣାଯାଇଛି ଯେ ଆମେରିକାର ଏକ ଉପକୂଳରୁ ଅପର ଉପକୂଳ ପର୍ଯ୍ୟନ୍ତ ରେଲ ପଥ ପ୍ରସ୍ତୁତ କରାଯାଇ ପଶ୍ଚିମ ଭାଗର ଉନ୍ନତି ବିଧାନ କରାଯିବ । ଠିକ୍ ବର୍ତ୍ତମାନ ଗୋଟିଏ ବିରାଟ ଜହାଜ ଉତ୍ତର ଆଟଲାଣ୍ଟିକ ମହାସାଗରରେ ସମୁଦ୍ର ଗର୍ଭରେ ତାର ପକାଇବାରେ ଲାଗିଛି । ଏହାର ଉଦ୍ଦେଶ୍ୟ ହେଉଛି, ଉତ୍ତର ଆମେରିକା ସହିତ ଇଉରୋପର ସଂଯୋଗ ସ୍ଥାପନ କରିବା । ତାହାହେଲେ ପୃଥିବୀର ସମସ୍ତ ସଭ୍ୟଦେଶ ଏକତା ସୂତ୍ରରେ ଆବଦ୍ଧ ହୋଇପାରିବେ ।

ଜର୍ଜ କିପରି ତାର ବାପାଙ୍କୁ ବୁଝାଇ ପାରିବ ଯେ ସେ ଏହି ନୂତନ ଜଗତର ଏକ ଅଙ୍ଗ ହେବାକୁ ଚାହେଁ; ଯେଉଁମାନେ ମାନବଜାତି ପକ୍ଷରେ ଏକ ଉନ୍ନତତର ଜୀବନର ସ୍ୱପ୍ନକୁ ସଫଳ କରିବା ନିମନ୍ତେ ଜୀବନ ସମର୍ପଣ କରି ଅଛନ୍ତି, ସେମାନଙ୍କ ସହିତ ଯୋଗ ଦେଇ ସେ ଦେଶର ସେବା କରିବାକୁ ଚାହେଁ ? ସେ ଜାଣିଥିଲା ଯେ ଏସବୁ ପିତାଙ୍କୁ ବୁଝାଇବା ଅସମ୍ଭବ । ସେ ଓ ତାର ପିତା ଦୁଇଟି ଭିନ୍ନ ଯୁଗର ମନୁଷ୍ୟ । ବୟସ ଓ ଜୀବନଦର୍ଶନରେ ଦୁହେଁ ପରସ୍ପରଠାରୁ ପୃଥକ୍ । ଏ ଦୁହିଁଙ୍କର ମିଳନ ଅସମ୍ଭବ ।

ଜର୍ଜ କହିଲା, "ବାପା, ତୁମେ ଯାହା କହୁଛ, ମୁଁ ବୁଝି ପାରୁଛି । ହୁଏ ତ ତୁମ କଥା ଠିକ୍ । କିନ୍ତୁ ମୋତେ ପ୍ରଥମେ ମୋ ପନ୍ଥାରେ କାର୍ଯ୍ୟ କରିବାକୁ ଦିଅ । ଯଦି ମୁଁ ବିଫଳ ହୁଏ, ତେବେ ମୋର ଏତିକି ସାନ୍ତ୍ୱନା ହେବ ଯେ ମୁଁ ମୋର ଯଥାଶକ୍ତି ଚେଷ୍ଟା କରିଛି । ସେ ବିଫଳତା ହେବ ମୋର, ଅନ୍ୟର ନୁହେଁ ।"

ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ଏହା ଶୁଣି କହିଲେ, "ଜର୍ଜ, ପିଲାଟି ଦିନୁ ତୁ ଏକଜିଦିଆ । ମୋର ମନେ ହୁଏ, ତୁ ଏ ଗୁଣଟି ମୋଠାରୁ ପାଇଛୁ । ତୋର ମନକୁ ପରିବର୍ତ୍ତନ କରିବାପାଇଁ ମୁଁ ଚେଷ୍ଟା କରିବି

ନାହିଁ । କିନ୍ତୁ ମୋର ଗୋଟିଏ ପ୍ରସ୍ତାବ ଅଛି । ତୁ ବିଚାର କରି ଦେଖ । ଶେନେକଟାଡ଼ିରେ ଯେଉଁ ୟୁନିୟନ କଲେଜ ଅଛି, ତୁ ସେଥିରେ ପଢ଼ିବାକୁ ରାଜିହେଲେ, ମୁଁ ତୋର ସମସ୍ତ ପଢ଼ା ଖରଚ ଦେବାକୁ ପ୍ରସ୍ତୁତ ଅଛି । ଏ କଲେଜରେ ଭଲ ମେକାନିକାଲ କୋର୍ସର ବ୍ୟବସ୍ଥା ଅଛି । ନାମ ଲେଖାଇବା ପାଇଁ ସମୟ ମଧ୍ୟ ଅଛି ।"

ବାପା ଯେ ଏପରି ଗୋଟାଏ ପ୍ରସ୍ତାବ ଦେବେ, ସେଥିପାଇଁ ଜର୍ଜ ଆଦୌ ପ୍ରସ୍ତୁତ ନ ଥିଲା । କିଛି ସମୟ ଚିନ୍ତା କରି ସେ କହିଲା, "ମାତ୍ର ମୋର ବୟସ ଉଣାଇଶ ବର୍ଷ ହେଲାଣି । ଅନ୍ୟ ପିଲାମାନେ ମୋଠାରୁ ଅନ୍ତତଃ ଦୁଇ ତିନିବର୍ଷ ସାନ ହୋଇଥିବେ । ମୋର ଯେପରି ବୟସ ହେଲାଣି, ସେଥିରେ ମୋର ନିଜ ଗୋଡ଼ରେ ଛିଡ଼ା ହେବା ଦରକାର । ଏହା ମୋ ପକ୍ଷରେ ଏକ ଆତ୍ମସମ୍ମାନର ପ୍ରଶ୍ନ । ତୁମର ମୋ ପ୍ରତି ଯେଉଁ ସ୍ନେହ ଓ ଦୟା, ସେଥିପାଇଁ ମୁଁ କୃତଜ୍ଞ; କିନ୍ତୁ ତୁମ୍ଭର ଏହି ଅନୁଗ୍ରହକୁ ଗ୍ରହଣ କରି ପାରୁନାହିଁ ।"

ଏହିପରି କଥାବାର୍ତ୍ତା ପରେ ଦୁହେଁଯାକ ନୀରବରେ ଚାଲିବାକୁ ଲାଗିଲେ । କିଛି ସମୟ ପରେ ମିଷ୍ଟର ଓ୍ୱେଷ୍ଟିଂହାଉସଙ୍କର ଚକ୍ଷୁ ଲୋତକରେ ଜର୍ଜର ହୋଇ ଆସିଲା । ସେ ଧୀର ଭାବରେ କହିଲେ, "ମୁଁ ଆଜି ଗୋଟିଏ କଥା କହିବାକୁ ଚାହେଁ । ଏତେ ବର୍ଷ ହେଲା ମୋର ଆଉ ତୋ ମାଆର ଆଶା ରହି ଆସିଛି ଯେ ଆମର ପିଲାମାନେ କିପରି କଲେଜଶିକ୍ଷା ପାଇବେ । ଯୁଦ୍ଧ ହେତୁ ଆମର ଆଶା ପୂରଣ କରି ପାରିନାହିଁ । ଜେ ଓ ଜନ୍‌ର ବୟସ ଖୁବ୍ ହୋଇଗଲାଣି । ଆଉ ଆଲବର୍ଟ—ଆଜି ଆଲବର୍ଟ ନାହିଁ; ସେ ସ୍ୱର୍ଗରେ । ସେହି ଆଲବର୍ଟ କେବଳ କଲେଜକୁ ଯାଇ ଶିକ୍ଷାଲାଭ କରିବାକୁ ବିଶେଷ ଆଶା ପୋଷଣ କରିଥିଲା । କଲେଜରେ ଭର୍ତ୍ତି ହେବାପାଇଁ ହର୍‌ମାନର ବୟସ ହୋଇନାହିଁ । କିନ୍ତୁ ଦିନକୁ ଦିନ ସେ ତୋର ପରି ଏକଜିଦିଆ ହେବାର ମୁଁ ଦେଖି ପାରୁଛି ।"

ବାପା କଅଣ କହିବାକୁ ଯାଉ ଅଛନ୍ତି, ଜର୍ଜ ଉତ୍ତମରୂପେ ବୁଝି ପାରିଲା । ସେ ଚାହାନ୍ତି ଯେ ଜର୍ଜ ଆଲବର୍ଟର ସ୍ଥାନ ପୂରଣ କରିବ ।

ଲୁଇସିଆନାର ଏକ ପ୍ରାନ୍ତରେ ଗୋଟିଏ ଧଳା କୃଷ୍ଣ ତଳେ ଆଲବର୍ଟର ସମାଧି କଥା ତାର ମନେ ପଡ଼ିଗଲା । ସେ ଏକବାରେ ଅଭିଭୂତ ହୋଇ ପଡ଼ିଲା । ଆଲବର୍ଟର ମୃତ୍ୟୁ ସମ୍ବାଦ ପାଇଲା ଦିନୁ ସେ ନିଜକୁ ଯେଉଁ ଅପରାଧରେ ଅପରାଧୀ ବୋଲି ମନେ କରୁଥିଲା, ତାହା ତାର ହୃଦୟରେ ଅଧିକ ବଳବତ୍ତର ଭାବରେ ଦେଖାଦେଲା ।

ବାପାଙ୍କ କଥାରେ ଜର୍ଜର ଦୃଢ଼ତା ବିଚଳିତ ହୋଇଗଲା । ସେ କୁଣ୍ଠିତ ଭାବରେ କହିଲା, "ମୁଁ ତୁମ ପ୍ରସ୍ତାବ ଚିନ୍ତାକରି ଦେଖିବି ।"

ସେଦିନ ରାତିରେ ଖାଇବାବେଳେ ଜର୍ଜ କହିଲା ଯେ ସେ କଲେଜରେ ନାମ ଲେଖାଇବାକୁ ସ୍ଥିର କରିଛି ।

ସ୍ୱିନସ୍ୱିନ କଲେଜ ଗୋଟିଏ କ୍ଷୁଦ୍ର ଶିକ୍ଷାନୁଷ୍ଠାନ । ଏଥିରେ ୧୯୦ ଜଣ ମାତ୍ର ଛାତ୍ର । ଛାତ୍ରୀ ଆଦୌ ନ ଥିଲେ । କଲେଜଟି ଶେନେକ୍‌ଟାଡ଼ିର ମଧ୍ୟ ଭାଗରେ ଅବସ୍ଥିତ । ହତାର ମଝିରେ ଗୋଟିଏ ଲାଇବ୍ରେରୀ ଘରଟିରେ ପ୍ରାଚୀନ ଗଥିକ ଧରଣର ଗୋଟିଏ ଗମ୍ବୁଜ ଥିବାରୁ ଏହା ଗୋଟିଏ ରତ୍ନ-ଖଚିତ ମୁକୁଟପରି ଦିଶେ । ୧୮୬୫ ମସିହା ସେପ୍‌ଟେମ୍ବର ମାସ ୧୫ ତାରିଖରେ ଜର୍ଜ ଯାଇ କଲେଜରେ ନାମ ଲେଖାଇଲା । କଲେଜର ବିଜ୍ଞାନ ବିଭାଗରେ ସେ ଭର୍ତ୍ତି ହେଲା । ତାର ବୟସ ବେଶି ହୋଇ ଯାଇଥିଲା । ଅନେକ ପୁସ୍ତକ ଅଧ୍ୟୟନ କରିଥିବାରୁ ଓ ନୌବିଭାଗରେ ଯନ୍ତ୍ରପାତି ବିଷୟରେ ଅଭିଜ୍ଞତା ଅର୍ଜିଥିବାରୁ କଲେଜର ଅଧ୍ୟକ୍ଷ ତାଙ୍କୁ ଦ୍ୱିତୀୟ ଶ୍ରେଣୀରେ ନେଲେ । ଏହି ଦ୍ୱିତୀୟ ଶ୍ରେଣୀରେ ମଧ୍ୟ ଅନ୍ୟାନ୍ୟ ଛାତ୍ରମାନଙ୍କ ଠାରୁ ତାହାର ଜ୍ଞାନ ଅଧିକ ଥିଲା । ଇଞ୍ଜିନିଅରିଂ ଶ୍ରେଣୀରେ ଯାହା ପଢ଼ା ଯାଉଥିଲା, ତାହା ଏତେ ପ୍ରାଥମିକ ସ୍ତରର ଯେ ଜର୍ଜ ଭାବିଲା—ଏହି ସମୟରେ କ୍ଲାସରେ ବସି ନ ରହି ସେହି ସମୟତକ ତାର ଗାଡ଼ିଭିଡ଼ା କୌଶଳରେ ବ୍ୟୟ କଲେ ବରଂ ଲାଭ । ତେଣୁ ସେ ବରାବର ଏହି କ୍ଲାସରୁ ଅନୁପସ୍ଥିତ ହେବାକୁ ଲାଗିଲା । ଅଳ୍ପ କେତେ ସପ୍ତାହ ଭିତରେ ଅନୁପସ୍ଥାନ ବିଷୟରେ ତାର ଗୋଟାଏ ଦୁର୍ନାମ ହୋଇଗଲା । ବିଜ୍ଞାନ ବିଭାଗର ପ୍ରଧାନ ଅଧ୍ୟାପକ ଏହା ଜାଣିପାରି ଦିନେ ତାହାକୁ ନିଜ ଅଫିସକୁ ଡକାଇ ନେଇ ସାବଧାନ କରିଦେଲେ । ଗାଡ଼ିଭିଡ଼ା କୌଶଳ କଥା ପଚାରିବାକୁ

ପକାଇ ଦେବାକୁ ହେବ ବୋଲି ଜାଣିପାରି ମଧ୍ୟ ଜର୍ଜ ପ୍ରତିଶ୍ରୁତି ଦେଲା ଯେ ସେ ଏଣିକି କ୍ଲାସରୁ ଅନୁପସ୍ଥିତ ହେବ ନାହିଁ ।

ଯନ୍ତ୍ରବିଦ୍ୟା ଶିକ୍ଷା କରିବା ଛଡ଼ା ତାକୁ ଫ୍ରେଞ୍ଚ, ଗଣିତ ଓ ଇଂରାଜୀ ଶିକ୍ଷା କରିବାକୁ ହେଉଥିଲା । ଗଣିତ ଓ ଇଂରାଜୀରେ ସେ ଭଲ ପାଠୋନ୍ନତି କରୁଥିଲା; କିନ୍ତୁ ବୈଦେଶିକ ଭାଷା ଶିକ୍ଷାରେ ସେ ଆଦୌ ଉନ୍ନତି ଦେଖାଇ ପାରୁ ନ ଥିଲା । ତଥାପି କିଛିଦିନ ପର୍ଯ୍ୟନ୍ତ ସେ ନିଜ ପଢ଼ା ଦିଗରେ ଯଥାସାଧ୍ୟ ଚେଷ୍ଟା କଲା ।

ନଭେମ୍ବର ମାସରେ ସେ ଗୋଟିଏ ସୁସମ୍ବାଦ ପାଇଲା ଯେ ତାର ରୋଟାରି ଇଞ୍ଜିନ ପାଇଁ ପେଟେଣ୍ଟ ମଞ୍ଜୁର ହୋଇଛି । ଉଦ୍ଭାବକ ଭାବରେ ସେ ଏହି ଯେଉଁ ପ୍ରଥମ କୃତିତ୍ୱ ଅର୍ଜନ କଲା, ତାହା ତାର ସଦୁଦ୍ଦେଶ୍ୟକୁ ପଣ୍ଡ କରିଦେଲା । ପୁଣି ଗଢ଼ାଗଢ଼ି କାମରେ ଲାଗିବାକୁ ତାର ମନ ବ୍ୟାକୁଳ ହେଲା । ସେ ପୁନର୍ବାର କ୍ଲାସରୁ ଅନୁପସ୍ଥିତ ହେବାକୁ ଲାଗିଲା ।

ବଡ଼ଦିନ ଛୁଟି ପୂର୍ବରୁ କଲେଜର ଅସ୍ଥାୟୀ ସଭାପତି ଡକ୍ଟର ହିକକ୍ ଜର୍ଜଙ୍କୁ ଡକାଇ ପଠାଇଲେ । ଡକ୍ଟର ହିକକ୍ ଦୀର୍ଘକାୟ ଓ କ୍ଷୀଣ । ସୁନାର ଫ୍ରେମ ଲଗା ଚଷମା ପିନ୍ଧୁଥିଲେ । ଜର୍ଜ ଉପସ୍ଥିତ ହେବାରୁ ସେ ତାକୁ ମୃଦୁ ଧୀର ସ୍ୱରରେ କହିଲେ, "ଜର୍ଜ, ତୁମକୁ ଏ କଲେଜ ଭଲ ଲାଗୁଛି ତ ?"

ଜର୍ଜ ଉତ୍ତର କଲା, "ମହାଶୟ, ମୋତେ ଏ କଲେଜ ଭଲ ଲାଗୁଛି । ମୋ ମତରେ ୟୁନିଅନ କଲେଜ ଗୋଟିଏ ଭଲ ଅନୁଷ୍ଠାନ ।"

ତେବେ ଆମ କଲେଜ ଯେଉଁ ସବୁ ବିଷୟ ଶିକ୍ଷା ଦେବାର ବ୍ୟବସ୍ଥା କରିଛି, ତୁମ୍ଭେ ତାର ସୁବିଧା ଗ୍ରହଣ କରୁନାହଁ କାହିଁକି ? ମୁଁ ଦେଖୁଛି ଯେ ତୁମ୍ଭର ଉପସ୍ଥାନ ଅତି ଖରାପ ।"

କିଛି କ୍ଷଣ ନୀରବ ରହି ଜର୍ଜ ଉତ୍ତର କଲା, "ମହାଶୟ, ଅନୁମତି ଦେଲେ ମୁଁ ପ୍ରକୃତ କଥା ପ୍ରକାଶ କରିବି ।"

ଡକ୍ଟର ହିକକ୍ କହିଲେ, "ତାହା ତୁମେ ସ୍ୱଚ୍ଛନ୍ଦରେ ପ୍ରକାଶ କରିପାର ।"

"ଯୁନିୟୁନ କଲେଜ ଗୋଟିଏ ଅତି ଉତ୍ତମ ଶିକ୍ଷାନୁଷ୍ଠାନ; କିନ୍ତୁ ଏହା ମୋ ପକ୍ଷରେ ଉପଯୁକ୍ତ ନୁହେଁ । ମୋତେ ଏହା ବିରକ୍ତିକର ବୋଧ ହେଉଅଛି ।"

ଡକ୍ଟର ହିକକ୍ ଟିକିଏ ଉପରକୁ ଚାହିଁ କହିଲେ, "ଜର୍ଜ, ଆଉ ଯାହା କହିବାର ଅଛି ନିର୍ଭୟରେ କହ । ମୁଁ ଶୁଣିଛି ଯେ ତୁମର ବିଜ୍ଞାନ ଓ ଯନ୍ତ୍ରପାତି ବିଷୟରେ ପ୍ରବେଶ ଅଛି । ତେଣୁ ତୁମର ମତ ଶୁଣିବାକୁ ମୋର ବିଶେଷ ଆଗ୍ରହ ।"

ପ୍ରାୟ ଅଧଘଣ୍ଟା ପର୍ଯ୍ୟନ୍ତ ଜର୍ଜ ଆପଣାର ଭବିଷ୍ୟତ ଆଶା ଓ ଆକାଙ୍କ୍ଷା ବିଷୟ ସରଳ ଭାବରେ ବର୍ଣ୍ଣନା କରିଗଲା । ତାର ମୋଟର ଇଞ୍ଜିନ କଥା ଓ ଗାଡ଼ିଉଠା କୌଶଳ ବିଷୟରେ ତାର କଳ୍ପନା କଥା ମଧ୍ୟ ସେ ସ୍ପଷ୍ଟଭାବରେ ପ୍ରକାଶ କରି କହିଲା, "କ୍ଲାସ୍‌ର ପଢ଼ାରେ ଯେଉଁ ଶୃଙ୍ଖଳା ଓ ନିୟମ ଆବଶ୍ୟକ, ତାହା ଭିତରେ ନିଜକୁ ଆବଦ୍ଧ ରଖି ଚଳିବା ମୋ ପକ୍ଷରେ ନିତାନ୍ତ କଷ୍ଟକର ହେଉଅଛି ।"

ଡକ୍ଟର ହିକକ୍ ମନ ଦେଇ ସବୁ କଥା ଶୁଣୁଥିଲେ । ଜର୍ଜର କଥା ଶେଷ ହେବାରୁ ସେ ଚିନ୍ତିତ ଭାବରେ ଘରର ଛାତ ଆଡ଼କୁ ଚାହିଁଲେ । ତତ୍ପରେ ଧୀର ସ୍ୱରରେ କହିଲେ, "ଜର୍ଜ, ତୁମେ ଯେପରି ମନର କଥା ସ୍ପଷ୍ଟ ଭାବରେ ପ୍ରକାଶ କଲ, ସେଥିରେ ମୁଁ ପ୍ରୀତ ହୋଇଅଛି । କିଛି ସମୟ ପୂର୍ବରୁ ତୁମ୍ଭେ ଏଠାକୁ ଆସିଲାବେଳେ ତୁମ୍ଭ ସମ୍ବନ୍ଧରେ ମୁଁ ଯାହା ଜାଣିଥିଲି, ଏବେ ତାହା ଅପେକ୍ଷା ଯଥେଷ୍ଟ ବେଶି ଜାଣି ପାରିଅଛି । ତୁମ୍ଭେ ଯେପରି ସରଳ ଭାବରେ ତୁମ୍ଭ ମନ କଥା ପ୍ରକାଶ କଲ ମୁଁ ମଧ୍ୟ ସେହିପରି ସ୍ପଷ୍ଟଭାବରେ ମୋର ମତ ପ୍ରକାଶ କରିବି । ୟୁନିୟନ କଲେଜ ତୁମ୍ଭପାଇଁ ଉପଯୁକ୍ତ ଅନୁଷ୍ଠାନ ନୁହେଁ ବୋଲି ତୁମ୍ଭେ ଯାହା କହୁଛ; ତାହା ଯଥାର୍ଥ । କୌଣସି ଛାତ୍ର ଶିକ୍ଷାନୁଷ୍ଠାନର ପରିବେଶକୁ ଭଲ ନ ପାଇଲେ ଆମେ ଶିକ୍ଷାବିତ୍‌ମାନେ ଅନେକ ସମୟରେ ତା ଉପରେ ବିରକ୍ତ ହେଉଁ । ଏହାର ଅର୍ଥ ନୁହେଁ ଯେ ସେଭଳି ଛାତ୍ରମାନଙ୍କର କଲେଜ ଶିକ୍ଷା ଗ୍ରହଣ କରିବାକୁ ମାନସିକ ଶକ୍ତିର ଅଭାବ ଅଛି । ବରଂ ଅନେକ କ୍ଷେତ୍ରରେ ସେପରି ଛାତ୍ରମାନେ ଅତି ବୁଦ୍ଧିମାନ । ଏହି ବୁଦ୍ଧିମତ୍ତା ହେତୁରୁ ସେମାନେ

କଲେଜର ଶୃଙ୍ଖଳା ଭିତରେ ନିଜକୁ ରୁଦ୍ଧଶ୍ୱାସ ହେଲାପରି ମନେ କରନ୍ତି । ସେମାନଙ୍କୁ ଆମେ ଶିକ୍ଷାଳୟର 'ଅନୁପଯୁକ୍ତ' ବୋଲି ମନେ କରୁଁ । ତୁମେ ସେହିପରି ଏ କଲେଜ ପାଇଁ 'ଅନୁପଯୁକ୍ତ' ବୋଲି ମୁଁ ମନେ କରୁଛି । କିନ୍ତୁ ଜର୍ଜ, ଏଥିରେ ଲଜ୍ଜିତ ହେବାର କିଛି କାରଣ ନାହିଁ । ତୁମର ଭବିଷ୍ୟତ ଯେ ଉଜ୍ଜ୍ୱଳ, ଏଥିରେ ମୁଁ ନିଃସନ୍ଦେହ । ମୁଁ ଆଶୀର୍ବାଦ କରୁଛି, ତୁମେ ଜୀବନରେ ଯଶସ୍ୱୀ ହୁଅ ।"

ଜର୍ଜ ନମ୍ରଭାବରେ ଡକ୍ଟର ହ୍ୱିକକ୍‌ଙ୍କୁ ଧନ୍ୟବାଦ ଜଣାଇ ବିଦାୟ ନେଲା ।

ସେଦିନ ସନ୍ଧ୍ୟାବେଳେ ଜର୍ଜ ଡକ୍ଟର ହ୍ୱିକକ୍‌ଙ୍କ ସଙ୍ଗେ ଯାହା କଥାବାର୍ତ୍ତା ହୋଇଥିଲା, ତାହା ବାପମାଆଙ୍କୁ ଜଣାଇଲା । ତା ପରଦିନ ମିଷ୍ଟର ଓ୍ୱେଷ୍ଟିଂହାଉସ ନିଜେ ପୁନଃପୁନ କଲେଜକୁ ଯାଇ ଡକ୍ଟର ହ୍ୱିକକ୍‌ଙ୍କ ସହିତ ପ୍ରାୟ ଘଣ୍ଟାଏ ପର୍ଯ୍ୟନ୍ତ ନିର୍ଜନରେ କଥାବାର୍ତ୍ତା କଲେ ।

ବଡ଼ଦିନ ପରେ ଜର୍ଜ ଆଉ କଲେଜକୁ ଗଲା ନାହିଁ ।

ଉଚ୍ଚଶିକ୍ଷାର ବନ୍ଧନପୂର୍ଣ୍ଣ ଆବେଷ୍ଟନରୁ ମୁକ୍ତି ପାଇଲେ ମଧ୍ୟ, ଏଥି ନିମନ୍ତେ ଜର୍ଜକୁ ଯଥେଷ୍ଟ ମୂଲ୍ୟ ଦେବାକୁ ପଡ଼ିଥିଲା । ସେ ନିଜର ଉଦ୍ଦେଶ୍ୟରେ ସଫଳ ହେଲା ସତ୍ୟ, କିନ୍ତୁ ସେ ଜାଣି ପାରିଥିଲା ଯେ ଏହା ଫଳରେ ପିତା ତା ଉପରେ ଯେଉଁ ଆଶା ପୋଷଣ କରିଥିଲେ; ତାହା ବିଫଳ ହୋଇଅଛି । ଆଲବର୍ଟର ମୃତ୍ୟୁଜନିତ ଦୁଃଖରେ ଅଭିଭୂତ ହୋଇଥିବାରୁ ମିଷ୍ଟର ଓ୍ୱେଷ୍ଟିଂହାଉସ କିଛି କହିଲେ ନାହିଁ; କିନ୍ତୁ ଜର୍ଜ ତାଙ୍କ ହୃଦୟର ବେଦନା ବୁଝି ପାରିଥିଲା । ଜର୍ଜର ବିଶ୍ୱାସ, ଆଲବର୍ଟ ବଞ୍ଚିଥିଲେ ସେ କେବେହେଲେ ପିତାଙ୍କ ଇଚ୍ଛା ବିରୁଦ୍ଧରେ କାର୍ଯ୍ୟ କରି ନ ଥାନ୍ତା । ଏବେ ସେ ପିତାମାତାଙ୍କର ଦୁଃଖକୁ ଲାଘବ କରିବା ପରିବର୍ତ୍ତେ ବୃଦ୍ଧି କରିଛି ମାତ୍ର । ଜୀବନସାରା ସେ ପିତାମାତାଙ୍କୁ କେବଳ ଦୁଃଖ ଦେଇ ଆସିଛି ଏପରି ଏକ ଦୁର୍ଭାବନା ଯେଜି ରହିବା କଦାପି ସୁଖକର ହୋଇ ନ ପାରେ ।

ଦିନେ ଦିନେ ରାତିରେ ସେ ସ୍ୱପ୍ନରେ ଆଲବର୍ଟକୁ ଦେଖେ । ତାର ନିଦ ଭାଙ୍ଗି ଯାଏ । ସେ ଦେଖେ ଯେ ସେ ଅନ୍ଧାର ଘରେ ଶୋଇଛି । ତାର

ଦେହ ଝାଳରେ ବୁଡ଼ି ଯାଇଥାଏ । ସତେ ଯେପରିକ ଜର୍ଜ ପିତାଙ୍କୁ ଏପରି ମନକଷ୍ଟ ଦେଉଥିବାରୁ ଆଲବର୍ଟ ତାକୁ ଭର୍ତ୍ସନା କରିବାକୁ ଆସିଥିଲା । ଜର୍ଜ ଆଲବର୍ଟ ସହିତ ସମାନ ହେବାକୁ ଚେଷ୍ଟା କରିବା ସହଜ ନୁହେଁ । ସେ ନିଜକୁ ଆଲବର୍ଟ ସଙ୍ଗେ ତୁଳନା କରୁଥିଲା । ଶେଷରେ ସେ ଆପଣାକୁ ସାନ୍ତ୍ୱନା ଦେଲା ଯେ ସେ ମଧ୍ୟ ତା ବିଦ୍ୟାବୁଦ୍ଧି ଦୃଷ୍ଟିରୁ ଆଲବର୍ଟ ଭଳି ଗୋଟିଏ ଭଲ ପୁଅ । ସେ ବିବେକ ଗ୍ଳାନିକରି ବୁଝିପାରୁଥିଲା ଯେ ଏପରି ନିଜକୁ ସାନ୍ତ୍ୱନା ଦେବା ନିତାନ୍ତ ବାଳଗ୍ରପଲ୍ପ ଛଡ଼ା ଆଉ କିଛି ନୁହେଁ । କିନ୍ତୁ ତା ମନରେ ଏତେ ଦିନ ଧରି ଯେଉଁ ଅପରାଧ ଭୂତ ପରି ମାଡ଼ି ବସିଥିଲା ତାହାଠାରୁ ମୁକ୍ତି ପାଇବାକୁ ତାର ଇଚ୍ଛା; ତେଣୁ ସେ ଏହିପରି ଭାବୁଥିଲା ।

ସେ ଅନୁଭବ କରୁଥିଲା ଯେ ସେ କଦାପି ଆଲବର୍ଟର ସମକକ୍ଷ ହୋଇ ପାରିନାହିଁ । ଏହି ଅନୁଭୂତି ହେତୁରୁ ଜୀବନରେ ଯଶସ୍ୱୀ ହେବା ନିମନ୍ତେ ତା ମନରେ ଏକ ବଳବତୀ ଇଚ୍ଛା ଜାଗ୍ରତ ହେଲା ।

ସେ ମନେ ମନେ ଚିନ୍ତାକଲା—ମୋର ଜୀବନଟା ବିଫଳତାରେ ପୂର୍ଣ୍ଣ । ଛାତ୍ରଭାବରେ, ପୁତ୍ରଭାବରେ ଏପରିକି ଯୁଦ୍ଧ ବିଭାଗର ଜଣେ ସୈନିକ-ଭାବରେ ସବୁକ୍ଷେତ୍ରରେ ମୁଁ ବିଫଳ ହୋଇଅଛି । ଏବେ ଯେ କୌଣସି ଗୋଟାଏ ବିଷୟରେ କୃତିତ୍ୱ ଅର୍ଜିବା ଆବଶ୍ୟକ ବୋଲି ସେ ସ୍ଥିରକଲା । ସେ ବିଷୟ ଯାହା କିଛି ହେଉ, କ୍ଷତି ନାହିଁ । ଏବେ ତା'ନିକଟରେ ଯେଉଁ ଲକ୍ଷ୍ୟ ଦେଖାଦେଇଛି ସେ ତାହାକୁ ଧରିବ ବୋଲି ସ୍ଥିରକଲା । କିପରି ସେ ତାର ଗାଡ଼ିଉଠା ଯନ୍ତ୍ରଟି ନିର୍ମାଣ କରିବାରେ ସଫଳ ହେବ, ସେଥି-ପାଇଁ ସେ ଲାଗିପଡ଼ିଲା ।

ଏଥିପୂର୍ବରୁ ଏହି ବିଷୟଟି ତା ପକ୍ଷରେ ଗୋଟିଏ ଆମୋଦଦାୟକ କଳ୍ପନାର ବସ୍ତୁ ହୋଇଥିଲା । ଏବେ ତାହା ତାକୁ ପାଗଳ କରିଦେଲା । ସେ ଦୃଢ଼ପ୍ରତିଜ୍ଞା ସହକାରେ ଏହି ନୂତନ ଯନ୍ତ୍ର ନିର୍ମାଣରେ ଲାଗିପଡ଼ିଲା । ନିର୍ଦ୍ଦିଷ୍ଟ ସମୟରେ କଲେଜରେ ଉପସ୍ଥିତ ହେବା ବା ପଢ଼ା ପ୍ରସ୍ତୁତ କରିବାର ଚିନ୍ତା ଆଉ ନ ଥିଲା । ତେଣୁ ସେ ପ୍ରତ୍ୟହ ସନ୍ଧ୍ୟାବେଳା ତାର କଳ୍ପିତ ଯନ୍ତ୍ରର ଗୋଟିଏ ମଡ଼େଲ୍ ତିଆରି କରିବାରେ ଲାଗିଲା । ଦିନ-

କରୁଥାନ୍ତି, ସେ କ୍ଷଣେ ବେତନଭୋଗୀ କର୍ମଚାରୀଭାବରେ ଜ. ଓ୍ବେଷ୍ଟିଙ୍ଗ-ହାଉସ କମ୍ପାନୀରେ କାର୍ଯ୍ୟ କରୁଥିଲା ।

ଶେଷରେ ସେ ଗାଡ଼ିଉଠା ଯନ୍ତ୍ରର ଯେଉଁ ମଡେଲଟି ତିଆରି କଲା, ତାହା ଏତେ ସାଧାସିଧା ହେଲା ଯେ ସେ ନିଜେ ବିସ୍ମିତ ହୋଇଗଲା । ଏପରି ଗୋଟିଏ ସହଜ କଥା ଏତେ ଦିନ ପର୍ଯ୍ୟନ୍ତ କାହାରି ମସ୍ତିଷ୍କରେ ପ୍ରବେଶ କରି ନ ଥିଲା କିପରି ? ଯନ୍ତ୍ରଟିରେ ଯୋଡ଼ାଏ ରେଲଧାରଣା ଥିଲା । ତାହାର ଦୁଇ ପ୍ରାନ୍ତରେ କ୍ଲାମ୍ପ ସଂଯୁକ୍ତ ଥିଲା, ଯେପରିକି ପ୍ରଧାନ ଲାଇନ ସହିତ କୌଣସିଭାବରେ ଏ ଦୁଇଟିକୁ ଯୋଡ଼ି ଦିଆଯାଇ ପାରିବ । ଏ ଦୃଷ୍ଟିରୁ ଏହା ଅନେକାଂଶରେ 'ଫ୍ରଗ' ଯନ୍ତ୍ର ପରି । ଗୋଟିଏ ଲାଇନ ସହିତ ଅନ୍ୟ ଏକ ଲାଇନକୁ 'ଫ୍ରଗ' ଦ୍ୱାରା ସଂଯୁକ୍ତ କରାଯାଉଥିଲା । ଏହା ସାହାଯ୍ୟରେ ରେଲଗାଡ଼ିକୁ ଗୋଟିଏ ଲାଇନରୁ ଅନ୍ୟ ଏକ ଲାଇନକୁ ନିଆଯାଇ ପାରୁଥିଲା । ଗାଡ଼ି ଉଠାଯନ୍ତ୍ରର ଧାରଣା ଦୁଇଟିକୁ ଲାଇନଚ୍ୟୁତ ହୋଇଥିବା ଡବାର ଚକତଳକୁ ଖଞ୍ଜି ଦେଇ ଇଞ୍ଜିନ ସାହାଯ୍ୟରେ ଡବାଟିକୁ ପୁଣି ପ୍ରଧାନ ଲାଇନ ଉପରକୁ ଟଣାଯାଇପାରିବ ।

ମିଷ୍ଟର ଓ୍ବେଷ୍ଟିଙ୍ଗହାଉସ କଳକବଜା ବିଷୟରେ ବିଶେଷ ଅଭିଜ୍ଞ ଥିଲେ । ସେ ମଧ୍ୟ ଏହି ଗାଡ଼ିଉଠା ଯନ୍ତ୍ରର ମଡେଲଟି ଦେଖି ସନ୍ତୁଷ୍ଟ ହେଲେ । କିପରି ଗାଡ଼ିଉଠା ଯନ୍ତ୍ରକୁ ବ୍ୟବହାର କରାଯିବ ଜର୍ଜ ତାହା ବୁଝାଇ ଦେଲା । ମିଷ୍ଟର ଓ୍ବେଷ୍ଟିଙ୍ଗହାଉସ କହିଲେ, "ମୋତେ ସ୍ୱୀକାର କରିବାକୁ ହେବ ଯେ ତୋର ଏହି ଯନ୍ତ୍ରଦ୍ୱାରା ସୁନ୍ଦରରୂପେ କାର୍ଯ୍ୟ ସାଧିତ ହୋଇ ପାରିବ । ମାତ୍ର ଯନ୍ତ୍ରଟି କାହିଁରେ ତିଆରି ହେବ ? ଢଳେଇ ଲୁହାରେ ?"

ଜର୍ଜ ଉତ୍ତର କଲା, "ନା ବାପା, ଆହୁରି ମଜଭୁତ ଧାତୁରେ ହେବା ଦରକାର । ଏହା ଇସ୍ପାତରେ କରାଯିବ ।"

ମିଷ୍ଟର ଓ୍ବେଷ୍ଟିଙ୍ଗହାଉସ ବିସ୍ମିତ ହୋଇ କହିଲେ, "ରେଲ-ଚଳାଚଳ ବିଷୟରେ ମୋର ବିଶେଷ ଧାରଣା ନାହିଁ । କିନ୍ତୁ ମୁଁ ଜାଣେ ଯେ 'ଫ୍ରଗ୍' ଓ ସେହିଭଳି ଯନ୍ତ୍ରସବୁ ଢଳେଇ ଲୁହାରେ ତିଆରି ହୁଏ ।"

ଜର୍ଜ ଉତ୍ତର କଲା, "ହଁ, ସେ କଥା ସତ । ମୁଁ ରେଲଷ୍ଟେସନକୁ ଯାଇ ମିସ୍ତ୍ରୀମାନଙ୍କୁ ପଚ୍ଚରିଥିଲି । ସେମାନଙ୍କ ପାଖରୁ ବୁଝିଲି ଯେ ତଳେଇ ଲୁହାର ଯନ୍ତ୍ର ବେଶିଦିନ ଯାଏ ନାହିଁ । ଫଳରେ ସେଗୁଡ଼ିକୁ ବାରମ୍ବାର ବଦଳେଇବାକୁ ପଡ଼େ । ଡ୍ରପୁରେ ବେସମେର ଷ୍ଟିଲ୍ ଓ୍ୱାର୍କସ ବୋଲି ଗୋଟିଏ ଇସ୍ପାତ କାରଖାନା ଅଛି । ଏହି କାରଖାନା ତଳେଇ ଇସ୍ପାତ ତିଆରି କରିବାର ଗୋଟିଏ ନୂତନ ପ୍ରଣାଳୀ ବାହାର କରି ଅଛନ୍ତି । ଏହି ତଳେଇ ଇସ୍ପାତ ବହୁତ ଦିନ ଯିବ ।"

ଜର୍ଜ ତାର ପ୍ରିୟ ବିଷୟରେ ଏତେ ବିଭୋର ହୋଇ ଯାଇଥିଲା ଯେ ସେ କହିଲା "ମୁଁ ଭାବୁଛି ଯେ 'ଫ୍ରଗ୍' ମଧ୍ୟ ତଳେଇ ଇସ୍ପାତରେ ତିଆରି ହେବ । ଆଉ ଗୋଟିଏ କଥା ମୋର କଳ୍ପନାରେ ଅଛି । 'ଫ୍ରଗ୍'କୁ ଏପରି ତିଆରି କରାଯିବ ଯେ ତାର ଗୋଟିଏ ପାଖ ଘୋରି ହୋଇଗଲେ ତଳ ପାଖ ଉପରକୁ କରି ପୁଣି ବ୍ୟବହାର କରାଯାଇ ପାରିବ । ଏହା ଫଳରେ ରେଲକମ୍ପାନିର ଖରଚ ବହୁତ କମିଯିବ ।"

ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ଟିକିଏ ସନ୍ଦିଗ୍ଧଭାବରେ କହିଲେ, ଜର୍ଜ, ତୋର କଳ୍ପନାଗୁଡ଼ିକ ବେଶ୍ ଭଲ । ମାତ୍ର ଏତେ ଗୁଡ଼ିଏ କଳ୍ପନାକୁ କାର୍ଯ୍ୟରେ ପରିଣତ କରିବାକୁ ହେଲେ ଯେ ଅନେକ ଟଙ୍କା ଦରକାର । ଟଙ୍କା ମିଳିବାର କି ଉପାୟ ଭାବୁଛୁ ?"

ଜର୍ଜ ଟିକିଏ ରହିଯାଇ କହିଲା, "ବାପା, ମୁଁ ଭାବିଥିଲି ଯେ ତୁମେ --

ଜର୍ଜର କଥା ନ ସରୁଣୁ ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ବାରମ୍ବାର ମୁଣ୍ଡ ହଲାଇ କହିଲେ, "ମୋର ସବୁ ନଗଦ ଟଙ୍କା ଏହି କମ୍ପାନିରେ ଲଗାଇଛି । ଏହା ଛଡ଼ା ରେଲଚଳାଚଳ ବିଷୟରେ ମୁଁ କିଛି ଜାଣେ ନାହିଁ । ମୋର ମତ ହେଉଛି, ଯେ ଯେଉଁ ବିଷୟରେ ଅନଭିଜ୍ଞ ସେ ବ୍ୟବସାୟରେ ତାର ଟଙ୍କା ଖଟାଇବା ନିତାନ୍ତ ମୂର୍ଖତା......।"

ଜର୍ଜର ମୁହଁ କଳା ପଡ଼ିଗଲା ।

ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ଟିକଏ ହସି କହିଲେ, "ତୋର ପେଟେଣ୍ଟ ପାଇବା ପାଇଁ ଓ ଅନ୍ୟାନ୍ୟ ବାଜେ ଖରଚ ପାଇଁ ମୁଁ କିଛି ଟଙ୍କା ଧାର ଦେଇପାରେଁ । ମୋର ତ ପୁଣି ତୋ ପ୍ରତି ଗୋଟାଏ କର୍ତ୍ତବ୍ୟ ଅଛି । ତୋଠାରେ ମୋର ବିଶ୍ୱାସ ରହିଛି । ତେଣୁ ମୁଁ କିଛି ଟଙ୍କା ଧାର ଦେଇ ପାରିବ ।"

ଆର୍ଥିକ ସାହାଯ୍ୟ ପାଇବା ପାଇଁ ଚେଷ୍ଟା କରିବାରେ ଜର୍ଜ ପରବର୍ତ୍ତୀ ମାସଟି କଟାଇଦେଲା । ସେ ଗାଡ଼ିଉଠା ଯନ୍ତ୍ରର ମଡ଼େଲଟି ନେଇ ସେନେକଟାଡ଼ିର ପ୍ରସିଦ୍ଧ ବ୍ୟବସାୟୀମାନଙ୍କ ପାଖରେ ତାର ମନୋଭାବ ପ୍ରକାଶ କଲା । ସେମାନଙ୍କମଧ୍ୟରୁ ଅନେକେ ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସଙ୍କୁ ଜାଣିଥିଲେ । ତେଣୁ ସେମାନେ ଆଦରରେ ଜର୍ଜକୁ ଅଭ୍ୟର୍ଥନା କଲେ । କିନ୍ତୁ ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସଙ୍କ ପରି ସେମାନେ ମଧ୍ୟ ରେଲଚଳାଚଳ ବିଷୟରେ କିଛି ଜାଣି ନ ଥିଲେ । ଯେଉଁ ବ୍ୟବସାୟ କଥା ସେମାନଙ୍କ ଜଣା ନାହିଁ ସେଥିରେ ଟଙ୍କା ଖଟାଇବା ପାଇଁ କେହି ଇଚ୍ଛୁକ ହେଲେ ନାହିଁ ।

ଶେଷରେ କେହି ଜଣେ ତାକୁ ରଅଲ୍‌ସ ନାମକ ଜଣେ ପ୍ରସିଦ୍ଧ ବ୍ୟବସାୟୀଙ୍କ ପାଖକୁ ଯିବାକୁ କହିଲା । ଜର୍ଜ ନିଜର ମଡେଲଟି ନେଇ ତାଙ୍କ ସଙ୍ଗେ ଦେଖାକଲା । ରଅଲ୍‌ସ ଜଣେ ପ୍ରୌଢ଼ ବ୍ୟକ୍ତି । ତାଙ୍କର କେଶ ଶୁକ୍ଳ ହୋଇ ଆସିଥିଲା । ତାଙ୍କର ଚକ୍ଷୁ ଦୁଇଟିରୁ ତାଙ୍କ ବୁଦ୍ଧିମତ୍ତା ଓ ଦୂରଦୃଷ୍ଟିର ପରିଚୟ ମିଳୁଥିଲା । ସେ ପ୍ରାୟ ପାଞ୍ଚମିନିଟ ପର୍ଯ୍ୟନ୍ତ ମଡେଲଟିକୁ ହାତରେ ଧରି ଏ ପାଖ ସେପାଖ ପରୀକ୍ଷା କରି ଦେଖିଲେ, ମାତ୍ର କିଛି କହିଲେ ନାହିଁ ।

କିଛି ସମୟ ପରେ ସେ ହଠାତ୍ ଆପଣା ଡେସ୍କ ଉପରେ ହାତ ପିଟି ନାଟକୀୟ ଭଙ୍ଗୀରେ କହିଲେ, "ତୁମର ଏହି ନୂଆ ଉପାୟଟି ଦ୍ୱାରା ତୁମ୍ଭେ ମୋତେ କିଣି ନେଇଛ । ମୁଁ ଏଥିପାଇଁ ପାଞ୍ଚ ହଜାର ଡଲାର ଦେବାକୁ ପ୍ରସ୍ତୁତ ଅଛି । ହ୍ୱିଟ୍‌ବର୍ଟ ଓ୍ୱାଲ ବୋଲି ମୋର ଜଣେ ବନ୍ଧୁ ଅଛନ୍ତି । ମୁଁ ତାଙ୍କୁ କହିଲେ ସେ ମଧ୍ୟ ପାଞ୍ଚହଜାର ଡଲାର ଦେବେ । ଆମେ ତିନି ଜଣ ଯାକ ମିଶି ଗୋଟିଏ ଯୌଥ କମ୍ପାନୀ ପ୍ରତିଷ୍ଠା କରିବା ।"

ଜର୍ଜ ଆନନ୍ଦରେ ତାଙ୍କୁ ଧନ୍ୟବାଦ ଦେବାକୁ ଗଲା ବେଳକୁ ସେ ଜର୍ଜର ହାତ ଧରି ଚପାଇ କହିଲେ, "ଏତେ ଚଞ୍ଚଳ କାହିଁକି ? ମୋର ବିଶ୍ୱାସ, ଆମର ଅର୍ଥ ବିନିମୟରେ ତୁମେ ଗାଡ଼ିଜଠା ଯନ୍ତ୍ର ଓ 'ଫ୍ରଗ୍'ର ସମସ୍ତ ରୟାଲଟି ଆମ କମ୍ପାନୀକୁ ଦେବ । ଆହୁରି ମଧ୍ୟ ତୁମେ କମ୍ପାନୀର ବିକ୍ରେତା ଭାବରେ କାର୍ଯ୍ୟ କରିବ ।"

ଜର୍ଜ ଆନନ୍ଦରେ ଏହି ସର୍ତ୍ତଗୁଡ଼ିକରେ ରାଜି ହୋଇଗଲା ।

ଚାରି ମାସ ମଧ୍ୟରେ ରଅଲସ-ଓସ୍ତାଲ-ଓୟେଷ୍ଟିଙ୍ଗହାଉସ ଯୌଥ କମ୍ପାନୀ କାର୍ଯ୍ୟ ଆରମ୍ଭ କରିଦେଲା । ଗାଡ଼ି ଜଠା ଯନ୍ତ୍ର ଓ ଫ୍ରଗର ନକ୍ସା ସହିତ ଜର୍ଜ ଟ୍ରୟକୁ ଗଲା ଓ ସେଠାରେ ବେହମେର ଷ୍ଟିଲ କାରଖାନା ସହିତ ଚୁକ୍ତି ହେଲା ଯେ ସେହି କାରଖାନା ଗାଡ଼ିଜଠା ଯନ୍ତ୍ର ଓ ନୂତନ ଫ୍ରଗ୍ ପ୍ରସ୍ତୁତ କରିବ । ଯନ୍ତ୍ରପାତି ସବୁର ମଡ଼େଲମାନ ତିଆରି ହେଲା । ପରିଚୟ ପତ୍ରରେ ଲେଖା ହେଲା; "ଜର୍ଜ ଓୟେଷ୍ଟିଙ୍ଗହାଉସ, ପ୍ରଧାନ ବିକ୍ରେତା ।" ସେହି ବର୍ଷ ଶୀତ ଦିନ ପୂର୍ବରୁ ସେ ପରିଚୟ ପତ୍ର ଓ ମଡ଼େଲ ଗୁଡ଼ିକ ନେଇ ବାହାରି ପଡ଼ିଲା ।

•

ସେ ପ୍ରଥମେ ଯାଇ ଶିକାଗୋରେ ଥିବା 'ଶିକାଗୋ-ବର୍ଲିଂଟନ କୁଇନ୍‌ସି ରେଲବେଜ' କମ୍ପାନୀର ଅଫିସରେ ପହଞ୍ଚିଲା । ଏଥିପୂର୍ବରୁ ସେ ସେନେକଟାଡ଼ିର ଜଣେ ମହାଜନଙ୍କ ପରାମର୍ଶ ଅନୁସାରେ ସେ ରେଲରୋଡ଼ କମ୍ପାନୀର ସୁପରିଣ୍ଟେଣ୍ଡେଣ୍ଟ ମିଷ୍ଟର ଟାଉନଙ୍କ ପାଖକୁ ପତ୍ର ଦେଇଥିଲା । ପତ୍ର ସହିତ ସେ ତାର ଉଦ୍ଭାବନର ନକ୍ସା ମଧ୍ୟ ପଠାଇଥିଲା । ଏହି ପତ୍ରର ଉତ୍ତରରେ ସୁପରିଣ୍ଟେଣ୍ଡେଣ୍ଟ ଟାଉନ ଶିକାଗୋର ଅଫିସରେ ସାକ୍ଷାତ କରିବାକୁ ଲେଖିଥିଲେ ।

ଟାଉନ ଜଣେ ଉନ୍ନତ ଶୀର୍ଣ୍ଣକାୟ ଲୋକ । ତାଙ୍କର ବୟସ ପ୍ରାୟ ପଚିଶ ବର୍ଷ । ତାଙ୍କ ଚକ୍ଷୁରୁ ଜ୍ୟୋତି ବାହାରୁଥିଲା ଓ ମୁହଁରେ ହସ ଲାଗି ରହିଥିଲା । ସେ ମଡ଼େଲଗୁଡ଼ିକ ପରୀକ୍ଷା କରି କହିଲେ, "ମିଷ୍ଟର ଓୟେଷ୍ଟିଙ୍ଗହାଉସ, ବୃଥା ସମୟ ନଷ୍ଟ କରିବା ଦରକାର ନାହିଁ । ମୁଁ ତୁମର ନକ୍ସାଗୁଡ଼ିକ ପରୀକ୍ଷା କରି ଦେଖିଛି । ଏ ଯନ୍ତ୍ରରେ ମୋର ବିଶ୍ୱାସ

ଜନ୍ମିଛୁ । ବର୍ତ୍ତମାନ ପାଇଁ ମୁଁ ଦୁଇଟି ଗାଡ଼ିଉଠା ଯନ୍ତ୍ର ଓ ଦୁଇଟି ଫ୍ରଗ ପାଇଁ ଅର୍ଡ଼ର ଦେଉଛୁ । ଯଦି ଏହା ଭଲ କାମ ଦିଏ, ତେବେ ଆହୁରି ଅର୍ଡ଼ର ଦିଆଯିବ ।"

ଜର୍ଜ ଆନନ୍ଦରେ ଅଧୀର ହୋଇ ପଡ଼ିଲା । ଏହି କାରବାରରେ ଦଶ ମିନିଟରୁ ବେଶି ସମୟ ଲାଗିଲା ନାହିଁ ।

ସୁପରିଣ୍ଟେଣ୍ଡେଣ୍ଟ ଟାଉନଙ୍କ ଅଫିସରୁ ବାହାରି ଆସିଲା ବେଳକୁ ଆନନ୍ଦରେ ତାର ପାଦ ଭୂଇଁରେ ଲାଗୁ ନ ଥାଏ । ତାର ଏହି ପ୍ରଥମ ସାଫଲ୍ୟ ପ୍ରଥମ ବିକ୍ରି ! ସଦର ରାସ୍ତାରେ ପହଞ୍ଚିଲାବେଳକୁ ତାର ବିଶ୍ବାସ ଜନ୍ମିଥିଲା ଯେ ବ୍ୟବସାୟରେ ସଫଳ ହେବାପାଇଁ ଆଦୌ କୌଣସି କୌଶଳର ଦରକାର ନାହିଁ ।

---

## ପାଞ୍ଚ

# ମାର୍ଗାରେଟ

ଏହାର ପରବର୍ତ୍ତୀ କେତେକ ମାସ ଜର୍ଜକୁ ବ୍ୟବସାୟ ସମ୍ପର୍କରେ ବହୁତ ବୁଲିବାକୁ ପଡ଼ିଥିଲା । ଶିକାଗୋ-ବର୍ଲିଂଟନ-ଏଣ୍ଡ-କୁଇନ୍ସ କମ୍ପାନୀଠାରୁ ଅର୍ଡ଼ର ପାଇବା ପରେ ଅନ୍ୟାନ୍ୟ ରେଲ କମ୍ପାନୀର କର୍ମକର୍ତ୍ତାଙ୍କ ସହିତ ସାକ୍ଷାତ ପାଇବାରେ ତାର ଆଦୌ ଅସୁବିଧା ହୋଇ ନ ଥିଲା । ସୁପରଇଣ୍ଟେଣ୍ଡେଣ୍ଟ ଟାଉନଙ୍କୁ ରେଲକମ୍ପାନୀମାନଙ୍କର କର୍ମକର୍ତ୍ତାମାନେ ଖାତିର କରୁଥିଲେ । ଉଇଲସ-ଓ୍ୱାଲ-ଏଣ୍ଡ ଓ୍ୱେଷ୍ଟିଂହାଉସ କମ୍ପାନୀର ଯନ୍ତ୍ର କିଣିବାକୁ ସେ ଅର୍ଡ଼ର ଦେଇଛନ୍ତି ଶୁଣି ଅନ୍ୟ ରେଲ-କମ୍ପାନୀମାନେ ଏଥିରେ ଆଗ୍ରହ ପ୍ରକାଶ କରିବାକୁ ଲାଗିଲେ ।

ଦିନକୁ ଦିନ ଏତେ ଅର୍ଡ଼ର ପହଞ୍ଚିଲା ଯେ ବେସେମର ଇସ୍ପାତ କାରଖାନା ଚୁକ୍ତିହିଁ ଅନୁସାରେ ଯନ୍ତ୍ର ତିଆରି କରି ଦେବାକୁ ଅକ୍ଷମ ହେଲା । ତେଣୁ ଜର୍ଜ ନିଉଜର୍ସିର ପମ୍ପଟନଠାରେ ଥିବା ଅନ୍ୟ ଏକ ଇସ୍ପାତ କମ୍ପାନୀସହ କଥାବାର୍ତ୍ତା ଚଳାଇ କେତେକ ଗାଡ଼ିଉଠା ଯନ୍ତ୍ର ଓ ପ୍ରଗ ତିଆରି କରାଇବାର ବ୍ୟବସ୍ଥା କଲା ।

ଦିନେ ସେ ନିଉଜର୍ସିର ଇସ୍ପାତ କାରଖାନାରୁ ଘରକୁ ଫେରୁଥିଲା । ନ୍ୟୁୟର୍କରେ ସେ ହଡ଼ସନ ରେଲକମ୍ପାନୀର ଗୋଟିଏ ଗାଡ଼ିରେ ଚଢ଼ିବାକୁ ଗଲା । ଗାଡ଼ିରେ ବହୁତ ଯାତ୍ରୀ ଥିଲେ । ଶେଷରେ ସେ ସବା ପଛ ଡବାରେ ପଶିଗଲା । ସେଥିରେ ଗୋଟିଏ ମାତ୍ର ସ୍ଥାନ ଖାଲି ଥିଲା । ସେ ସେହି ସ୍ଥାନଟି ଅଧିକାର କଲା । ତାହାର ପାଖ ସିଟ୍‌ରେ ଜଣେ ଅତି ସୁନ୍ଦରୀ ଯୁବତୀ ବସିଥିଲା ।

ଯୁବତୀର ବୟସ ପ୍ରାୟ ଊଣାଇଶ ବର୍ଷ । ତାର କେଶ ଘନକୃଷ୍ଣବର୍ଣ୍ଣ; ଦେହର ରଙ୍ଗ ଶୁଭ୍ର ଓ ଚକ୍ଷୁ ଦୁଇଟି ନୀଳ । ତାକୁ ଦେଖିଲାକ୍ଷଣି ଜର୍ଜର ମନଶ୍ଚକ୍ଷୁ ଆଗରେ ଗୋଟିଏ ମେଘଶୂନ୍ୟ ଶାରଦୀୟ ଆକାଶର ଛବି ଜାଗି ଉଠିଲା । ଏହି ଯୁବତୀ ସଙ୍ଗେ ଆଳାପ କରିବାକୁ ତାର ବଡ଼ ଇଚ୍ଛା ହେଉଥାଏ; ମାତ୍ର ସେ କାଳେ କିଛି ମନେ କରିବ ଏହି ଆଶଙ୍କାରେ ଜର୍ଜ ତାକୁ କିଛି ନକହି ଷ୍ଟୀମଇଞ୍ଜିନିୟରିଂ ବିଷୟକ ଖଣ୍ଡିଏ ବହି ଧରି ତାହାକୁ ପଢ଼ିବାର ଛଳନା କଲା ।

ଷ୍ଟେସନ ଛାଡ଼ିବାପରେ ରେଲଗାଡ଼ି ହଠାତ୍ ଗୋଟାଏ ବାଙ୍କ ବୁଲିଗଲା । ସେତିକବେଳେ ଏହି ଯୁବତୀ ଜର୍ଜ ଉପରେ ମୁହୂର୍ତ୍ତକ ପାଇଁ ଟଳି ପଡ଼ିଲା । ସେ ଲଜ୍ଜିତା ହୋଇ ଜର୍ଜକୁ ଏଥିପାଇଁ କ୍ଷମା ମାଗିଲା ।

ଟିକିଏ ହସି ଦେଇ ଜର୍ଜ କହିଲା, "ଏଥିରେ କ୍ଷମା ଦେବାର କଅଣ ଅଛି ? ଏ ବାଙ୍କଟା ବଡ଼ ଖରାପ । କେବେ ହେଲେ ରେଲକମ୍ପାନୀ ଏ ରାସ୍ତାକୁ ସିଧା କରିବାକୁ ବାଧ୍ୟ ହେବେ ।"

ଯୁବତୀ କହିଲା, "ଆପଣ ଏ ରେଲର ଚଳାଚଳ କଥା ଭଲରୂପେ ଜାଣନ୍ତି । ବୋଧହୁଏ ଏହି ରେଲରେ ଆପଣ ଅନେକ ଥର ଯିବା ଆସିବା କରନ୍ତି ।

ଜର୍ଜ ଉତ୍ତର କଲା, "ହଁ ମୋତେ ଟିକିଏ ବେଶୀ ରେଲଯାତ୍ରା କରିବାକୁ ହୁଏ । ରେଲ କମ୍ପାନୀମାନଙ୍କ ସହିତ ମୋ କାମର ସମ୍ବନ୍ଧ ଅଛି ।

"ବାଃ ଏତ ବଡ଼ ଆନନ୍ଦର କଥା ।"

ଅଳ୍ପ ସମୟ ଭିତରେ ଦୁହିଁଙ୍କ ମଧ୍ୟରେ ଅନେକ ବିଷୟରେ ଗଳ୍ପ ଚାଲିଲା । କଥା ପ୍ରସଙ୍ଗରେ ଜର୍ଜ ଆପଣାର ଉଦ୍ଭାବନ ବିଷୟ ଉତ୍ଥାପନ କରି ଯୁବତୀକୁ କହିଲା ଯେ ନିକଟ ଭବିଷ୍ୟତରେ ସବୁ ରେଲପଥରେ ତାର ଗାଡ଼ିରୁଦ୍ଧା ଯନ୍ତ୍ର ବ୍ୟବହୃତ ହେବ ବୋଲି ଆଶା କରାଯାଏ । ଯୁବତୀ ଅତି ଆଗ୍ରହରେ ସବୁ ଶୁଣିଲା ଓ ତାକୁ ଏହି ଉଦ୍ଭାବନ ବିଷୟରେ ଅନେକ ପ୍ରଶ୍ନ ପଚାରିଲା । ଜର୍ଜ ସେ ସବୁର ଉତ୍ତର ଦେଇ କହିଲା,

"ଜଣେ ଉଦ୍ଭାବକ ଭାବରେ ଜୀବନଯାପନ କରିବି ବୋଲି ମୋର ଆଶା ଅଛି ।"

ଯୁବତୀ ପଚାରିଲା, "ତାହାହେଲେ କଅଣ ଆପଣ ବଣିକ ଭାବରେ ରହିବାକୁ ଇଚ୍ଛା କରନ୍ତି ନାହିଁ ?

ଜର୍ଜ ଉତ୍ତର କଲା, "ନା, ଆଦୌ ନୁହେଁ । ମୋର ଅଭିପ୍ରାୟ ହେଉଛି, ନୂଆ ନୂଆ ଜିନିଷ ଉଦ୍ଭାବନ କରିବା, ବିକ୍ରି କରିବା ନୁହେଁ ।

ଯୁବତୀ କହିଲା, "ମୁଁ କୌଣସି ଉଦ୍ଭାବକଙ୍କୁ କେବେ ହେଲେ ଦେଖି ନାହିଁ ।ଆଚ୍ଛା, ଲୋକେ କାହିଁକି ଉଦ୍ଭାବକ ହେବା ପାଇଁ ଇଚ୍ଛା କରନ୍ତି ?"

ଜର୍ଜ କିଛି ସମୟ ଚିନ୍ତା କରି ଉତ୍ତର କଲା, "ମୋ ମତରେ ଯେଉଁ କାରଣରୁ କେହି କେହି ଚିତ୍ରକର ବା ବୈଜ୍ଞାନିକ ବା ସଙ୍ଗୀତଜ୍ଞ ହୁଅନ୍ତି, ଠିକ୍ ସେହି କାରଣରୁ କେହି କେହି ଉଦ୍ଭାବକ ହୁଅନ୍ତି । ଅର୍ଥ ଉପାର୍ଜନ କରିବା ଏହାର ମୁଖ୍ୟ ଉଦ୍ଦେଶ୍ୟ ନୁହେଁ । ମୋ କଥା ଦେଖନ୍ତୁ,ଚେଷ୍ଟା କଲେ ମଧ୍ୟ ମୁଁ କିଛି ଉଦ୍ଭାବନ ନ କରି ରହି ପାରିବି ନାହିଁ ।......"

ଜର୍ଜ ଆଉ କିଛି ନ କହି ରହିଗଲା । ଯୁବତୀଟି କହିଲା "ଆପଣଙ୍କ କଥାରେ ମୁଁ ଏକବାରେ ମୁଗ୍ଧ ହୋଇ ଯାଇଅଛି । କାହିଁକି ଲୋକେ ଉଦ୍ଭାବନ କରନ୍ତି, ମୋତେ ବୁଝାଇ ଦିଅନ୍ତୁ ।"

ଜର୍ଜ ପୁଣି କହିବାକୁ ଲାଗିଲା, "ମୋର ମନେ ହୁଏ, କେହି କେହି ଉଦ୍ଭାବନୀ ଶକ୍ତି ନେଇ ଜନ୍ମ ହୋଇଥାନ୍ତି । ମନେକର, କେତେଗୁଡିଏ ଘୋଡ଼ା ଲଙ୍ଗଳ ଟାଣି ହଳ କରନ୍ତି ବୋଲି ଭାବ ନିଶ୍ଚିନ୍ତ ହୋଇ ରହିବେ । ସେମାନେ ଭାବନ୍ତି—ଏହିପରି ହଳ ହୁଏ ଏବଂ ଚିରକାଳ ଏହିପରି ହେଉଥିବ । କିନ୍ତୁ ଜଣେ ଉଦ୍ଭାବକ ଠିକ୍ ଏହି ଘଟଣାଟିକୁ ଭିନ୍ନ ଦୃଷ୍ଟିରେ ଦେଖିବ । ଯାହା ଅଛି ଅବା ଯାହା ହେଉଛି ସେଥିକରେ ସେ ସନ୍ତୁଷ୍ଟ ରହି ପାରିବ ନାହିଁ । ଘୋଡ଼ାମାନେ ଲଙ୍ଗଳ ଟାଣୁଥିବାର ଦେଖି ସେ ଭାବିବ, ହଳ କରିବାପାଇଁ କଅଣ ଏହାଠାରୁ ସହଜ ଉପାୟ ନାହିଁ ?

କେଉଁ ଉପାୟରେ ଆହୁରି ଭଲ ହଳ ହୋଇପାରିବ । ଏହା ସଙ୍ଗେ ସଙ୍ଗେ ସେ ହଳର ଗୋଟିଏ ଉନ୍ନତତର ଉପାୟ ଚିନ୍ତା କରିବ । ମୋ କଥା ପାରିଲେ ତ । ଉଦ୍ଭାବକ ହେବା ହେଉଛି ମନର ଗୋଟାଏ ଅବସ୍ଥା—ଜଗତର ବିଭିନ୍ନ ବସ୍ତୁକୁ ଦେଖିବାର ଗୋଟାଏ ଭିନ୍ନ ଦୃଷ୍ଟି କୋଣ ।’’

ଏହି କଥା ଶୁଣି ଯୁବତୀଟି ହସି ହସି କହିଲା, “ଆପଣଙ୍କର ବ୍ୟାଖ୍ୟା ବାସ୍ତବିକ ବିଚିତ୍ର । ଆପଣଙ୍କ କଥାରୁ ମୁଁ ବୁଝୁଛି ଯେ ଉଦ୍ଭାବକମାନେ ହେଉଛନ୍ତି, ଅଳସପ୍ରକୃତିର ଲୋକ ।’’

ମୁହଁରେ ଟିକିଏ ହସ ଫୁଟାଇ ଜର୍ଜ କହିଲା, “ଗୋଟାଏ ଅର୍ଥରେ ସେମାନେ ଅଳସ ପ୍ରକୃତିର ଲୋକ ବୋଲି ମୁଁ ମଧ୍ୟ କହିପାରେ । କୌଣସି ପଦାର୍ଥର ଅପବ୍ୟୟ ସେମାନେ ସହି ପାରନ୍ତି ନାହିଁ । ସମୟ ଓ ଶକ୍ତିର ଅପବ୍ୟୟ ମଧ୍ୟ ସେମାନଙ୍କର ଅସହ୍ୟ । ମୁଁ ବାଜି ରଖି କହିପାରେ ଯେ ସୃଷ୍ଟିର ଆରମ୍ଭରୁ ଯେତେ ଉଦ୍ଭାବନ ହୋଇଛି, ସେ ସବୁ ଏହି ଅଳସ ପ୍ରକୃତିର ଲୋକମାନେ ହିଁ କରିଅଛନ୍ତି ।’’

ଯୁବତୀଟି ଗମ୍ଭୀର ଭାବରେ କହିଲା, “ବାସ୍ତବରେ ଉଦ୍ଭାବକମାନେ ଲୋକସମାଜକୁ ଯଥେଷ୍ଟ ସାହାଯ୍ୟ କରିଥାନ୍ତି । ଆପଣ ଯେ ମନୁଷ୍ୟ ସମାଜର ଜୀବନଧାରାକୁ ସୁଗମ କରିବାକୁ ଏତେ ଚେଷ୍ଟା କରୁଛନ୍ତି, ସେଥିରୁ ମୋର ମନେ ହୁଏ ଯେ, ଏଥିରେ ମହା ଆନନ୍ଦ ଅଛି ।’’

ଜର୍ଜ ଉତ୍ତର କଲା, “ହଁ, ସେ ହେଉଛି ସନ୍ତୋଷର ଗୋଟାଏ ଅଙ୍ଗ । ଅବଶ୍ୟ ମୁଁ ଏ ପର୍ଯ୍ୟନ୍ତ କୌଣସି ବଡ଼ ଉଦ୍ଭାବନ କରି ପାରି-ନାହିଁ, କିନ୍ତୁ ପ୍ରତ୍ୟେକ ଉଦ୍ଭାବକର ଅଭିଳାଷ ଥାଏ ଯେ ତାର ଉଦ୍ଭାବନ ଫଳରେ, ଯେପରି ମାନବର ଜୀବନଯାତ୍ରା ପଦ୍ଧତିରେ ଗୋଟିଏ ବିପ୍ଳବର ସୃଷ୍ଟି ହୋଇପାରିବ ।”

ଉଭୟଙ୍କ ମଧ୍ୟରେ କଥାବାର୍ତ୍ତା କିଛି ସମୟପାଇଁ ବନ୍ଦ ହୋଇଗଲା । ଜଣେ ଅପରିଚିତା ଯୁବତୀକୁ ସେ ନିଜର ଉଦ୍ଭାବନ ବିଷୟରେ ସବୁ କଥା କହିସାରିଛି, କିନ୍ତୁ ତା ସମ୍ବନ୍ଧରେ କିଛି ମାତ୍ର ଜାଣି ନାହିଁ, ଏହା ଭାବି ଜର୍ଜ ଚମକି ପଡ଼ିଲା । ଏପରିକି ସେ ଦୁହେଁ କେହି କାହାର ନାମ ପର୍ଯ୍ୟନ୍ତ

ଜାଣି ନଥିଲେ । ତେଣୁ ଜର୍ଜ ଆଗେ ଆପଣାର ପରିଚୟ ପ୍ରକାଶ କଲା । ତହୁଁ ଯୁବତୀଟି କହିଲା ଯେ ତାର ନାମ ମାର୍ଗାରେଟ ଏର୍ସିକିନ ଓ୍ୟାକର । ସେ ନ୍ୟୁୟର୍କର ରକ୍‌ସବେରିରେ ରହେ ଓ କଙ୍କସଟନର ଜଣେ ବନ୍ଧୁଙ୍କ ଘରକୁ ଯାଉଛି ।

ଯୁବତୀ ନିଜର ଖାଦ୍ୟ ନେଇଥିଲା । ସେ ଥଳୀରୁ ସାଣ୍ଡୱିଇଚ, ଫଳ ଓ ରୁଟି ବାହାର କରି ଜର୍ଜକୁ କିଛି ଦେଲା । ଦୁହେଁ ଖାଇଲେ । ଜର୍ଜ କହିଲା, "ନ୍ୟୁୟର୍କରେ ଗାଡିରେ ବସିବା ପୂର୍ବରୁ ମୁଁ ଉଦର ପୂର୍ତ୍ତି କରି ଖାଇଥିଲି । ମାତ୍ର ଏଗୁଡ଼ିକ ଏପରି ସୁସ୍ୱାଦୁ ଓ ରୁଚିକର ଯେ ମୁଁ ଏତେ-ଗୁଡ଼ିଏ ପୁଣି ଖାଇଦେଲି ।"

ଗାଡ଼ି ରାଇନବେକ ଷ୍ଟେସନରେ ପହଞ୍ଚିଲା । ଯୁବତୀ ଏହିଠାରୁ ଓହ୍ଲାଇ କଙ୍ଗସଟନ ଯିବାର କଥା । ଜର୍ଜ ପଚାରିଲା, "ଆପଣଙ୍କ ସଙ୍ଗେ ପୁଣି ଦେଖା ହେବ କି ?" ଏହି ପ୍ରଶ୍ନରେ ଯୁବତୀର ମୁଖମଣ୍ଡଳ ଆରକ୍ତ ହୋଇଗଲା । ସେ ମସ୍ତକ ସଞ୍ଚାଳନ ଦ୍ୱାରା ସମ୍ମତି ପ୍ରକାଶ କରି ନିଜର ଠିକଣା କହିଦେଲା । ଜର୍ଜ ନିଜର ନୋଟବହିରେ ଠିକଣାଟି ଲେଖି ରଖିଲା ।

ସେଦିନ ସନ୍ଧ୍ୟାବେଳକୁ ଜର୍ଜ ଶେନେକଟାଡ଼ିରେ ଘରେ ପହଞ୍ଚିଲା । ତାର ସ୍ଫୁର୍ତ୍ତି ଓ ଆନନ୍ଦ ଦେଖି ମାଆ ସେଥିର କାରଣ ପଚାରିଲେ । ଜର୍ଜ କହିଲା, "ମୋର ଆନନ୍ଦର କାରଣ ଅଛି । ମୁଁ ଆଜି ଗୋଟିଏ ବାଳିକା ସହିତ କଥାବାର୍ତ୍ତା ହୋଇଛି । ତାକୁ ହିଁ ମୁଁ ବାହାହେବାକୁ ଭାବୁଛି ।"

ଆସନ୍ତା କେତେ ସପ୍ତାହ ମଧ୍ୟରେ ଜର୍ଜ କଙ୍ଗସଟନ ଯାଇ ଅନେକ ଥର ମାର୍ଗାରେଟ ସଙ୍ଗେ ଦେଖାକଲା । ଉଭୟଙ୍କର ସାକ୍ଷାତ ପୂର୍ବରୁ ଜର୍ଜ ବୁଲିବାକୁ ଭଲ ପାଉ ନଥିଲା । କାରଣ ଏହାଦ୍ୱାରା ସେ କାରଖାନାଠାରୁ ଦୂରରେ ରହୁଥିଲା । କିନ୍ତୁ ଏବେ ସେ ମନେ କଲା ଯେ ଏହା ଦ୍ୱାରା ଅନେକ ସୁବିଧା ମଧ୍ୟ ଅଛି । ଗସ୍ତରେ ଯିବାକୁ ହେଉଥିବାରୁ ସିନା ସେ ମାର୍ଗରେଟକୁ ଦେଖିବାର ସୁଯୋଗ ପାଉଥିଲା । କେବଳ ଶେନେ-କଟାଡ଼ିରେ ତାର କାର୍ଯ୍ୟ ସୀମାବଦ୍ଧ ଥିଲେ ଏହି ସୁଯୋଗ ତା ଭାଗ୍ୟରେ ପ୍ରାପ୍ତ ଘଟିନଥାନ୍ତା ।

ମାର୍ଗାରେଟ ରକ୍‌ସବେଶକୁ ଫେରି ଆସିବାରୁ ଜର୍ଜ ସେଠାକୁ ଯାଇ ତାର ପିତାମାତାଙ୍କ ସଙ୍ଗେ ସାକ୍ଷାତ କଲି । ତୃତୀୟଥର ସାକ୍ଷାତବେଳେ ସେ ଗୋଟିଏ ଅଳ୍ପ ମୂଲ୍ୟର ମୁଦି ନେଇ ଯାଇଥିଲି ।

ସେଦିନ ସନ୍ଧ୍ୟାବେଳେ ଜର୍ଜ ଓ ମାର୍ଗାରେଟ ଦୁହେଁଯାକ ଗୋଟିଏ ଖୋଲି ବାରଣ୍ଡାରେ ବସିଥିଲେ । ପାଗ ଟିକଏ ଥଣ୍ଡା ଥିଲି; ମାତ୍ର ଆକାଶ ପରିଷ୍କାର ଥିବାରୁ ଉଜ୍ଜ୍ୱଳ ଚନ୍ଦ୍ର କିରଣ ପଡ଼ୁଥିଲି ।

ଜର୍ଜ ରହି ରହି କହିଲି, "ମାର୍ଗାରେଟ, ତୁମ୍ଭଙ୍କୁ କିଛି ସାମାନ୍ୟ ଉପହାର ଦେବାକୁ ଅଣିଛି ।" ଏହା କହି ସେ ପକେଟରୁ ମୁଦିଟି ବାହାର କଲି । ସେତେବେଳକୁ ତାର ଛାତି ଦୁକ୍ ଦୁକ୍ ହେଉଥାଏ । ସେ ସାହସ ବାନ୍ଧି କହିଲି, "ଏଇଟି ମୋର ବାଗ୍‌ଦାନର ଚିହ୍ନ । ତୁମ୍ଭେ ଏହାକୁ ଗ୍ରହଣ କରି ପିନ୍ଧିବ ତ ?"

ମାର୍ଗାରେଟର ଚକ୍ଷୁ ଉଜ୍ଜ୍ୱଳ ହୋଇ ଉଠିଲି । ସେ ସ୍ୱୀକୃତି ଜଣାଇ ମୁଦିଟିକୁ ନିଜ ଆଙ୍ଗୁଳିରେ ପିନ୍ଧିଲି ।

ଏହାପରେ ଜର୍ଜ ଲଜ୍ଜିତ ଭାବରେ କହିଲି, "ବର୍ତ୍ତମାନ ତୁମ୍ଭଙ୍କୁ ଦେଲାଭଳି ମୋର ବିଶେଷ କିଛି ନାହିଁ । କମ୍ପାନୀର ପ୍ରକୃତରେ ଲାଭ ହେବାକୁ ଆହୁରି କିଛିଦିନ ଲାଗିଯିବ । ମୋର ବର୍ତ୍ତମାନ ଘରଟିଏ କିମ୍ବା ସୁନ୍ଦର ଆସବାବ୍‌ପତ୍ର କିଛି ନାହିଁ । ମାତ୍ର ମୋର ଭବିଷ୍ୟତ ଉଜ୍ଜ୍ୱଳ ବୋଲି ମୁଁ ବିଶ୍ୱାସ କରେଁ । ମୋର ପତ୍ନୀରୂପେ ତୁମ୍ଭେ ସେହି ଭବିଷ୍ୟତର ସମଭାଗିନୀ ହେଲେ ମୁଁ ସୁଖୀ ହେବି, ଗର୍ବ ଅନୁଭବ କରିବି ।"

ମାର୍ଗାରେଟ କୋମଳ ସ୍ୱରରେ କହିଲି, "ହଁ, ନିଶ୍ଚୟ । ମୁଁ ତୁମ୍ଭଙ୍କୁ ବିବାହ କରିବାକୁ ଇଚ୍ଛାକରେ ।"

୧୮୬୭ ମସିହାର ଅଗଷ୍ଟ ମାସ ୮ ତାରିଖ ଦିନ ନ୍ୟୁୟର୍କରେ ରକ୍‌ସବେରିଠାରେ ଜର୍ଜ ଓ ମାର୍ଗାରେଟଙ୍କର ପରିଣୟ କନ୍ୟାପିତାଙ୍କ ଗୃହରେ ସମ୍ପନ୍ନ ହେଲି । ଜର୍ଜ ବ୍ୟବସାୟ ସମ୍ପର୍କରେ ଶିକାଗୋ ଯିବାର ଥିଲି । ତେଣୁ ନବଦମ୍ପତିଙ୍କ ପକ୍ଷରେ ବେଶିଦିନପାଇଁ ମଧୁଚନ୍ଦ୍ରିକା ଉପଭୋଗ

କରିବାର ଅବସର ନ ଥିଲା । ନିଜର ଗୋଟିଏ ଘର ଆପ୍ରେ୍ଚ ଜନ କରିବା ନବଦମ୍ପତିଙ୍କ ପକ୍ଷରେ ସମ୍ଭବପର ନ ଥିବାରୁ ଜର୍ଜର ପିତାମାତା ସେମାନଙ୍କୁ ନିଜ ଘରେ ରହିବାକୁ ବିଶେଷ ଅନୁରୋଧ କଲେ ଏବଂ ତଦନୁସାରେ ଜର୍ଜ ନବ ପରିଣୀତା ପତ୍ନୀଙ୍କ ସହିତ ପିତାଙ୍କ ଗୃହରେ ବାସ କଲା ।

ଶିକାଗୋକୁ ଯିବା ନିମନ୍ତେ ଜର୍ଜ ଗାଡ଼ିରେ ବସିଲା । ମାର୍ଗାରେଟ୍‌କୁ ଶେନେକଟାଡ଼ିରେ ଶାଶୁଶ୍ୱଶୁରଙ୍କ ନିକଟରେ ରହିବାକୁ ହେଲା ଶିକାଗୋରେ ଦୁଇଟି ଗ୍ରେଟ ରେଲ କମ୍ପାନୀର କର୍ତ୍ତାଙ୍କ ସଙ୍ଗେ ନିଜର ସାକ୍ଷାତ ହେଲା । କେତୋଟି ଗାଡ଼ିଅଟା ଯନ୍ତ୍ରର ଅର୍ଡ଼ର ପାଇବାରେ ତାକୁ କିଛି କଷ୍ଟ ସ୍ୱୀକାର କରିବାକୁ ପଡ଼ି ନ ଥିଲା । ଏହାପରେ ତାର ଇଚ୍ଛା ଯେ ସେ ଶେନେକଟାଡ଼ିକୁ ଫେରି ଆସିବ । କିନ୍ତୁ ଶେନେକଟାଡ଼ିକୁ ଯିବାପାଇଁ ଆସନ୍ତା ତିନି ଘଣ୍ଟା ମଧ୍ୟରେ କୌଣସି ଗାଡ଼ି ନ ଥିଲା । ତେଣୁ ତାର ଗାଡ଼ିଅଟାଯନ୍ତ୍ର ଓ ପ୍ରଂଗ କପରି କାମ ଦେଉଛି ବୁଝିବାପାଇଁ ସେ ଶିକାଗୋ-ସ୍ଥିତ ସୁପରିଣ୍ଟେଣ୍ଡେଣ୍ଟ ମିଷ୍ଟର ଟାଉନଙ୍କ ସହିତ ଦେଖାକରିବାକୁ ସ୍ଥିର କଲା ।

ମିଷ୍ଟର ଟାଉନ ଜର୍ଜପ୍ରତି ବନ୍ଧୁତ୍ୱ ବ୍ୟବହାର ଦେଖାଇଲେ ସତ; ମାତ୍ର ଜର୍ଜ ବୁଝିପାରିଲା ଯେ ସେ ବଡ଼ ଚିନ୍ତାକୁଳ । ଏଥିର କିଛି କାରଣ ଅନୁମାନ କରି ନ ପାରି ସେ ପଚାରିଲା, "ମିଷ୍ଟର ଟାଉନ, ଆପଣଙ୍କର କିଛି ଅସୁବିଧା ଘଟିଛି କି ? ଆମେ ଯେଉଁସବୁ ଯନ୍ତ୍ର ଦେଇଥିଲୁ ସେସବୁ କଣ ସନ୍ତୋଷଜନକ ହେଲା ନାହିଁ ?"

ମିଷ୍ଟର ଟାଉନ କହିଲେ, "ନା, ନା । ଅପଣଙ୍କର ଯନ୍ତ୍ରଗୁଡ଼ିକ ବେଶ୍ ସନ୍ତୋଷଜନକ । କିନ୍ତୁ ଆମର ଅନ୍ୟ କେତେକ ସମସ୍ୟା ଅଛି । ସେସବୁ ଏହିପରି ସହଜରେ ସମାଧାନ ହୋଇ ପାରନ୍ତା କି ?

ଜର୍ଜ—କି ସମସ୍ୟା; କହନ୍ତୁ ।

ଟାଉନ—ଏଇ ବ୍ରେକଦେବା ସମସ୍ୟା; ଅର୍ଥାତ କିପରି ରେଲଗାଡ଼ିକୁ ହଠାତ୍ ଅଟକାଇବାକୁ ହେବ ?

ଜର୍ଜ—ମୁଁ ଆପଣଙ୍କ ସମସ୍ୟାଟିକୁ ଭଲରୂପେ ବୁଝି ପାରୁନାହିଁ ।

ମିଷ୍ଟର ଟାଉନ କେତେଗୁଡ଼ିଏ କାଗଜ ଡେସ୍କରୁ ଉଠାଇ ନେଇ କହିଲେ, "ଏଇ ଦେଖନ୍ତୁ । ଆମର ଶିକାଗୋ-ବର୍ଲିଂଟନ-କୁଇନ୍‌ସି ରେଲ ପଥରେ ଘଟିଥିବା ଦୁର୍ଘଟନାମାନଙ୍କର ରିପୋର୍ଟ ଏଥିରେ ଅଛି । ମାସକ ମଧ୍ୟରେ ପାଞ୍ଚୋଟି ଦୁର୍ଘଟନା ! ସୌଭାଗ୍ୟର କଥା, ଏହି ଦୁର୍ଘଟନା-ମାନଙ୍କରେ କେହି ପ୍ରାଣ ହରାଇ ନାହାନ୍ତି, କେବଳ ତିନିଜଣ ଆଘାତପ୍ରାପ୍ତ ହୋଇଅଛନ୍ତି । ମୋ କହିବାର ଉଦ୍ଦେଶ୍ୟ ବୁଝନ୍ତୁ । ହୁଏ ତ କୌଣସି ଗୁରୁତର ଦୁର୍ଘଟନା ଘଟିପାରେ । ସେତେବେଳେ ଅବସ୍ଥା କି ସାଙ୍ଘାତିକ ହେବ ?"

ଜର୍ଜ ମନୋଯୋଗ ଦେଇ ଟାଉନଙ୍କ କଥା ଶୁଣୁଥିଲା । ସେ କହିଲା, "ମିଷ୍ଟର ଟାଉନ, ଦୁର୍ଘଟନା ଗୁଡ଼ିକ କି ପ୍ରକାର ?"

ମିଷ୍ଟର ଟାଉନ ଉତ୍ତରକଲେ, "ଦୁର୍ଘଟନା ନାନା ପ୍ରକାରର । ଏହି ପାଞ୍ଚୋଟି ଦୁର୍ଘଟନା ମଧ୍ୟରୁ ଦୁଓଟିରେ ଗାଡ଼ି ଲାଇନଚ୍ୟୁତ ହୋଇଥିଲା ଦୁଇଟି ଘଟନାରେ ଡବାଡବା ମଧ୍ୟରେ ସାମାନ୍ୟ ସଙ୍ଘର୍ଷ ଘଟିଥିଲା । ଅନ୍ୟ ଘଟଣାରେ ଇଞ୍ଜିନଚାଳକ ଗୋଟିଏ ବଙ୍କପଥ ଉପରେ ରେଲଗାଡ଼ି ଚଳାଇବାବେଳେ ଗାଡ଼ିର ଗତି କମାଇ ନ ପାରିବାରୁ ଜଣେ ଯାତ୍ରୀ ନିଜ ସିଟ୍‌ରୁ ଛିଟିକଯାଇ ତଳେ ପଡ଼ି ଯାଇଥିଲେ । ଯଦି ଆମର ରେଲ ଗାଡ଼ିରେ ଭଲ ବ୍ରେକର ବ୍ୟବସ୍ଥା ଥାଆନ୍ତା ତେବେ ଏ ସବୁ ଦୁର୍ଘଟନା ଆଦୌ ଘଟି ନ ଥାନ୍ତା ।

ଜର୍ଜର ଆଗ୍ରହ ବୃଦ୍ଧି ପାଇଲା । ସେ ପଚାରିଲା, ଅନ୍ୟାନ୍ୟ ରେଲ କମ୍ପାନୀମାନେ କଅଣ ଏହି ସମସ୍ୟାର ସମ୍ମୁଖୀନ ହୁଅନ୍ତି ?"

"ନିଶ୍ଚୟ, ସମସ୍ତେ । ସବୁ କମ୍ପାନୀ ଏହି ସମସ୍ୟାରେ ଜଡ଼ିତ । ରେଲକମ୍ପାନୀମାନେ କେହି ଠିକଏ ହେଲେ ଚେଷ୍ଟା କରୁ ନାହାନ୍ତି ଯେ କିପରି ଆବଶ୍ୟକବେଳେ ନିଶ୍ଚିନ୍ତ ଭାବରେ ଗାଡ଼ିର ଗତି ଊଣା କରି ହେବ ବା ବନ୍ଦ କରି ହେବ । ଆମେ ବର୍ଷ ବର୍ଷ ହେଲା ଏଇ ବିଷୟ ଚିନ୍ତା କରି ଆସୁଛୁ । ପାଖକୁ ଆସନ୍ତୁ । ମୁଁ ଆପଣଙ୍କୁ ଗୋଟାଏ କଥା ଦେଖାଇ ଦେବି ।"

ଏହା କହି ମିଷ୍ଟର ଟାଉନ ଟେବୁଲ ଉପରେ ଆମେରିକା ଯୁକ୍ତରାଷ୍ଟ୍ରର ଗୋଟିଏ ବୃହତ୍ ମାନଚିତ୍ର ପକାଇ ଦେଲେ । ଏଥିରେ ଦେହର ଶିରା ପ୍ରଶିରା ପରି ଅନେକ କଳା ଗାର ଦେଖା ଯାଉଥିଲା । ଜର୍ଜ ପାଖକୁ ଯାଇ ଏହି ମାନଚିତ୍ରକୁ ଚାହିଁଲା ।

ମିଷ୍ଟର ଟାଉନ କହିଲେ, "ଏହି ମାନଚିତ୍ରରେ ଦେଶର ସବୁ ରେଲପଥ ଦେଖାଇ ଦିଆ ଯାଇଅଛି । ଦୁଇ ବର୍ଷ ପୂର୍ବେ ଗୃହଯୁଦ୍ଧ ଶେଷ ହେଲା ବେଳକୁ ଆମ ଦେଶରେ ପ୍ରାୟ ପଞ୍ଚତିରିଶ ହଜାର ମାଇଲ ରେଲପଥ ଥିଲା । ଆଜି ପ୍ରାୟ ପଚାଶ ହଜାର ମାଇଲ ହେଲାଣି । ଆପଣ ଅବଶ୍ୟ ଜାଣିଥିବେ ଯେ ୟୁନିଅନ ପାସିଫିକ କମ୍ପାନୀ ଆମେରିକା ମହାଦେଶର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ଗୋଟିଏ ରେଲପଥ ନିର୍ମାଣ କରୁଅଛନ୍ତି । ଏହି ହିସାବରେ ନୂଆ ରେଲପଥ ତିଆରି ଚାଲିଲେ ଆଉ କୋଡ଼ିଏ ବର୍ଷ ଭିତରେ ଆମ ଦେଶରେ ରେଲ ପଥର ଦୈର୍ଘ୍ୟ ହୋଇଯିବ ଏକଲକ୍ଷ ପଚାଶ ହଜାର ମାଇଲ ।

ଜର୍ଜ ନୀରବ ଭାବରେ ଏଥିରେ ଏକମତ ବୋଲି ଜଣାଇଲା ।

ଏହାପରେ ମିଷ୍ଟର ଟାଉନ ଦୃଢ଼ ସ୍ୱରରେ କହିବାକୁ ଲାଗିଲେ । ତାଙ୍କ ତୁଣ୍ଡରୁ ଅବାରିତ ଧାରାରେ କଥାର ସ୍ରୋତ ଛୁଟୁଥାଏ । ସେ କହିଲେ, ରେଲପଥକୁ ଆମେ ଲୌହର ନଦୀ କହିପାରୁଁ । ଏହି ରେଲପଥର ପ୍ରସାଦରେ ଆମ ଦେଶ ଦୁଧ ଓ ମହୁରେ ଭରି ଯିବ । ଏହାଦ୍ୱାରା ଆମ ଦେଶର ସୀମା ବିସ୍ତୃତ ଲାଭ କରିବ । ଔପନିବେଶିକମାନେ ଆସି ପଶ୍ଚିମ ଆମେରିକାରେ ବସବାସ କରିବେ । ରେଲପଥ ହେଲେ ଶିଳ୍ପର ବିକାଶ ହେବ, ବାଣିଜ୍ୟର ଉନ୍ନତି ଘଟିବ । କେବଳ ସେତିକି ନୁହେଁ ରେଲପଥର ବିସ୍ତାର ଫଳରେ ଆମେ ପୃଥିବୀର ଶ୍ରେଷ୍ଠ ଜାତି ରୂପେ ପରିଗଣିତ ହୋଇ ପାରିବା ।"

ମିଷ୍ଟର ଟାଉନ ଭବିଷ୍ୟତର ଯେଉଁ ଚିତ୍ର ଦେଲେ, ସେଥିରେ ଜର୍ଜ ଏକବାରେ ବିହ୍ୱଳ ହୋଇଗଲା । ସେ ମନେ ମନେ ଦେଶର କେତେ ନଗରର କଳ୍ପନା କରିଗଲା । ବିପୁଳ ପରିମାଣର ଶିଳ୍ପଜାତ ଦ୍ରବ୍ୟ ଓ କଞ୍ଚାମାଲ ରେଲଗାଡ଼ିମାନଙ୍କରେ ଲଦା ହୋଇ ରେଲପଥ ଉପରେ

ଗତି କରୁଥିବାର ଦୃଶ୍ୟ ତାର ଆଖି ଆଗରେ ଭାସି ଉଠିଲା । ଦେଶର ସବୁଆଡ଼େ ରେଲପଥ ବିସ୍ତୃତ ହୋଇଥିଲା ପରି ତାକୁ ବୋଧ ହେଲା । ରୁକ୍ଷ ପ୍ରେଇରୀପ୍ରାନ୍ତର ଉପରେ ସହସ୍ର ସହସ୍ର ନରନାରୀଙ୍କୁ ବକ୍ଷରେ ଧାରଣ କରି ରେଲଗାଡ଼ି ଗତି କରୁଥିବା ଦୃଶ୍ୟ ସେ କଳ୍ପନା-ଚକ୍ଷୁରେ ଦେଖିପାରିଲା । ଏ ସ୍ୱପ୍ନ ଏକ ରୋମାଞ୍ଚକର ସ୍ୱପ୍ନ । ଦିନେ ଏହି ସ୍ୱପ୍ନ ନିଶ୍ଚୟ ବାସ୍ତବତାରେ ପରିଣତ ହେବ ।

ଶେଷରେ ମିଷ୍ଟର ଟାଉନ ବିଷଣ୍ଣ ଭାବରେ କହିଲେ, "ରେଲଚଳାଚଳର ଏତେ ବିରାଟ ଭବିଷ୍ୟତ ସତ୍ତ୍ୱେ ଯଦି ରେଲଗାଡ଼ିକୁ ନିରାପଦରେ ଇଚ୍ଛାନୁସାରେ ବନ୍ଦ କରାଯାଇ ନ ପାରେ ତେବେ ସବୁ ବୃଥା ହୋଇଯିବ ।

ରେଲଗାଡ଼ି ଷ୍ଟେସନରେ ପହଞ୍ଚିବା ଆଗରୁ ବ୍ରେକମାନ ବହୁ କଷ୍ଟରେ ଗୋଟାଏ ଚକକୁ ହାତରେ ଘୂରାଇବାର ଦୃଶ୍ୟ ଏଥି ପୂର୍ବରୁ ଜର୍ଜ ଦେଖିଥିଲା; ମାତ୍ର କିପରି ରେଲଗାଡ଼ିରେ ବ୍ରେକ ଦିଆଯାଏ, ସେ ସମ୍ବନ୍ଧରେ ତାର କିଛି ଧାରଣା ନ ଥିଲା ।

ରେଲଗାଡ଼ିର ଗତି କମାଇବାକୁ ବା ବନ୍ଦ କରିବାକୁ କି ପ୍ରକାର ବ୍ରେକର ବ୍ୟବସ୍ଥା ଅଛି, ସେ ବିଷୟରେ ଜର୍ଜ ଅନେକ ପ୍ରଶ୍ନ ପଚାରିଲା । ମିଷ୍ଟର ଟାଉନ୍‌ଙ୍କ ଉତ୍ତରରୁ ସେ ସାମାନ୍ୟ କେତୋଟି ମିନିଟ ମଧ୍ୟରେ ରେଲ୍ ଚଳାଚଳ ବିଷୟରେ ଅନେକ ନୂତନ ତଥ୍ୟ ଜାଣି ପାରିଲା ।

ରେଲଗାଡ଼ିର ଗତି କମାଇବା ବା ବନ୍ଦ କରିବା ପାଇଁ ଏକମାତ୍ର ଉପାୟ ଥିଲା ହାତର ଶକ୍ତି ପ୍ରୟୋଗ କରିବା । ଏ ଉପାୟଟି ବହୁଳ ଶ୍ରମସାଧ୍ୟ ଓ ବିପଜ୍ଜନକ । ଗୋଟିଏ ଗୋଟିଏ ରେଲଗାଡ଼ିରେ ଚାରି-ପାଞ୍ଚୋଟି ଡବା ରହୁଥିଲା । ପ୍ରତି ଦୁଇ ଡବାର ମଝିରେ ଜଣେ ବ୍ରେକ-ମ୍ୟାନ ଛିଡ଼ା ହୋଇ ରହିଥାଏ । ଗାଡ଼ି ଯେଉଁଠାରେ ରହିବାର କଥା ସେଠାରୁ ପ୍ରାୟ ଅଧ ମାଇଲ ଦୂରରୁ ଇଞ୍ଜିନଚାଳକ ଇଞ୍ଜିନର ସିଟି ଶବ୍ଦ ଦ୍ୱାରା ବ୍ରେକଦେବାକୁ ସଙ୍କେତ ଦିଏ । ତହୁଁ ବ୍ରେକମ୍ୟାନ ଭୂମି ସହିତ ସମାନ୍ତର ଭାବରେ ଅବସ୍ଥିତ ଗୋଟିଏ ଚକକୁ ହାତରେ ବୁଲାଏ । ଏହା ଫଳରେ ବ୍ରେକଶୁ ସଙ୍ଗେ ଲାଗିଥିବା ଗୋଟିଏ ଜଞ୍ଜିର ଟାଣି ହୋଇ-ଯାଏ ଓ ବ୍ରେକଶୁ ଡବାର ଚକରେ ଲାଗିଯାଏ । ଯେତେବେଳେ ବ୍ରେକଶୁ

ଚକ ସହିତ ସଂଲଗ୍ନ ହୋଇଯାଏ ସେତେବେଳେ ବ୍ରେକମାନ ପ୍ଲାଟଫର୍ମ ଉପରକୁ ଡେଇଁ ପଡ଼େ ଏବଂ ଅନ୍ୟ ଦୁଇଟି ଗାଡ଼ିର ମଝିକୁ ଯାଇ ପୁଣି ସେହିପରି କରେ ।

ଅଧିକାଂଶ ବ୍ରେକମାନ ଏହି କାମ କରିବାରେ ଖୁବ୍ ପାରଙ୍ଗମ ଥିଲେ । କୌଣସି ଗାଡ଼ିରେ ଯେତେ ବ୍ରେକମାନ ଥାନ୍ତି ସେମାନେ ସମସ୍ତେ ଏକ ସମୟରେ ବ୍ରେକ ଦେବାକୁ ଚେଷ୍ଟା କରନ୍ତି । ତାହାହେଲେ ସବୁ ଡବାର ଗତି ଆସ୍ତେ ଆସ୍ତେ କମି ବନ୍ଦ ହୋଇଯାଏ । ସେମାନେ ଯେତେ ପାରଙ୍ଗମ ହେଲେ ସୁଦ୍ଧା କୌଣସି ଦୁଇଟି ଡବାର ବ୍ରେକ ଠିକ୍ ଏକା ସମୟରେ ସମାନ ଭାବରେ ଦେଇ ହୁଏ ନାହିଁ । ଏହା ଫଳରେ ଗୋଟିଏ ଡବାର ଅନ୍ୟ ଡବା ସହିତ ଧକ୍କା ହୋଇଯାଏ ।

ଯାତ୍ରୀଗାଡ଼ି ଅପେକ୍ଷା ମାଲ ଗାଡ଼ିରେ ବ୍ରେକ ଦେବା ଆହୁରି କଠିନ ବ୍ୟାପାର ଥିଲା । ମାଲଗାଡ଼ିରେ ବ୍ରେକ ଦେବାର ଚକଗୁଡ଼ିକ ଡବାର ଛାତ ଉପରେ ରହୁଥିଲେ । ବ୍ରେକମାନଙ୍କୁ ସେହି ଛାତ ଉପରେ ରହିବାକୁ ହେଉଥିଲା । କୌଣସିଠାରେ ଅଳ୍ପ ଉଚ୍ଚରେ ପୋଲ ଥିଲେ ସେଠାରେ ସେ ପୋଲରେ ପିଟି ହୋଇ ତଳେ ପଡ଼ିଯିବାର ଆଶଙ୍କା ରହିଥିଲା । ଶୀତଦିନେ ଛାତଉପରେ ବରଫରେ ସେ ଥଣ୍ଡା ହେତୁ ଅବଶ ହୋଇ ପଡ଼ିବା ଅସମ୍ଭବ ନଥିଲା । ବେଳେବେଳେ ପ୍ରବଳ ପବନ ବହୁ ଥିଲେ ତା'ର ପାଦ ସ୍ଥିର ରହୁ ନଥିଲା; କେତେବେଳେ କେତେବେଳେ ଗୋଡ଼ ଖସି ଯିବାରୁ ସେ ଦୁଇ ଗାଡ଼ିର ସନ୍ଧିରେ ପଡ଼ି ଯାଉଥିଲା । ଏହି ପରି ନିଜର ବିପଜ୍ଜନକ କାର୍ଯ୍ୟ କରିବାକୁ ଯାଇ ଅନେକ ବ୍ରେକମାନ ପ୍ରାଣ ହରାଉଥିଲେ ।

ବ୍ରେକ ଦେବା ପଦ୍ଧତିର ଦୋଷରୁ ବହୁ ସଂଖ୍ୟାରେ ଦୁର୍ଘଟଣା ହେଉଥିଲା । କେତେବେଳେ ଦୁଇଟି ରେଲଡବା ମଧ୍ୟରେ ଧକ୍କା ହୋଇ ଯାଉଥିଲା; କେତେବେଳେ କେତୋଟି ଡବା ଲାଇନଚ୍ୟୁତ ହୋଇ ପଡ଼ୁଥିଲା ବା ଏହିପରି ଅନ୍ୟ କିଛି ବିପତ୍ତି ଘଟୁଥିଲା । ପ୍ରତି ମାସରେ ପ୍ରତ୍ୟେକ ରେଲପଥରେ ଏହିଭଳି ଅନେକ ଦୁର୍ଘଟଣା ହେଉଥିଲା । ଯଥା ସମୟରେ ବ୍ରେକଦ୍ୱାରା ଗାଡ଼ିର ଗତି ନିୟନ୍ତ୍ରଣ କରାଯାଇ ନପାରିବା ଏସବୁ ଦୁର୍ଘଟଣାର କାରଣ ଥିଲା ।

ଅନେକ ସମୟରେ ବ୍ରେକମାନ ବ୍ରେକ ଦେବାକୁ ଡେରି କରିବା ଫଳରେ ଗାଡ଼ି ଷ୍ଟେସନ ଅତିକ୍ରମ କରି ଚାଲି ଯାଉଥିଲା । ଏପରି ଘଟିଲେ ଗାଡ଼ିକୁ ପୁଣି ଧୀରେ ଧୀରେ ପଛେଇ ପଛେଇ ଷ୍ଟେସନକୁ ଆଣିବାକୁ ପଡ଼ୁଥିଲା । ଏହାଦ୍ୱାରା ଅଯଥା ସମୟ ନଷ୍ଟ ହେଉଥିଲା ଓ ଅନ୍ୟାନ୍ୟ ଗାଡ଼ି ଅଟକି ରହିବାକୁ ବାଧ୍ୟ ହେଉଥିଲେ ।

ଏହିସବୁ ଅସୁବିଧା ହେତୁରୁ ଗାଡ଼ିର ନିର୍ଦ୍ଦିଷ୍ଟ ସମୟ ରକ୍ଷା କରିଯାଇ ପାରୁ ନ ଥିଲା; ଯାତ୍ରୀମାନେ ବିଶେଷ ହଇରାଣ ହେଉଥିଲେ । ମାଲ ଯଥା ସମୟରେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚି ପାରୁ ନ ଥିଲା । ତେଣୁ ନିତାନ୍ତ ଦରକାର ନ ପଡ଼ିଲେ କେହି ରେଲଗାଡ଼ିରେ ଯାଉ ନ ଥିଲେ । ବ୍ୟବସାୟୀମାନେ ରେଲ ଅପେକ୍ଷା ଜାହାଜରେ ଜିନିଷ ପଠାଇବାକୁ ଶ୍ରେୟସ୍କର ମନେ କରୁଥିଲେ କାରଣ ଜାହାଜ ଉପରେ ନିର୍ଭର କରି ହେଉଥିଲା; ମାତ୍ର ରେଲ ଉପରେ ଆସ୍ଥା ରଖି ହେଉ ନ ଥିଲା ।

ସବୁ ରେଲ କମ୍ପାନୀ ପକ୍ଷରେ ବ୍ରେକର ସୁବ୍ୟବସ୍ଥାହିଁ ହେଲା ପ୍ରଧାନ ସମସ୍ୟା । ସୁପରିଣ୍ଟେଣ୍ଡେଣ୍ଟ ଟାଉନ ବିଶଦ ଭାବରେ ଏହି ସମସ୍ୟା ବୁଝାଇ ଦେଲେ । ଜର୍ଜ ବିଦାୟ ନେଇ ଯିବାବେଳେ ମିଷ୍ଟର ଟାଉନ କହିଲେ, "ମିଷ୍ଟର ଓ୍ୱେଷ୍ଟିଂହାଉସ, କିଏ ଜଣେ କହିଥିଲେ ଯେ ମିସିସିପି ନଦୀର ପଶ୍ଚିମ ଭାଗରେ ଥିବା ରାଜ୍ୟର ବିକାଶ କରିବାକୁ ହଜାରେ ବର୍ଷ ଲାଗିଯିବ କିନ୍ତୁ ମୁଁ ଆପଣଙ୍କୁ କହିପାରେଁ—ଆପଣ ଆମ ପାଇଁ ବ୍ରେକର ସୁବ୍ୟବସ୍ଥା କରି ଦିଅନ୍ତୁ । ଆମେ ପଚାଶ ବର୍ଷରେ ଏହା କରି ପାରିବୁ ।"

ଜର୍ଜ ଶେନେକଟାଡ଼ିକୁ ଫେରିବା ବେଳେ ଗାଡ଼ିରେ ବସି ମନେ ମନେ ଟାଉନଙ୍କ କଥା ଚିନ୍ତା କରିବାକୁ ଲାଗିଲା । କିଛି ସମୟ ପରେ ତାର ମନେ ହେଲା, ଗାଡ଼ିର ଚକଗୁଡ଼ିକ ଧପ୍ ଧପ୍ ଶବ୍ଦ କରି ଚାଲିଲା ବେଳେ ସତେ ଯେପରି କହୁଛନ୍ତି—

"ଆପଣ ଆମ ପାଇଁ ବ୍ରେକର ସୁବ୍ୟବସ୍ଥା କରି ଦିଅନ୍ତୁ । ଆମେ ପଚାଶ ବର୍ଷରେ ପଶ୍ଚିମ ଆମେରିକାର ବିକାଶ କରି ପାରିବୁ ।"

ଏଥର ଯେତେବେଳେ ରେଲଗାଡ଼ି ବାଙ୍କ ବୁଲିବା ପାଇଁ ଗତି କମାଉ ଥାଏ ବା ଯାତ୍ରୀ ନେବାପାଇଁ ବନ୍ଦ ହେଉଥାଏ, ସେତେବେଳେ

ଜର୍ଜ ଯେଉଁ କଷ୍ଟକର ହଲଚଲ ବା ଚମକ ଅନୁଭବ କରୁଥିଲା କମ୍ପା ଭେଇଁ ପଡ଼ିଲା ପରି ଅନୁଭବ କରୁଥିଲା, ତାହାକୁ ସେ ବିଶେଷ ଭାବରେ ଲକ୍ଷ୍ୟ କଲା । ଏଥିପୂର୍ବରୁ ସେ ଏ ସବୁକୁ ଅତି ସ୍ୱାଭାବିକ ବୋଲି ଗ୍ରହଣ କରୁଥିଲା ।

ତାର ମନେ ପଡ଼ିଲା, ସେ ଆଜି ଥରେ ଗାଡ଼ିରେ ବସି ଯାଉଥିଲା । ଆଗରେ ଗୋଟାଏ ଦୁର୍ଘଟଣା ଘଟିଥିବାରୁ ତା ଗାଡ଼ି ଗୋଟାଏ ଜାଗାରେ ଦୁଇ ଘଣ୍ଟା ପଡ଼ି ରହିଥିଲା । ଅଗରେ ଦୁଇଟି ମାଲଗାଡ଼ି ମଧ୍ୟରେ ଧକ୍କା ଲାଗି ଯାଇଥିଲା । ଗାଡ଼ିଟି ଦୁର୍ଘଟଣା ସ୍ଥଳରେ ପହଞ୍ଚିବାରୁ ସେ ଦେଖିଥିଲା ଯେ ଗାଡ଼ି ଦୁଇଟି ଭାଙ୍ଗି ଗୁଣ୍ଡ ହୋଇଯାଇଥିଲା । ଗୋଟିଏ ମାଲଡବା ଉପରେ ଥିବା ବ୍ରେକମ୍ୟାନ ଛିଟିକି ପଡ଼ି ସଙ୍ଗେ ସଙ୍ଗେ ପ୍ରାଣ ହରାଇଥିଲା । ତାର ମୃତ ଦେହ ଭଙ୍ଗା ଗାଡ଼ି ଓ ବିକ୍ଷିପ୍ତ ମାଲ ମଧ୍ୟରେ ପୋତି ହୋଇ ପଡ଼ିଥିଲା ।

ଏହି କରୁଣ ଦୃଶ୍ୟ ଦେଖି ଜର୍ଜ ଜଡ଼ୀଭୂତ ହୋଇ ଯାଇଥିଲା । କିନ୍ତୁ ସେତେବେଳେ ସେ ମନେ କରିଥିଲା ଯେ ଜୀବନରେ ଏହିପରି ନାନା ଦୁର୍ବିପାକ ଘଟିବା ସ୍ୱାଭାବିକ । ଏ ମଧ୍ୟ ସେହିପରି ଗୋଟିଏ ଦୁର୍ଘଟଣା । କିନ୍ତୁ ବର୍ତ୍ତମାନ ସେ ଅନ୍ୟ ପ୍ରକାରରେ ଚିନ୍ତା କରିବାକୁ ଲାଗିଲା । ମିଷ୍ଟର ଟାଉନଙ୍କ କଥା ଶୁଣିଥିବାରୁ ସେ ଭାବିଲା ଯେ ବ୍ରେକ ଦେବାର ଗୋଟାଏ ନୂଆ ଉତ୍ତମ ଉପାୟ କାହିଁକି ବାହାର କରାଯାଇ ପାରିବ ନାହିଁ । ଏପରି ଉପାୟ ବାହାର କରିବା କଅଣ ଅସମ୍ଭବ ନା ଆଜି ଯାଏ କେହି ତାହାର ଉପଯୁକ୍ତ ପନ୍ଥା ପାଇନାହାନ୍ତି ? ପରଦିନ ସକାଳେ ଗାଡ଼ି ଶେନେକଟାଡ଼ିରେ ପହଞ୍ଚିଲା । ସେତେବେଳକୁ ଜର୍ଜର ମସ୍ତିଷ୍କରେ ଏହି ବିଷୟରେ ନାନା କଳ୍ପନା ଭରି ଯାଇଥାଏ ।

ଘରେ ପହଞ୍ଚିବା ମାତ୍ରେ ଦୁଆର ମୁହଁରେ ସେ ପ୍ରଥମେ ମାର୍ଗାରେଟକୁ ଦେଖିବାକୁ ପାଇଲା । ସେ ଗୋଟିଏ ନୂଆ ପୋଷାକ ପିନ୍ଧିଥାଏ । ତାର ମୁହଁରେ ହସ ଦେଖାଯାଉଥାଏ । ଜର୍ଜ ତାକୁ ଚୁମ୍ବନ କରି ଟିକିଏ ଦୁଷ୍ଟାମି କଲା ପରି କହିଲା, "ତୁମର ସ୍ୱାମୀ ଯାହା କିଛି ଉଦ୍ଭାବନ କରିବାକୁ ଇଚ୍ଛା କରିବ ତାହା କରି ପାରିବ ବୋଲି ତୁମର ବିଶ୍ୱାସ ଅଛି କି ?

ସେ ହସି ହସି ଉତ୍ତର କଲା, "ନିଶ୍ଚୟ, ମୋର ସ୍ୱାମୀ ଯାହା ଚାହିଁବେ ତାହା କରି ପାରିବେ । ତାଙ୍କ ପକ୍ଷରେ କିଛି ଅସମ୍ଭବ ନୁହେଁ ।"

"ତାହାହେଲେ ତୁମେ ଯାହା ସାଥିରେ କଥାବାର୍ତ୍ତା ହେଉଛ, ସେ ରେଳପଥର ଇତିହାସରେ ଗୋଟାଏ ବିପ୍ଳବ ଆଣିବ ।"

ମିଷ୍ଟର ଟାଉନଙ୍କ ସଙ୍ଗରେ ତାର ଯେଉଁ ଆଲୋଚନା ହୋଇଥିଲା, ତାହା ସେ ନିଜ ସ୍ତ୍ରୀ ପାଖରେ ବର୍ଣ୍ଣନା କଲା । ସେ ବୁଝାଇ ଦେଲା ଯେ ରେଳପଥର ପ୍ରକୃତ ଉଦ୍ଦେଶ୍ୟ ସାଧନ କରିବାକୁ ହେଲେ ନୂତନ ଧରଣର ବ୍ରେକର ଗୁରୁତର ଆବଶ୍ୟକତା ଅଛି । ମାର୍ଗାରେଟ କହିଲା, "ତୁମେ ଗୋଟିଏ ଉତ୍କୃଷ୍ଟ ଧରଣର ବ୍ରେକ ବାହାର କରି ପାରିବ ବୋଲି ମନେ କରୁଛ କି ? କିନ୍ତୁ ମୁଁ ଭାବୁଛି ଯେ ଅନେକ ଲୋକ ଏ ଦିଗରେ ଚେଷ୍ଟା କରି ବିଫଳ ହୋଇଥିବେ ।"

"ମୁଁ ମଧ୍ୟ ତାହା ମନେ କରେଁ । ଏଇ କାଗଜ ଖଣ୍ଡିକ ଦେଖିଲ ।" ଏହା କହି ଜର୍ଜ ପକେଟରୁ ଖଣ୍ଡିଏ କାଗଜ ବାହାର କରି ସଙ୍ଗେ ସଙ୍ଗେ କେତେଗୁଡ଼ିଏ ରେଲଡବାର ନକ୍ସା ଆଙ୍କିଦେଲା ।

ସେ ଖୁବ୍ ଉତ୍ସାହରେ କହିଲା, "ବାଟରେ ରେଲଗାଡ଼ିରେ ଆସିଲା ବେଳେ ମୋ ମନରେ ନାନା କଳ୍ପନା ଜାତ ହେଲା । ଗୋଟିଏ ହେଉଛି -- ଯେଉଁ ଯୁଗ୍ମନ (Coupling) ଦ୍ୱାରା ରେଲ ଡବା ପରସ୍ପର ସହିତ ସଂଯୁକ୍ତ ହୋଇଥାଏ, ତାହା ସଙ୍ଗେ ବ୍ରେକକୁ ସଂଯୋଗ କରିବା । ଇଞ୍ଜିନ ଚାଳକ ଷ୍ଟୀମ ବନ୍ଦ କରି ଦେଲେ ଇଞ୍ଜିନର ଗତି କମି ଆସିବ । ଡବା-ଗୁଡ଼ିକ ସେତେବେଳେ ଆଗେଇ ଆସିବାକୁ ଚେଷ୍ଟା କରିବେ । ଫଳତଃ ଯୁଗ୍ମନ ଉପରେ ଯେଉଁ ଚାପ ପଡ଼ିବ ତାହାଦ୍ୱାରା ଗୋଟିଏ ସ୍ପ୍ରିଙ୍ଗ୍ ସ୍ଥିର ସୃଷ୍ଟି ହେବ । ଏହା ଫଳରେ ବ୍ରେକଗୁଡ଼ିକ ଡବାର ଚକମାନଙ୍କ ଦେହରେ ଲଗିଯିବେ ।"

ମାର୍ଗାରେଟ ହତବୁଦ୍ଧି ହେଲାପରି ପଚାରିଲା—"ଏଥିରେ କଅଣ ସୁବିଧା ହେବ ? ମୋର ମନେ ହୁଏ, ଏ ସବୁ ଜଟିଳ ତତ୍ତ୍ୱ ବୁଝିବା ପାଇଁ ମୋର ମୁଣ୍ଡର ଶକ୍ତି ନାହିଁ ।"

ଜର୍ଜ ଧୈର୍ଯ୍ୟ ସହକାରେ ବୁଝାଇବାକୁ ଲଗିଲ, "ଏଥିରେ ଏଇ ସୁବିଧା ହେବ ଯେ ଇଞ୍ଜିନଚାଳକ ଏକ ସମୟରେ ସବୁ ଡବାର ଚକରେ ବ୍ରେକ ଦେଇ ପାରିବ। ବ୍ରେକମାନ ହାତରେ ପରିଶ୍ରମ କରି ବ୍ରେକ ଦେବ ବୋଲି ଇଞ୍ଜିନ ଚାଳକକୁ ଅପେକ୍ଷା କରିବାକୁ ପଡ଼ିବ ନାହିଁ । ବର୍ତ୍ତମାନ ଯେଉଁ ପଦ୍ଧତି ଚାଲିଛି ସେଥିରେ ଇଞ୍ଜିନ ଚାଳକ "ବ୍ରେକ ଦିଅ" ବୋଲି ସଙ୍କେତ ଦେବା ଛଡ଼ା ଆଉ କିଛି କରି ପାରୁ ନାହିଁ । ତାର ସିଟି ଶବ୍ଦର ସଙ୍କେତ ପାଇ ବ୍ରେକମାନ ପ୍ରକୃତରେ ବ୍ରେକ ଦେଲା ବେଳକୁ କେତେକ ମୂଲ୍ୟବାନ ସମୟ ନଷ୍ଟ ହୋଇ ଯାଉଅଛି । ଏହି ସମୟର ପ୍ରତ୍ୟେକ ମୁହୂର୍ତ୍ତ ମୂଲ୍ୟବାନ । ରେଲଗାଡ଼ି ନିରାପଦରେ ବନ୍ଦ ହୋଇ ରହିବ କି ଗୋଟାଏ ଦୁର୍ଘଟଣା ଘଟିବ ତାହା ଏହି କେତୋଟି ମୁହୂର୍ତ୍ତ ଉପରେ ନିର୍ଭର କରୁଅଛି ।

ଏହା ଶୁଣି ମାର୍ଗାରେଟର ମୁଖ ଉଜ୍ଜ୍ୱଳ ହୋଇ ଆସିଲା । ସେ କହିଲା, "ହଁ, ଏବେ ମୁଁ କିଛି ବୁଝିପାରିଲି । ତୁମେ ଯେଉଁ କଳ୍ପନା କରିଛ, ତାହା ଏକ ସୁନ୍ଦର ଉପାୟ; କିନ୍ତୁ ଏହି ଉପାୟ ପ୍ରକୃତରେ କାର୍ଯ୍ୟ ଦେବ ତ ?"

ଜର୍ଜ ଦୃଢ଼ତାବ୍ୟଞ୍ଜକ ସ୍ୱରରେ କହିଲା;—ମୋର ବିଶ୍ୱାସ, କାର୍ଯ୍ୟ ଦେବ ।

ଏହାପରେ ମାସକ ପର୍ଯ୍ୟନ୍ତ ଜର୍ଜ ସହରର ବାହାରକୁ ଯାଇ ନ ଥିଲା । ଏହି ସମୟରେ ସେ ପିତାଙ୍କ କାରଖାନାରେ ଗୋଟିଏ ଛୋଟ ମଡେଲ ତିଆରି କରିବାରେ ଲଗିଲା । ରେଲଡବାଗୁଡ଼ିକୁ ଛୋଟ ଛୋଟ ଯୁଗ୍ମନ (Coupling) ଦ୍ୱାରା ସଯୁକ୍ତ କରାଯାଇଥିଲା । ପୁଣି ପ୍ରତ୍ୟେକ ଯୁଗ୍ମନ ଗୋଟିଏ ଗୋଟିଏ ଘୋଡ଼ଆ(Trigger)ସହିତ ସଯୁକ୍ତ ହୋଇଥିଲା । ଏହି ଘୋଡ଼ଆ ବ୍ରେକଗୁଡ଼ିକୁ ନିୟନ୍ତ୍ରଣ କରୁଥିଲା ।

ଏହି ମଡେଲ ରେଲଗାଡ଼ିକୁ ନେଇ ଜର୍ଜ ପରୀକ୍ଷା କରି ଦେଖିଲା । ଏହାର ବ୍ରେକ ଠିକ୍ ଭାବରେ କାମ ଦେଲା; କିନ୍ତୁ ବ୍ରେକଗୁଡ଼ିକୁ ଚକରେ ଲଗାଇବା ପାଇଁ ଆବଶ୍ୟକ ହେଉଥିବା ଚାପର ପରିମାଣ ହିସାବ କରି ଜର୍ଜ ଗୋଟିଏ ନୂଆ କଥା ଆବିଷ୍କାର କଲା । ସେଥିରେ ସେ

ଏକବାର ହତାଶ ହୋଇ ପଡ଼ିଲା । ଏହି ନୂତନ ଉପାୟ ଗୋଟିଏ ଛୋଟ ମଡେଲ ରେଲଗାଡ଼ିରେ ସୁନ୍ଦର କାମ ଦେଲା ସତ; କିନ୍ତୁ ଶତ ଶତ ଟନ ଓଜନର ରେଲଗାଡ଼ି ଦ୍ରୁତବେଗରେ ଚାଲୁଥିବା ବେଳେ ଏହି ବ୍ରେକ ଆଦୌ କାର୍ଯ୍ୟକାରି ହୋଇ ପାରିବ ନାହିଁ । ସବୁ ବ୍ରେକକୁ ଏକ ସମୟରେ ବନ୍ଦ କରିବା ପାଇଁ ଯେଉଁ ବିରାଟ ଶକ୍ତିର ପ୍ରୟୋଜନ ହେବ, ସାମାନ୍ୟ ଘୋଡ଼ଆ ଦ୍ୱାରା ତାହାକୁ ନିୟନ୍ତ୍ରଣ କରି ହେବନାହିଁ ।

ବିଷର୍ଣ୍ଣ ହୃଦୟରେ ସେ ଏହି ଉଦ୍ୟମ ତ୍ୟାଗକଲା ।

ଅନ୍ୟ ଏକ ଉଦ୍ୟମ କରିବା ପାଇଁ ମାର୍ଗାରେଟ ତାକୁ ଉତ୍ସାହ ଦେବାକୁ ଲାଗିଲା । ଅବଶ୍ୟ ତାକୁ ଉତ୍ସାହ ଦେବାର ଆବଶ୍ୟକତା ନ ଥିଲା । ସ୍ୱୟଂକ୍ରିୟ ସ୍ୱତନ୍ତ୍ର ବ୍ରେକ ବ୍ୟବସ୍ଥାର ସଂଯୋଗ ରଖିବାର କଳ୍ପନା ତ୍ୟାଗ କରିବାକୁ ହେଲା । ଜର୍ଜ ରେଲଷ୍ଟେସନକୁ ଯାଇ ରେଲ ଡବାଗୁଡ଼ିକ ଉତ୍ତମ ରୂପେ ପର୍ଯ୍ୟବେକ୍ଷଣ କଲାପରେ ସେ ଅନ୍ୟ ଏକ ଉପାୟର କଳ୍ପନା କଲା । ପ୍ରଚଳିତ ପଦ୍ଧତିରେ ଜଞ୍ଜିରକୁ ଟାଣି ଗାଡ଼ି ବନ୍ଦ କରିବାର ବ୍ୟବସ୍ଥା ଥିଲା । ନିଜ କଳ୍ପିତ ବ୍ୟବସ୍ଥାରେ ସେ ଏହି ପନ୍ଥାରେ ଉପଯୋଗ କରିବାକୁ ସ୍ଥିରକଲା । କେବଳ ସେଥିରେ ସାମାନ୍ୟ ପରିବର୍ତ୍ତନ କରିବାକୁ ହେବ । ଇଞ୍ଜିନଠାରୁ ସବୁ ଡବାର ତଳବାଟେ ଗୋଟିଏ ଜଞ୍ଜିର ଶେଷ ଡବା ପର୍ଯ୍ୟନ୍ତ ଯିବ । ଗୋଟିଏ ନିୟନ୍ତ୍ରଣକାରୀ ଯନ୍ତ୍ରଦ୍ୱାରା ଇଞ୍ଜିନଚାଳକ ଜଞ୍ଜିର ଟାଣିଦେଲା ମାତ୍ରକେ ଏକ ସମୟରେ ସବୁ ବ୍ରେକଗୁଡ଼ିକ ଡବା ଚକରେ ଲାଗିଯିବ ଓ ଗାଡ଼ି ବନ୍ଦ ହୋଇଯିବ । ଏଥି ପୂର୍ବରୁ ତାର କଳ୍ପନା ଥିଲା ଯେ ବ୍ରେକମାନର ଆବଶ୍ୟକତା ଯେପରି ନ ରହେ । ଏହି ନୂତନ କଳ୍ପନାରେ ବ୍ରେକମାନର କୌଣସି ଆବଶ୍ୟକତା ନ ଥିଲା; କାରଣ ଏଥିରେ ଇଞ୍ଜିନ ଚାଳକ ସମସ୍ତ ଡବାର ବ୍ରେକ ଏକ ସମୟରେ ଲଗାଇ ପାରିବ । ବର୍ତ୍ତମାନ ଗୋଟିଏ ସମସ୍ୟା ରହିଲା । କିପରି ନିୟନ୍ତ୍ରଣକାରୀ ଯନ୍ତ୍ର କରାଗଲେ ଇଞ୍ଜିନ ଚାଳକ ସହଜରେ ଓ ଅତି ଅଳ୍ପ ସମୟ ମଧ୍ୟରେ ଜଞ୍ଜିରକୁ ଟାଣି ପାରିବ ।

ଜର୍ଜ ଏହି ସମସ୍ୟାର ସମାଧାନ ବିଷୟରେ ଚିନ୍ତା କରୁଥିବାବେଳେ ସେ ଶିକାଗୋରୁ ଗୋଟିଏ ତାର ସମ୍ବାଦ ପାଇଲା । ଜଣେ ଗ୍ରାହକ ଏକ

ବହୁମୂଲ୍ୟ ଅର୍ଡ଼ର ବିଷୟରେ ବିସ୍ତୃତ ବିବରଣ ଜାଣିବା ପାଇଁ ତାକୁ ଶିକାଗୋକୁ ଯିବାପାଇଁ ସମ୍ବାଦ ପଠାଇଥିଲେ । ମାର୍ଗାରେଟଙ୍କୁ ଛାଡ଼ିଯିବାପାଇଁ ଇଚ୍ଛା ନଥିଲେ ସୁଦ୍ଧା ଶିକାଗୋରେ ମିଷ୍ଟର ଟାଉନଙ୍କ ସହିତ ସାକ୍ଷାତର ସୁଯୋଗ ମିଳିବ ବୋଲି ସେ ଯିବାକୁ ବାହାରିଲା । ମିଷ୍ଟର ଟାଉନ ରେଲ ଚଳାଚଳ ବିଷୟରେ ଜଣେ ବିଶେଷଜ୍ଞ । ନିଜର କଳ୍ପିତ ବ୍ରେକ ବ୍ୟବସ୍ଥା ସମ୍ବନ୍ଧରେ ତାଙ୍କର ମତ ଜାଣିବା ଜର୍ଜର ଇଚ୍ଛାଥିଲା ।

ଶିକାଗୋରେ ପହଞ୍ଚି ସେ ନିଜର କଳ୍ପନାର ଏକ ବିବରଣ ମିଷ୍ଟର ଟାଉନଙ୍କୁ ଦେଲା । ମିଷ୍ଟର ଟାଉନ ଧୀର ସ୍ଥିର ଭାବରେ ସବୁ ଶୁଣିଲେ ଓ ନକ୍ସାଗୁଡ଼ିକ ପରୀକ୍ଷା କଲେ । କିଛି ସମୟ ପରେ କହିଲେ; "ମିଷ୍ଟର ଓ୍ବେଷ୍ଟିଂହାଉସ, "ମୁଁ ଗୋଟିଏ ବିଚିତ୍ର ଯୋଗ ଦେଖୁଛି । ଆପଣ ଯେପରି ଇଞ୍ଜିନର କଳ୍ପନା କରି ଅଛନ୍ତି, ଆମ୍ଭେମାନେ ମଧ୍ୟ କେତେ ମାସ ହେଲା ସେହି ପରି ଏକ କଳ୍ପନା କରିଅଛୁ । ମିଲଓ୍ୱାକିର ଜଣେ ଭଦ୍ର ଲୋକ ଏହି ପ୍ରସ୍ତାବ ଦେଇ ଥିଲେ । ସେହି ପ୍ରସ୍ତାବ ଅନୁଯାୟୀ ବ୍ରେକ ତିଆରି କରି ଯାଇଅଛି ଓ ଆମେ ତାକୁ ଗୋଟିଏ ଟ୍ରେନରେ ଲଗାଇ ସାରିଛୁ । ବ୍ରେକର କାର୍ଯ୍ୟକାରିତା ପରୀକ୍ଷା କରିବା ପାଇଁ କାଲି ସେହି ଗାଡ଼ିଟି ଚଳିଯିବ । ଆମର ସେହି ଟ୍ରେନଟିର ନାମ 'ଅରୋରା ଆକମଡେଶନ' । ଆପଣ ଏହି ପରୀକ୍ଷା ଦେଖିବାକୁ ଯିବେ କି ?"

ଜର୍ଜ ବିଚଳିତ ହୋଇ ପଡ଼ିଲା । ସେ ଯେଉଁ କଳ୍ପନା ପେଇଁ ଏତେ ଦିନ ହେଲା ପରିଶ୍ରମ କରିଥିଲା, ତାହା ଅନ୍ୟ ଜଣେ ଆଗରୁ କରି ସାରିଛି । ସେଥିରେ ତାହା ମନରେ ଦାରୁଣ କଷ୍ଟ ହେବା ସ୍ୱାଭାବିକ ।

ମିଷ୍ଟର ଟାଉନ ଜର୍ଜର ମୁହଁକୁ ଦେଖି ତାହା ମନର ନୈରାଶ୍ୟଭାବ ଜାଣିପାରି କହିଲେ, "ଏତେ ଚିନ୍ତିତ ହେବାର କାରଣ ନାହିଁ । ଆମେ ତ ଆଜି ପର୍ଯ୍ୟନ୍ତ ଜଞ୍ଜିରବ୍ରେକ ବ୍ୟବହାର କରି ଆସିଛୁ । ଆପଣ ଓ ଅନ୍ୟ ଜଣେ ଠିକ୍ ଏକ ସମୟରେ ଏହି ଜଞ୍ଜିର ବ୍ୟବସ୍ଥାରେ ଏକ ପ୍ରକାରର ପରିବର୍ତ୍ତନ କଳ୍ପନା କରି ଅଛନ୍ତି । ଏବେ କାଲିର ପରୀକ୍ଷା ମୂଳକ ଗାଡ଼ିଚାଳନାରେ ଆପଣଙ୍କ ମତ କଅଣ ? ଦେଖିବାକୁ ଯିବେ ତ ?"

ସେହି ଦିନ ଉପର ବେଳା ଜର୍ଜ ଶିକାଗୋ ଛାଡ଼ି ଶେନେକଟାଡ଼ିକୁ ଫେରି ଯିବାକୁ ସ୍ଥିର କରିଥିଲା । କିନ୍ତୁ ସେ ଆଉ ଦିନେ ରହି ଏହି ପରୀକ୍ଷାର ଫଳାଫଳ ଦେଖି ଯିବାର ଲୋଭ ସମ୍ବରଣ କରି ପାରିଲା ନାହିଁ । ଆଉ କେବେ ଯେ ଏପରି ସୁଯୋଗ ମିଳିବ ସେ ଆଶା ନ ଥିଲା । ତେଣୁ ସେ ଏହି ପରୀକ୍ଷାମୂଳକ ଗାଡ଼ି ଚାଳନା ଦେଖିବାକୁ ରହିବା ପାଇଁ ସ୍ୱୀକୃତି ଜଣାଇଲା ।

---

# ଛଅ

# ବାୟୁର ନିୟନ୍ତ୍ରଣ

ଶିକାଗୋ-ବର୍ଲିଂଟନ ଏଣ୍ଡ କୁଇନ୍ସ କମ୍ପାନୀର ରେଲଷ୍ଟେସନରେ ଏହି ପରୀକ୍ଷା ଆରମ୍ଭ କରାଯିବ ବୋଲି ସ୍ଥିର ହୋଇଥିଲା । ନୂତନ ବ୍ରେକର ଉଦ୍ଭାବକ ଅଗଷ୍ଟିନ ଆମ୍ବରଲଙ୍କ ସହିତ ଜର୍ଜର ପରିଚୟ ହେବାପରେ ଦୁହିଁଙ୍କ ମଧ୍ୟରେ ନୂତନ ବ୍ରେକ ସମ୍ବନ୍ଧରେ ଆଲୋଚନା ହେଲା । ଜର୍ଜ ଦେଖିଲା ଯେ ଏହି ବ୍ରେକର କୌଶଳ ତାର କଳ୍ପିତ କୌଶଳର ଠିକ୍ ଅନୁରୂପ । ଏଥିରେ ସେ ଅତ୍ୟନ୍ତ ବିସ୍ମିତ ହୋଇଗଲା ।

ଏହି ବ୍ରେକବ୍ୟବସ୍ଥାରେ ଗୋଟିଏ ଲମ୍ବ ଜଞ୍ଜିର ସମଗ୍ର ଟ୍ରେନର ତଳେ ତଳେ କେତେଗୁଡ଼ିଏ ରୋଲର ଉପରେ ଯାଇଥିଲା । ରୋଲରଗୁଡ଼ିକ ବିଭିନ୍ନ ତଳର ବ୍ରେକ ଲିଭର ସହିତ ସଂଯୁକ୍ତ ଥିଲା । ଇଞ୍ଜିନରେ ଗୋଟିଏ ବଡ଼ ଚକଟି କଳ ଓ କେତେକ ଚକ ଥିଲା । ଗୋଟିଏ ଚକ ସାହାଯ୍ୟରେ କପି କଳକୁ ବୁଲାଇବାକୁ ହେବ । ଏହା ଫଳରେ ଜଞ୍ଜିର ଟାଣି ହୋଇଗଲେ ବ୍ରେକ-ଶୁଗୁଡ଼ିକ ତଳର ଚକମାନଙ୍କରେ ଲାଗିଯିବ ।

କପି କଳ ବ୍ୟବସ୍ଥାଟି ନିତାନ୍ତ ଜଟିଳ ଥିଲା । ଜର୍ଜ ଅନୁମାନ କଲା ଯେ ଏହା ବହୁତ ଦିନ ବ୍ୟବହାର କରି ହେବ ନାହିଁ । ତାର ଅନୁମାନ ଯେ ଠିକ୍ ତାହା ସଙ୍ଗେ ସଙ୍ଗେ ପ୍ରମାଣିତ ହୋଇଗଲା । ପରୀକ୍ଷା ଆରମ୍ଭ ହେଲା ପରେ ଦେଖାଗଲା ଯେ ବ୍ରେକ ଭଲରୂପେ ନ ଧରିବାରୁ ଗାଡ଼ି ଧୀରସ୍ଥିର ଭାବରେ ହଠାତ୍ ବନ୍ଦ ହେଲା ନାହିଁ । ତୃତୀୟ ଥର ବ୍ରେକ ଦେଇ ପରୀକ୍ଷା କଲା ବେଳକୁ କପି କଳଟି ଭାଙ୍ଗିଗଲା ।

ଟ୍ରେନ ଧୀରେ ଧୀରେ ଷ୍ଟେସନକୁ ଫେରି ଆସିଲା । ଜର୍ଜ ଦେଖିଲା ଯେ ନୈରାଶ୍ୟରେ ଆମ୍ବଲରଙ୍କ ମୁଖ ମଳିନ ପଡ଼ି ଯାଇଛି । ତାଙ୍କ ପ୍ରତି ଜର୍ଜର ସହାନୁଭୂତି ଜାତ ହେଲା । ମିଷ୍ଟର ଟାଉନ ଏହି ପରୀକ୍ଷାର ଫଳ ଲିପିବଦ୍ଧ କଲାବେଳେ ତାଙ୍କ ମୁଖରେ ବିରକ୍ତ ଭାବ ସ୍ପଷ୍ଟ ଜଣା ପଡ଼ୁଥିଲା ।

ଜର୍ଜ ମନେ ମନେ ଭାବିଲା, "କପିକଳ ଦ୍ୱାରା କାମ ଚଳିବ ନାହିଁ । ଏହା ଅପେକ୍ଷା କୌଣସି ସରଳ ଉପାୟ ଦରକାର ଯେପରିକି ତାହାଦ୍ୱାରା ସହଜେ ଜଞ୍ଜିର ଟାଣି ହେବ ଏବଂ ଏହାର ଏପରି ଶକ୍ତି ଥିବା ଦରକାର ଯେ ଗାଡ଼ି ହଠାତ୍ ବନ୍ଦ ହୋଇ ପାରିବ ।

ହଠାତ୍ ଜର୍ଜର ମନରେ ଏହି ଚିନ୍ତାର ଉଦୟ ହେଲା ଯେ ଷ୍ଟୀମ ଶକ୍ତିଦ୍ୱାରା ପରୀକ୍ଷା କଲେ ସୁଫଳ ମିଳି ପାରେ । ଶକ୍ତିର କଥା ଭାବିଲା ମାତ୍ରେ ଷ୍ଟୀମ କଥା ତାର ମନେ ପଡ଼ୁଥିଲା । ଶକ୍ତି କହିଲେ ସେ ଷ୍ଟୀମଶକ୍ତି ହିଁ ବୁଝୁଥିଲା । ଅତୀତରେ ଏହି ଷ୍ଟୀମଶକ୍ତି ତାର ସମସ୍ୟାର ସମାଧାନ କରିଥିଲା । ଏବେ ତାହାକୁ ନେଇ ପୁଣି ପରୀକ୍ଷା କରାଯାଉ ।

କପିକଳ ପରିବର୍ତ୍ତେ ଇଞ୍ଜିନ ତଳେ ଷ୍ଟୀମର ଗୋଟିଏ ସିଲିଣ୍ଡର ଦେଇ ପାଇପ ସାହାଯ୍ୟରେ ସେଥିରେ ଇଞ୍ଜିନରୁ ଷ୍ଟୀମ ପୂରାଇ ହେବ । ଷ୍ଟୀମର ଶକ୍ତିରେ ପିଷ୍ଟନ ଚାଲିବ । ଏହି ପିଷ୍ଟନ ଜଞ୍ଜିର ସଙ୍ଗେ ସଂଯୁକ୍ତ ରହିଥିବ । ପିଷ୍ଟନର ଗତିଦ୍ୱାରା ଜଞ୍ଜିରକୁ ଟାଣି ହେବ ବା ଖୋଲି ହେବ ।

ଆମ୍ବଲର ହତାଶ ହୋଇ ଚାଲି ଯିବା ପରେ ଜର୍ଜ ଟାଉନଙ୍କ ସହିତ ତାଙ୍କ ଅଫିସକୁ ଆସି ଉତ୍ସାହ ସହକାରେ ନିଜର କଳ୍ପିତ ବ୍ରେକ ବିଷୟ ବୁଝାଇଲା ।

ମିଷ୍ଟର ଟାଉନ କହିଲେ, "ଏଥିରେ ଉଦ୍ଦେଶ୍ୟ ସାଧିତ ହୋଇପାରେ ଅନ୍ତତଃ ଏହି ଉପାୟଟି ପରୀକ୍ଷା କରି ଦେଖିବାର ଯୋଗ୍ୟ ।

"ମୁଁ ଯଦି ନକ୍ସା କରି ଦିଏଁ, ତେବେ ଆପଣ ଏହାର ପରୀକ୍ଷା କରାଇ ଦେଇ ପାରିବେ କି ?"

ମିଷ୍ଟର ଟାଉନ କିଛି କ୍ଷଣ ଚିନ୍ତା କରି କହିଲେ, "ମୁଁ ସେ କଥା କହି ପାରୁନାହିଁ । ଆଜି ଯେଉଁ ପରୀକ୍ଷା କରାଗଲା ସେଥିପାଇଁ ଗାଡ଼ିର ବନ୍ଦୋବସ୍ତ କରିବାରେ ଆମର ଯଥେଷ୍ଟ ବ୍ୟୟ ହୋଇଅଛି । ବ୍ରେକ କାର୍ଯ୍ୟ ଦେଲା ନାହିଁ । ପରୀକ୍ଷା ବିଫଳ ହେଲା । କମ୍ପାନୀର ଡ଼ିରେକ୍ଟରମାନେ ଆଉ ଗୋଟିଏ ପରୀକ୍ଷା କରାଇବାକୁ ସ୍ୱୀକୃତ ନ ହୋଇ ପାରନ୍ତି ।

ଜର୍ଜ ଜାଣି ଥିଲା ଯେ ଡ଼ିରେକ୍ଟରମାନଙ୍କ ଅନୁମୋଦନ ବିନା ସୁପରିଣ୍ଟେଣ୍ଡେଣ୍ଟ ଏପରି ଏକ ବ୍ୟୟର ଦାୟିତ୍ୱ ଗ୍ରହଣ କରିବା ସମ୍ଭବପର ନୁହେଁ । ତେଣୁ ସେ ନିରାଶ ହୋଇ ଫେରିଲା ।

ଶେନେକଟାଡ଼ିକୁ ଯାଇ ଜର୍ଜ ମାର୍ଗାରେଟକୁ କହିଲା ଯେ ଶିକାଗୋ-ବର୍ଲିଂଟନ-ଏଣ୍ଡ କୁଇନ୍‌ସ କମ୍ପାନୀଠାରୁ କୌଣସି ପ୍ରତିଶ୍ରୁତି ମିଳି ନ ଥିଲେ ସୁଦ୍ଧା ସେ ନିଜ ଖର୍ଚ୍ଚରେ ଏହି ବ୍ରେକ ପ୍ରସ୍ତୁତ କରିବାକୁ ଚେଷ୍ଟା କରିବ । ସେ ଉଦାସୀନ ଭାବରେ କହିଲା, "ଯଦି ମୋର ବ୍ରେକର କଳ୍ପନା ସଫଳ ହୁଏ, ତେବେ ଏହା ବଳେ ବଳେ ଆଦୃତ ହେବ ।"

ସେ ଆଗରୁ ଯେଉଁ ଗ୍ଲେଟ ମଡେଲ ରେଲଗାଡ଼ି ତିଆରି କରିଥିଲା, ସେଥିରେ ଇଞ୍ଜିନଠାରୁ ଶେଷଡବା ପର୍ଯ୍ୟନ୍ତ ଗୋଟିଏ ଜଞ୍ଜିର ସଂଯୋଗ କଲା; ଗୋଟିଏ ଗ୍ଲେଟ ସିଲଣ୍ଡର ଓ ପିଷ୍ଟନ ଖଞ୍ଜିଲା । କିନ୍ତୁ ଏତିକ କାମ ଶେଷ ନ ହେଉଣୁ ସେ ବୁଝି ପାରିଲା ଯେ ସେ ଯେଉଁ ମତ ଉପରେ ନିର୍ଭର କରି କାର୍ଯ୍ୟ କରିବାକୁ ଯାଉଛି ସେ ମତଟି ମୂଳରୁ ଭୁଲ ।

ମାର୍ଗାରେଟକୁ ସେ ବୁଝାଇ ଦେଲା, "ଯଦି ଗାଡ଼ିରେ ଗୁରିପାଞ୍ଚୋଟି ଡବା ଥାଏ, ତେବେ ଜଞ୍ଜିର ଠିକ୍ କାମ ଦେବ । କିନ୍ତୁ ମନେକର, ଗାଡ଼ିରେ ପନ୍ଦର କୋଡ଼ିଏଟି ଡବା ଅଛି । ତାହାହେବେ ଜଞ୍ଜିରକୁ ସେହି ଅନୁସାରେ ଲମ୍ବ କରିବାକୁ ହେବ । ଏପରି ଲମ୍ବା ଜଞ୍ଜିର ଟାଣିବାକୁ ଏତେ ଶକ୍ତି ଦରକାର ହେବ ଯେ ଷ୍ଟିମ ସିଲଣ୍ଡରଟିକୁ ଇଞ୍ଜିନଠାରୁ ମଧ୍ୟ ବଡ଼ କରିବାକୁ ପଡ଼ିବ । ଏଣୁ ଏପରି ହେବା ଅସମ୍ଭବ ।"

ମାର୍ଗାରେଟ ପଚାରିଲା, "ତୁମ୍ଭେ ଏହା କିପରି ଜାଣିଲ ?"

ଜର୍ଜ ଖଣ୍ଡିଏ କାଗଜ ବାହାର କରି ଦେଖାଇଲା । ସେଥିରେ ଷ୍ଟିମର ଚାପ ଓ ସିଲିଣ୍ଡରର ଆକାରର ସମ୍ବନ୍ଧ ସେନେଇ ଅନେକ ଜଟିଳ ହିସାବ ଥିଲା । ଜର୍ଜ କହିଲା, "ଏଇ ହିସାବରୁ ଜଣା ପଡ଼ିଲା ଯେ ମୁଁ ଠିକ୍ ପନ୍ଥାରେ ଗତି କରୁ ନାହିଁ ।"

ମାର୍ଗାରେଟ ମନ ଦୁଃଖରେ କାଗଜ ଖଣ୍ଡିକୁ କିଛି ସମୟ ଚାହିଁ ପଚାରିଲା, "ତେବେ ତୁମେ କଅଣ ବ୍ରେକର କଳ୍ପନା ଏକବାରେ ଛାଡ଼ି ଦେଉଛ ?" ଜର୍ଜ ସ୍ତ୍ରୀର ବିଷର୍ଣ୍ଣ ମୁଖ ଆଡ଼କୁ ଚାହିଁ ଟିକିଏ ହସି କହିଲା, ମୁଁ କେବେହେଁ ଛାଡି ଦେବି ନାହିଁ । ଏତେ ସହଜରେ ଯେବେ ମୁଁ ନିବୃତ୍ତ ହୋଇ ରହେ ତେବେ ମୁଁ କି ଉଦ୍ଭାବକ ? ପିଲାଦିନେ ମୁଁ ଏତେ ଜିଦଖୋର ଥିଲି ଯେ ମୋ କଥା ନ ରହିଲେ ମୁଁ କାନ୍ଥରେ ମୁଣ୍ଡ ପିଟି ଦେଉଥିଲି । ଦେଖିବ, ଏବେ ମଧ୍ୟ ତୁମର ସ୍ୱାମୀ ପଥର କାନ୍ଥରେ ମୁଣ୍ଡ ପିଟିବାକୁ ତିଆରି ଅଛି ।".

ଜର୍ଜ ପୁଣି ନୂଆ କରି ନକ୍ସା ତିଆରି କଲା । ଇଞ୍ଜିନର ନିମ୍ନସ୍ଥିତ ଏକ ପ୍ରଧାନ ପିଷ୍ଟନ ସଙ୍ଗେ ଜଞ୍ଜିରିଟି ସଂଯୋଗ କରି ତା ପରବର୍ତ୍ତିରେ ସେ ପ୍ରତ୍ୟେକ ଡବାର ତଳେ ଗୋଟିଏ ଲେଖାଏଁ ଛୋଟ ସିଲିଣ୍ଡର ବସାଇଲା । ପାଇପ ଦ୍ୱାରା ସିଲିଣ୍ଡରଗୁଡ଼ିକ ପରସ୍ପର ସଂଯୁକ୍ତ ରହିଲା । ଇଞ୍ଜିନରୁ ପ୍ରତ୍ୟେକ ସିଲିଣ୍ଡରକୁ ଷ୍ଟିମ ପଠା ଯିବ । ଡବାଗୁଡ଼ିକର ବ୍ରେକ-ଶୁ ସଂଲଗ୍ନ ପିଷ୍ଟନଗୁଡ଼ିକ ଏହି ଷ୍ଟିମ ଦ୍ୱାରା ଚାଳିତ ହେବ ।

ମଡେଲରେ ନୂତନ ସରଞ୍ଜାମ ଲଗାଇ ଠିକ୍ କରିବାକୁ ଆହୁରି କେତେକ ସପ୍ତାହ ଲାଗିଗଲା । ଜର୍ଜ ଛୋଟ ବଏଲରରେ ଅଗ୍ନି ସଂଯୋଗ କଲା । ଚାପ ବୃଦ୍ଧି ପାଇବାରୁ ସେ ଭଲଭ ଖୋଲିଦେଲା, ଯେପରି କି ବ୍ରେକ ସିଲିଣ୍ଡରଗୁଡ଼ିକରେ ଷ୍ଟିମ ପହଞ୍ଚି ପାରିବ । କିନ୍ତୁ କିଛି 'ଫଳ ହେଲା ନାହିଁ । ଚାପ ବଢ଼ାଇଲେ ସୁଦ୍ଧା ବ୍ରେକ କାମ ଦେଲା ନାହିଁ ।

କାହିଁକି ଏପରି ହେଲା, ତାହା ଜର୍ଜ ଚିନ୍ତା କରିବାକୁ ଲାଗିଲା । କାଗଜ କଲମରେ ହିସାବ ଠିକ୍ ଅଛି । ତେବେ କାମ ନ ଦେଲା କାହିଁକି ?

ନିବିଷ୍ଟ ହୋଇ ସେ ସିଲିଣ୍ଡର ଓ ପାଇପର ପ୍ରତ୍ୟେକ ଅଂଶ ଖୋଲି ଷ୍ଟିମ ପ୍ରବେଶ କରିବାର ସ୍ଥାନ ପରୀକ୍ଷା କଲା । ଏବେ ଦୋଷ କେଉଁଠି ସ୍ପଷ୍ଟ ଜଣା ପଡ଼ିଗଲା । ଷ୍ଟିମ ଜଳରେ ପରିଣତ ହୋଇ ଯାଇ ଥିବାରୁ ବ୍ରେକ କାମ ଦେଉ ନ ଥିଲା । ନିଜର ବୋକାମି ବୁଦ୍ଧି ପାଇଁ ଜର୍ଜ ନିଜକୁ ଧିକ୍କାର ଦେଲା । ହିସାବ କଲାବେଳେ ଇଞ୍ଜିନଠାରୁ ଡବା ତଳର ସିଲିଣ୍ଡର ପର୍ଯ୍ୟନ୍ତ ପହଞ୍ଚିଲା ବେଳକୁ ଷ୍ଟିମ ଯେଉଁ ସମୟ ନେବ, ସେଇଟିକୁ ହିସାବରେ ନେବାକୁ ଏକବାରେ ଭୁଲି ଯାଇଥିଲା । ଶେଷ ଡବା ପର୍ଯ୍ୟନ୍ତ ପହଞ୍ଚିବା ପୂର୍ବରୁ ଷ୍ଟିମ ଶୀତଳ ହୋଇ ଜଳ ହୋଇଯାଉଛି । ଅତଏବ ବ୍ରେକ-ସୁରେ ଚାପ ଦେବାର ଶକ୍ତି ରହୁନାହିଁ । ସେ ଏବେ ଦେଖିଲା ସେ ଖାଲି ଏତିକି ନୁହେଁ । ଶୀତଦିନେ ତାପ ଊଣା ହେଲେ ପାଇପ ଓ ସିଲିଣ୍ଡରରେ ଷ୍ଟିମ ଜମି ଯାଇ ଆଉ ଏକ ସମସ୍ୟା ସୃଷ୍ଟି କରିବ ।

ତାପର ମାତ୍ରା ବିଷୟ ସମ୍ପୂର୍ଣ୍ଣ ବାଦ ଦେଇ କୌଣସି ଉପାୟରେ କାର୍ଯ୍ୟ ସାଧନ ହୋଇପାରେ କି ନା, ଏ କଥା ସେ ଅନେକ ଦିନ ଯାଏ ଚିନ୍ତା କଲା । ଶେଷରେ ସେ ଏହି ସିଦ୍ଧାନ୍ତରେ ଉପନୀତ ହେଲା ଯେ ଷ୍ଟିମ ଦ୍ୱାରା ଏ କାର୍ଯ୍ୟ ହୋଇ ନ ପାରେ ।

ଏଥି ମଧ୍ୟରେ ଅନ୍ୟ ଏକ ସମସ୍ୟାର ଉଦ୍ଭବ ହେଲା । ତାଙ୍କ ବ୍ୟବସାୟର ଅଂଶୀଦାରମାନେ ଯେତେ ଆଶା କରି ଥିଲେ ସେତେ ପରିମାଣରେ ଗାଡ଼ିଜୁଡ଼ା ଯନ୍ତ୍ର ଓ ଫ୍ରଗ୍ର ବିକ୍ରି ହେଉ ନ ଥିଲା । ରାଓଲସ ଓ ଓସ୍ଥାଲଙ୍କର ଧୈର୍ଯ୍ୟ ନ ଥିଲା । ସେମାନେ ଚାହୁଁ ଥିଲେ ଯେ ସେମାନଙ୍କ ମୂଳଧନ ଉପରେ କିପରି ଶୀଘ୍ର ଶୀଘ୍ର ଲାଭ ମିଳି ଯିବ । ବ୍ୟବସାୟ ଗଢ଼ି ଉଠିବାକୁ ସମୟ ଲାଗିବ ବୋଲି ଜର୍ଜ ସେ ଦୁହିଁଙ୍କୁ କହୁଥିଲା । ସେ ବୁଝାଉଥିଲା, "ଢ଼ଳେଇ ଇସ୍ପାତରେ ତିଆରି ହୋଇ ଥିବାରୁ ଆମର ଯନ୍ତ୍ର-ଗୁଡ଼ିକ ବେଶୀ ଦିନ ଯାଉଛି, ସାରା ଦେଶରେ ଅସଂଖ୍ୟ ରେଲ କମ୍ପାନୀ ଅଛି । ଆମର ଯନ୍ତ୍ର ଯେ ବେଶୀ ଦିନ ଯାଉଛି ଏକଥା କ୍ରମେ କ୍ରମେ ସେମାନେ ଶୁଣିବାକୁ ପାଇବେ । ସେତେବେଳେ ସେମାନେ ସମସ୍ତେ ଆମରି ଜିନିଷ କିଣିବାକୁ ଚାହିଁବେ । କିନ୍ତୁ ଏ ସବୁ ସମୟସାପେକ୍ଷ । ଆମକୁ ଏଥିପାଇଁ ଅପେକ୍ଷା କରିବାକୁ ହେବ ।

ରାଓଲସ ବିରକ୍ତ ହୋଇ କହିଲେ, "ଭବିଷ୍ୟତରେ ଆମର କିଛି ଯାଏ ଆସେ ନାହିଁ । ଓସ୍ଥାଲ ଓ ମୁଁ ଏ ବ୍ୟବସାୟରେ ଅନେକ ଟଙ୍କା

ଲଗାଇଛୁ ଆମେ ଟଙ୍କା ଉପରେ ଲାଭ ଚାହୁଁ । 'କାଲି' 'କାଲି' ହେଲେ ଚଳିବ ନାହିଁ । ଆଜି ଲାଭ ଦରକାର ।''

କାରବାରରେ ମତଭେଦ ବୃଦ୍ଧି ପାଉଥିଲେ ହେଁ ଜର୍ଜ ବ୍ରେକ କଥା ଭୁଲି ଯାଇ ନ ଥିଲା । ଯେ କୌଣସି ପ୍ରକାରେ ଗୋଟାଏ ଉପାୟ ବାହାର କରିବା ଥିଲା ତାର ପ୍ରତିଜ୍ଞା ।

ଶେଷରେ ଅବସ୍ଥା ଏପରି ହେଲା ଯେ ବର୍ତ୍ତି କାର୍ଯ୍ୟରେ ଯେତେ ସମୟ ଯାଉଥିଲା, ତାହା ଛଡ଼ା ଅବଶିଷ୍ଟ ସମସ୍ତ ସମୟ ସେ ପିତାଙ୍କ କାରଖାନାରେ କଟାଇବାକୁ ଲାଗିଲା । ସେଠାରେ ସେ ନକ୍ସା ଆଙ୍କିବା ଓ ମଡେଲ ତିଆରି କରିବାରେ ବ୍ୟସ୍ତ ରହୁଥିଲା । ସେ ଯେ କେତେ ସମ୍ଭବ ଅସମ୍ଭବ କୌଶଳର ଚିନ୍ତା କରୁଥିଲା, ତାହାର ସୀମା ନ ଥିଲା । ସେଥିମଧ୍ୟରୁ ଅଧିକାଂଶକୁ କାଗଜରେ ଲେଖିବା ପୂର୍ବରୁ ବଦାୟ ଦେଉଥିଲା । ଯେଉଁଗୁଡ଼ିକ କାଗଜ ଉପରକୁ ନକ୍ସା ଆକାରକୁ ଆସୁଥିଲା, ସେଗୁଡ଼ିକରେ କିଛି ନା କିଛି ଦୋଷ ପରେ ଦେଖାଯାଉଥିଲା ତେଣୁ ସେଗୁଡ଼ିକୁ ମଧ୍ୟ ବାଦ ଦେବାକୁ ପଡ଼ୁଥିଲା ।

କାରଖାନାରେ ସକାଳ ଓଳି ଜର୍ଜର ଖାଇବା ପାଇଁ ମାର୍ଗାରେଟ ବଳେ ସାଣ୍ଡଉଇଚ ତିଆରି କରି ଦେଇ ଥିଲା । ସେ ତାହାକୁ ଖାଉଥାଏ, କିନ୍ତୁ ତାର ମନ କେଉଁ ସୁଦୂର ରାଜ୍ୟରେ ଭ୍ରମଣ କରୁଥାଏ । ସେ ସେହି କଳ୍ପନା ରାଜ୍ୟରେ ବୁଲି ନିଜ ସମସ୍ୟାର ଉତ୍ତର ଦେଖୁଥିଲା । ହଠାତ୍ ଜଣେ ସୁନ୍ଦରୀ ମହିଳାଙ୍କ ଆବିର୍ଭାବରେ ସେ ପ୍ରକୃତିସ୍ଥ ହୋଇଗଲା । ଏଥିରେ ତାର ବିସ୍ମୟର କାରଣ ଥିଲା । ସାଧାରଣତଃ ମହିଳାମାନେ କାରଖାନାକୁ ଆସୁ ନ ଥିଲେ । ଜର୍ଜ ପ୍ରଥମ ଥର ପାଇଁ ଏଠାରେ ଜଣେ ମହିଳାଙ୍କୁ ଦେଖିଲା ।

ସେ ନମ୍ର ଭାବରେ ପଚାରିଲା, "ଆପଣଙ୍କ ପାଇଁ କଅଣ କରିପାରେଁ ?

ମହିଳାଙ୍କର ବୟସ ପ୍ରାୟ ଊଣାଇଶ ବର୍ଷ । ସେ 'ଲିଭିଂ ଏଜ' ନାମକ ପତ୍ରିକାର ଗୋଟିଏ ସଂଖ୍ୟା ବଢ଼ାଇ ଦେଇ କହିଲେ ଯେ ସେ ଏହି ପତ୍ରିକା ବିକ୍ରୟ କରି ଏକ ନର୍ମାଲ ସ୍କୁଲରେ ନିଜର ପଢ଼ିବା ଖରଚ ଯୋଗାଡ଼ କରୁଅଛନ୍ତି ।

ଜର୍ଜର ମନେ ହେଲା ଯେ ଏହି ମହିଳାଙ୍କ ଚେହେରା ସହିତ ମାର୍ଗାରେଟର ଚେହେରାର କିଛି ସାଦୃଶ୍ୟ ଅଛି । ସେ ପତ୍ରିକାଟିର ପୃଷ୍ଠାଗୁଡ଼ିକୁ ଓଲଟାଇ ଗଲା । ଇଉରୋପରେ ଗୋଟିଏ ସୁଡ଼ଙ୍ଗ ତିଆରି ବିଷୟରେ ଏକ ପ୍ରବନ୍ଧ ଏଥିରେ ଥିଲା । ଏହି ଗୋଟିକ ଛଡ଼ା ଅନ୍ୟ କୌଣସି ପ୍ରବନ୍ଧ ପ୍ରତି ଜର୍ଜର ଆଗ୍ରହ ଜନ୍ମି ନ ଥିଲା । ମହିଳାଙ୍କ ମୁଖରୁ ଜଣା ପଡ଼ୁଥିଲା ଯେ ସେ ପତ୍ରିକା ପାଇଁ ଜଣେ ଗ୍ରାହକ ପାଇବେ ବୋଲି ଆଶାକରି ଆସିଛନ୍ତି । ତେଣୁ ଜଜ ତାଙ୍କୁ ନିରାଶ କରିବାକୁ ଇଚ୍ଛା ନ କରି ପଚାରିଲା, "ଏହି ପତ୍ରିକାର ଚାନ୍ଦା କେତେ ?"

ଉତ୍ସାହ ପାଇ ମହିଳା କହିଲେ, "ଦୁଇ ଡଲାର ।"

ନିଜର ମନର ଦୁର୍ବଳତା ବିଷୟ ଚିନ୍ତା କରି ଜର୍ଜ ଟିକିଏ ଅନୁତପ୍ତ ହେଲା । ସେ ପକେଟରୁ ଦୁଇ ଡଲାର ବାହାର କରି ମହିଳାଙ୍କୁ ଦେଲା । ମହିଳା ସଯତ୍ନରେ ଜର୍ଜର ନାମ ଓ ଠିକଣା ଚାନ୍ଦା ତାଲିକାରେ ଲେଖି ନେଲେ ।

ଏହି ଘଟଣାଟି ଜର୍ଜ ଏକବାରେ ଭୁଲି ଯାଇଥିଲା । କେତେକ ସପ୍ତାହ ପରେ 'ନିଉ ଏଜ' ପତ୍ରିକାର ଗୋଟିଏ ସଂଖ୍ୟା ତାହା ନିକଟରେ ପହଞ୍ଚିଲା । ସେ ଦିନ ସନ୍ଧ୍ୟା ବେଳେ ଖିଆପିଆ ଶେଷରେ ଜର୍ଜ ପିଲାଙ୍କ ସଙ୍ଗେ ବୈଠକ ଖାନାରେ ବସିଥିଲା । ହର୍ମାନ ନିଜ ପଢ଼ା କରିବାକୁ ଉପର ମହଲାକୁ ଚାଲିଗଲା । ମାର୍ଗାରେଟ ଓ ତାଙ୍କ ମାଆ ବାସନ ଧୋଇବାକୁ ରୋଷେଇ ଘରକୁ ଗଲେ । ଜର୍ଜ ପତ୍ରିକାଟିକୁ ଖୋଲି ପ୍ରଥମେ ସୂଚୀପତ୍ରଟି ପଢ଼ିଗଲା । ସେ ଦେଖିଲା ଯେ ମହିଳା ତାଙ୍କୁ ପତ୍ରିକାର ଯେଉଁ ସଂଖ୍ୟାଟି ସେଦିନ ଦେଖାଇ ଥିଲେ ଏହିଟି ସେହି ସଂଖ୍ୟା, ସେ ସେହି ପ୍ରବନ୍ଧଟିକୁ ପଢ଼ିବାରେ ଲାଗିଲା ।

ପ୍ରବନ୍ଧଟିର ନାମ ହେଉଛି, "ମଣ୍ଟ ସେନିସ ପାହାଡ଼ରେ ସୁଡ଼ଙ୍ଗ" ଫ୍ରାନସ୍-ଇଟାଲିର ସୀମାନ୍ତ ନିକଟରେ ଆଲ୍‌ପସ୍ ପର୍ବତରେ କପରି ଗୋଟିଏ ସାତ ମାଇଲ ଦୀର୍ଘ ସୁଡ଼ଙ୍ଗ ଖୋଳା ଯାଇଥିଲା, ଏଥିରେ ତାହାର ବିବରଣ ଦିଆ ଯାଇଥିଲା ।

ପର୍ବତରେ ସୁଡ଼ଙ୍ଗ ଖୋଳିବା ଏକ ବିରାଟ ସମସ୍ୟା ହୋଇ ରହିଥିଲା । ପ୍ରଚଳିତ ଇଞ୍ଜିନିଅରିଂ ପଦ୍ଧତିରେ ଏହି ସୁଡ଼ଙ୍ଗ ଖୋଳିଥିଲେ

ପଚିଶ ଷାଠିଏ ବର୍ଷ ଲାଗି ଯାଇଥାନ୍ତା । ଯେଉଁ ଇଞ୍ଜିନିଅରମାନଙ୍କ ଉପରେ ସୁଡ଼ଙ୍ଗ ଖୋଳିବାର ଦାୟିତ୍ୱ ଥିଲା, ସେମାନେ ଶୀଘ୍ର କାମ କରିବା ଉଦ୍ଦେଶ୍ୟରେ ପ୍ରଚଳିତ ପଦ୍ଧତି ପରିତ୍ୟାଗ କରି ଯନ୍ତ୍ର ଶକ୍ତି ଚାଳିତ ଖୋଦନ ଯନ୍ତ୍ର ବ୍ୟବହାର କଲେ । ଏଥିପୂର୍ବରୁ ଏପ୍ରକାର ଖୋଦନର ପରୀକ୍ଷା ସୁଦ୍ଧା ହୋଇ ନ ଥିଲା । ଖୋଦନ ଯନ୍ତ୍ରକୁ ଶକ୍ତି ଯୋଗାଇବା ପାଇଁ ସେମାନେ ଷ୍ଟିମ ବ୍ୟବହାର କରିବେ ବୋଲି ସ୍ଥିର କରିଥିଲେ । କିନ୍ତୁ ଦେଖାଗଲା ଯେ ଷ୍ଟିମ ପ୍ରସ୍ତୁତ କରିବା ଲାଗି ଯେଉଁ ଅଗ୍ନି ଜାଳିବାକୁ ହେଲା ସେଥିରେ ପାହାଡ଼ ଗର୍ଭରେ ଥିବା ସମସ୍ତ ବାୟୁ ନିଃଶେଷ ହୋଇଗଲା । ନିଶ୍ୱାସ ନେବା ପାଇଁ ମଧ୍ୟ କାରିଗରମାନଙ୍କୁ ବାୟୁ ମିଳିଲା ନାହିଁ ।

ଶେଷରେ ସୁଡ଼ଙ୍ଗର ଇଞ୍ଜିନିଅରମାନେ ଏକ ଅଭିନବ ଉପାୟରେ ଏହି ସମସ୍ୟାର ସମାଧାନ କରିଦେଲେ । ସେମାନେ ଷ୍ଟିମ ବ୍ୟବହାର ନ କରି ବ୍ୟବହାର କଲେ ସଙ୍କୋଚିତ ବାୟୁ । ହାଉଆ ପମ୍ପଟିଏ ନେଇ ତାହାକୁ ଷ୍ଟିମଚାଳିତ ଡ୍ରିଲ ସଙ୍ଗେ ସଂଯୁକ୍ତ କରାଗଲା । ଏହି ଡ୍ରିଲ ଜଣେ ଇଂରେଜଙ୍କ ଦ୍ୱାରା ଉଦ୍ଭାବିତ ହୋଇଥିଲା । ସଙ୍କୋଚିତ ବାୟୁର ଶକ୍ତିରେ ମୁହୂର୍ତ୍ତକ ମଧ୍ୟରେ ଏହି ଡ୍ରିଲ ପାହାଡ଼ର ବକ୍ଷ ଭେଦ କରିବାକୁ ଲାଗିଲା । ହାତରେ ଶାବଳଦ୍ୱାରା ଆଘାତ କରି ପଥର କାଟିବାକୁ ଯେତେ ସମୟ ଲାଗିଥାନ୍ତା, ଏହି ଉପାୟରେ ତାହାର ଶତାଂଶର ଏକ ଅଂଶ ସମୟରେ ସେହି କାର୍ଯ୍ୟ ହୋଇଗଲା । ଏହା ଛଡ଼ା ସଙ୍କୋଚିତ ବାୟୁର ବ୍ୟବହାର ଫଳରେ ସୁଡ଼ଙ୍ଗ ଭିତରର ବାୟୁ ଶେଷ ହୋଇଯିବା ପରିବର୍ତ୍ତେ କାରିଗରମାନଙ୍କୁ ବାୟୁ ଯୋଗାଇ ଦେଲା ।

ପ୍ରବନ୍ଧଟି ପଢ଼ୁ ପଢ଼ୁ ଜର୍ଜର ମସ୍ତିଷ୍କରେ ଗୋଟିଏ ନୂଆ କଳ୍ପନା ଖେଳିଗଲା

ଏହି ପ୍ରବନ୍ଧର ଉପସଂହାରରେ ଲେଖାଥିଲା—ସାଧାରଣ ବାୟୁକୁ ତାହାର ଆୟତନର ଏକ ଷଷ୍ଠାଂଶ ମଧ୍ୟରେ ସଙ୍କୋଚିତ କଲେ ଯେଉଁ ପ୍ରଚଣ୍ଡ ଶକ୍ତି ଉତ୍ପନ୍ନ ହୁଏ, ତାହାକୁ ଛାଡ଼ି ଦେଲେ ଛଅ ବାୟୁମଣ୍ଡଳ ଚାପ ସଙ୍ଗେ ସମାନ ହେବ । ଏହି ଶକ୍ତି ଗୋଟିଏ ରନ୍ଧ୍ରକାରୀ ଯନ୍ତ୍ରକୁ (Perforating machine) ଚଳାଇ ପାରିବ ।

ଉତ୍ତେଜନାରେ ଅସ୍ଥିର ହୋଇ ଜର୍ଜ ପତ୍ରିକାଟି ଫିଙ୍ଗିଦେଲା । ସଙ୍କୋଚିତ ବାୟୁ—ଏହି ଦୁଇଟି ଶବ୍ଦରେ ସେ ଏକ ବିରାଟ ସମସ୍ୟାର ସମାଧାନ ପାଇଁ ଉପାୟ ଦେଖିପାରିଲା ।

ବହୁକାଳ ପୂର୍ବରୁ ବୈଜ୍ଞାନିକମାନଙ୍କୁ ଜଣାଥିଲା ଯେ ବାୟୁର ଆୟତନ ଓ ଓଜନ ଅଛି । ଏବଂ ଏହାର ଶକ୍ତି ପ୍ରୟୋଗ କରିବାର ଦକ୍ଷତା ଅଛି । ପାଲବାଗ୍ରି ଜାହାଜ ବାୟୁଦ୍ୱାରା ଚାଳିତ ହୁଏ; ପବନଚକି ଏହାଦ୍ୱାରା ଚଳେ । ଆହୁରି ମଧ୍ୟ ବୈଜ୍ଞାନିକମାନେ ଜାଣିଥିଲେ ଯେ ସାଧାରଣ ଅବସ୍ଥାରେ ସମୁଦ୍ରଜଳପତ୍ତନରେ ଏକ ବର୍ଗଇଞ୍ଚ ପରିମିତ ସ୍ଥାନରେ ବାୟୁଚାପ ୧୪·୭ ପାଉଣ୍ଡ । ବୈଜ୍ଞାନିକ ପରିଭାଷାରେ ଏହାକୁ କୁହାଯାଏ 'ଏକ ବାୟୁମଣ୍ଡଳ ଚାପ' (One atmosphere) । ପଦାର୍ଥବିଜ୍ଞାନୀମାନେ ଅବଶ୍ୟ ବାୟୁ ସଙ୍କୋଚିତ କରି ଏକ ବାୟୁମଣ୍ଡଳ ଚାପରୁ ଅଧିକ ଚାପ ଉତ୍ପାଦନ କରି ନାନାରକମର ପରୀକ୍ଷା କରିଥିଲେ; କିନ୍ତୁ ଏ ପର୍ଯ୍ୟନ୍ତ ତାହାର କୌଣସି ବ୍ୟାବହାରିକ ପ୍ରୟୋଗ ହୋଇ ନ ଥିଲା ।

ଜର୍ଜ ତତ୍‌କ୍ଷଣାତ୍ ବୁଝି ପାରିଲା ଯେ ଇଞ୍ଜିନିଅରମାନେ ସଙ୍କୋଚିତ ବାୟୁରେ ଅଦ୍ଭୁତପୂର୍ବ ଶକ୍ତିର ସମ୍ଭାବନା ଦେଖି ପାରିଅଛନ୍ତି । ପତ୍ରିକାର ପ୍ରବନ୍ଧ ଅନୁସାରେ ଏହା ତିନିହଜାର ଫୁଟ ଦୀର୍ଘ ପାଇପରେ ନିଆ ଯାଇଥିଲେ ମଧ୍ୟ ଏଥିରେ କଠିନ ପଥର କାଟିବା ପାଇଁ ଯଥେଷ୍ଟ ଶକ୍ତିଥିଲା । ତାହାହେଲେ ଟ୍ରେନର ସମାନ ଲମ୍ବା ପାଇପରେ ସଙ୍କୋଚିତ ବାୟୁ ଚାଳିତ କଲେ ଏଥିରେ ଡବାଗୁଡ଼ିକର ବ୍ରେକଗୁଡ଼ିକ ଟାଣି ଚକରେ ଲଗାଇ ଟ୍ରେନକୁ ତତ୍‌କ୍ଷଣାତ୍ ବନ୍ଦ କରିବାର ଶକ୍ତି ନ ରହିବ କାହିଁକି ?

ଷ୍ଟୀମ ଶୀତଳ ହେଲେ ଜଳ ବିନ୍ଦୁରେ ପରିଣତ ହୋଇଯାଏ । ତେଣୁ ବ୍ରେକ ଉପରେ ଚାପ କମିଯାଏ । ଏଥିରେ ସେ ପ୍ରକାର ଆଶଙ୍କା ନାହିଁ । ସଙ୍କୋଚିତ ବାୟୁର ଶକ୍ତି ପ୍ରୟୋଗ କରାଗଲେ ପ୍ରକାଣ୍ଡ ସିଲିଣ୍ଡର ବା କପିକଳ ଏ ସବୁ କିଛି ଦରକାର ହେବ ନାହିଁ । ଏହି ମାର୍ଗରେ ଗତି କଲେ ସଫଳ ହେବାର ନିଶ୍ଚିତ ସମ୍ଭାବନା ଅଛି ।

ଜର୍ଜର ଚିନ୍ତାଧାରା ପ୍ରବଳ ବେଗରେ ଗତି କରିବାକୁ ଲାଗିଲା । ଅଭ୍ୟାସବଶତଃ ସେ ପକେଟରୁ ପେନ୍‌ସିଲ ବାହାର କରି ଗୋଟାଏ

ଶଠିଖୋଳ ଉପରେ ନକ୍ସା ଆରମ୍ଭ କରିଦେଲା । ପ୍ରଥମେ ସେ ଅନେକ ଗୁଡ଼ିଏ ପାଇପ ଆଙ୍କିଲା । ସେ ମନେ ମନେ ଚିନ୍ତା କଲା—ଏହି ପାଇପ-ଗୁଡ଼ିକ ଭିତର ଦେଇ ସଙ୍କୋଚିତ ବାୟୁ ଚାଳିତ ହେବ । ଦୁଇ ଡବାର ମଝିରେ ଧାତବ ପାଇପଗୁଡ଼ିକ ଯୋଡ଼ାହେବ ସଙ୍କୋଚନ ପ୍ରସାରଣଶୀଳ ଯୁଗ୍ମକ (Coupling) ଦ୍ୱାରା । ତାହାହେଲେ ଟ୍ରେନ ବାଙ୍କ ବୁଲିବାବେଳେ ପାଇପଗୁଡ଼ିକ ବଙ୍କେଇ ଯିବ ନାହିଁ କି ଭାଙ୍ଗିବ ନାହିଁ । ଏହି ପାଇପଗୁଡ଼ିକ ଯାଇ ଇଞ୍ଜିନରେ ଶେଷ ହେବ । ଠିକ୍ ଯେପରି ସେନିସ ପାହାଡ଼ରେ କରାଯାଇଥିଲା, ସେଠାରେ ସେହିପରି ପମ୍ପଦ୍ୱାରା ବାୟୁ ସଙ୍କୋଚିତ କରାଯିବ । ଇଞ୍ଜିନରୁ ଷ୍ଟୀମ ସାହାଯ୍ୟରେ ପମ୍ପ ଚାଳିତ ହେବ । ସଙ୍କୋଚିତ ବାୟୁର ଗତି ନିୟନ୍ତ୍ରଣ କରିବା ପାଇଁ ଭଲ୍‌ଭର ବ୍ୟବସ୍ଥା ରହିବ । ସ୍ୱୟଂ ଇଞ୍ଜିନ ଚାଳକ ଏହାକୁ ଚଳାଇବ । ପ୍ରତ୍ୟେକ ଡବାରେ ଗୋଟିଏ ଲେଖେ ସିଲିଣ୍ଡର ଓ ପିଷ୍ଟନ ରହିବ । ଏଗୁଡ଼ିକ ବ୍ରେକଶୁ ଉପରେ ଚାପ ଦେବେ ।

ଏ ତ ଅତି ସହଜ ବ୍ୟବସ୍ଥା !

ଜର୍ଜ ନିଜର ଚିନ୍ତାରେ ଏପରି ବିଭୋର ହୋଇ ପଡ଼ିଥିଲା ଯେ ଏଥି-ମଧ୍ୟରେ ମାର୍ଗାରେଟ ଓ ତାର ମାଆ ବୈଠକଖାନା ଭିତରକୁ ଆସି ସାରିଥିଲେ ବୋଲି ସେ ଲକ୍ଷ୍ୟ କରି ପାରି ନ ଥିଲା । ସେ ବିସ୍ମିତଭାବରେ ସେହି ଭଙ୍ଗା ଶଠି ଖୋଳ ଉପରେ ନକ୍ସା ଆଙ୍କିବାରେ ଲାଗିଥାଏ । ଗତ ତିରିଶ ବର୍ଷ ଧରି ଯେଉଁ ସମସ୍ୟା ରେଲକର୍ମଚାରୀମାନଙ୍କୁ ବ୍ୟତିବ୍ୟସ୍ତ କରି ଆସିଥିଲା, ତାକୁ କଅଣ ସେ ଅଧଘଣ୍ଟା ମଧ୍ୟରେ ସମାଧାନ କରିଦେଲା ? ଏହା କି କେବେ ସମ୍ଭବ ?

"କହୋ ଜର୍ଜ, କଅଣ କରୁଛ ? ତୁମେ ତ ଏ ଦୁନିଆଁ ବାହାରେ ଥିଲା ପରି ଜଣା ପଡ଼ୁଛି ।"

ମାର୍ଗାରେଟର କଣ୍ଠ ସ୍ୱର ଶୁଣି ଜର୍ଜ ଚମକି ପଡ଼ିଲା । ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ ଖବର କାଗଜ ଉପରୁ ମୁହଁ ଟେକି ପୁଅ ଆଡ଼କୁ ଚାହିଁରେ ମାଆ ସ୍ନେହପୂର୍ଣ୍ଣ ହସଟିଏ ହସି ଦେଇ କହିଲେ, "ନିଶ୍ଚୟ ଜର୍ଜ ଗୋଟାଏ କଅଣ ନୂଆ ଯନ୍ତ୍ରର କଳ୍ପନାରେ ମାତି ଯାଇଛି । ତାର ଅନ୍ୟ ମନସ୍କତା ଦେଖି ମୁଁ ଏହା ଜାଣି ପାରୁଛି ।"

ସ୍ତ୍ରୀ, ବାପା ମାଆଙ୍କୁ ଦେଖି ଜର୍ଜ କଅଣ କହିବ ଠିକ୍ କରି ପାରିଲା ନାହିଁ । ଶେଷରେ ସେ ନକ୍ସାଟିକୁ ଠେକ ସମସ୍ତେ ଦେଖି ପାରିଲା ଭଳି ଧରି ଧୀର ସ୍ୱରରେ କହିଲା, "ମୋର ମନେ ହୁଏ ରେଲଗାଡ଼ି ବନ୍ଦ କରିବାର ଗୋଟିଏ ଉପାୟ ଏବେ ବାହାର କରି ପାରିଛି "

କେତେକ ସମୟ ଯାଏ କେହି କିଛି କହିଲେ ନାହିଁ । ତତ୍ପରେ ମାର୍ଗାରେଟ ନୀରବତା ଭଙ୍ଗ କରି କହିଲା, "ଏତ ବଡ଼ ଆନନ୍ଦର ବିଷୟ । କିନ୍ତୁ ମନେ ଥିବ, ତୁମେ ଆଉ ଥରେ ଏହିପରି ଗୋଟାଏ ଉପାୟ ବାହାର କରିଥିଲ । ମାତ୍ର ଶେଷକୁ ସେଥିରେ ଟିକିଏ କଅଣ ଭୁଲ ରହିଗଲା । ତେଣୁ ଏତେ ଉତ୍ସାହିତ ହେବା ଠିକ୍ ନୁହେଁ ।" ମାତ୍ର ଜର୍ଜ ଦୃଢ଼ ଆତ୍ମପ୍ରତ୍ୟୟ ପ୍ରକାଶ କରି କହିଲା, "କିନ୍ତୁ ଏଥର କୌଣସି ଭୁଲ ନାହିଁ । ଏହା ମୁଁ ଠିକ୍ କରି ଜାଣେ ।

ଏତେବେଳଯାଏ ମିଷ୍ଟର ଓ୍ୱେଷ୍ଟିଂହାଉସ ଚୁପ ରହି କେବଳ ଅନ୍ୟମାନଙ୍କ କଥାବାର୍ତ୍ତା ଶୁଣୁଥିଲେ । ଖବର କାଗଜଟା ଆଡ଼େଇ ଦେଇ ସେ କହିଲେ, "ବୋଧ ହୁଏ, ଏଥର ତୋର କୌଣସି ସନ୍ଦେହ ନାହିଁ; ମାତ୍ର କଥାଟା କଅଣ ଟିକିଏ ଶୁଣେ । ପୁଣି ସେହି ଷ୍ଟୀମ ନା ଆଉ କିଛି ?

"ନା, ବାପା ! ଷ୍ଟୀମ ନୁହେଁ ; ବାୟୁ ।"

ମିଷ୍ଟର ଓ୍ୱେଷ୍ଟିଂହାଉସ ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ, "କଅଣ ବାୟୁ ?"

"ହଁ ବାପା । ସଙ୍କୋଚିତ ବାୟୁ । ଏହାର ପ୍ରୟୋଗ ବିଷୟ କେହି ଭାବି ନ ଥିଲେ । ଏହା ହେଉଛି, ଏକ ପ୍ରକାର ବାୟୁର ନିୟନ୍ତ୍ରଣ ।"

ଏହାପରେ ପଞ୍ଚିକାଟି ଦେଖାଇ ଜର୍ଜ ସମସ୍ତ କୌଶଳ ବୁଝାଇ ଦେଲା । ମିଷ୍ଟର ଓ୍ୱେଷ୍ଟିଂହାଉସ ଚଟି ଖୋଲ ଉପରେ ନକ୍ସାଟି ଦେଖି ସନ୍ଦେହରେ ମୁଣ୍ଡ ହଲାଇଲେ । ବ୍ୟାପାରଟା ଯେ ସମ୍ଭବପର ହୋଇ ପାରେ ଏଥିରେ ତାଙ୍କର କୌଣସି ମତେ ବିଶ୍ୱାସ ହେଲା ନାହିଁ ।

ସେଦିନ ରାତିରେ ଜର୍ଜ ବିଛଣାରେ ପଡ଼ି କେବଳ ଛଟପଟ ହେଉଥାଏ । ମାର୍ଗାରେଟ ବାରମ୍ବାର ଉଠି ପଚାରୁଥାଏ, "ତୁମର କଅଣ ହେଉଛି ?" ଜର୍ଜ ବୁଝାଇ ଦେଲା ଯେ ଉତ୍ତେଜନା ହେତୁରୁ ତାର ନିଦ ହେଉନାହିଁ । ଶେଷରେ ସ୍ତ୍ରୀର ପରାମର୍ଶରେ ସେ ଗିଲାସେ ଗରମଦୁଧ ପିଇ ଦେଇ ବୈଠକ ଖାନାରେ ଆଲୁଅ ଜାଳି ଖଣ୍ଡିଏ ବହି ଧରି ବସି ପଡ଼ିଲା । କିନ୍ତୁ ବହିରେ ତାର ମନ ଆଦୌ ଲାଗିଲା ନାହିଁ । ଶେଷରେ ସେ ବହି ରଖି ଦେଇ ବିଛଣାରେ ପଡ଼ି ରହି ନୂତନ କୌଶଳ ବିଷୟରେ ଭାବିବାକୁ ଲାଗିଲା । ପାହାନ୍ତା ବେଳକୁ ଟିକିଏ ନିଦ ଲାଗିଗଲା ।

ନୂତନ କୌଶଳଟିର ଗୋଟିଏ ପୂର୍ଣ୍ଣାଙ୍ଗ ନକ୍ସା ଆଙ୍କିବାରେ ସେ ଲାଗି ପଡ଼ିଲା । ଅନେକ ଯାନ୍ତ୍ରିକ ସମସ୍ୟାର ବିଚାର କରିବାକୁ ପଡ଼ିଲା । ତାର ଅବସର ଥିଲା ଖୁବ ଅଳ୍ପ । କାରଣ ତାକୁ ରାଓଲସ-ଓପ୍ଲାଲ-ଓସ୍ୱେଷ୍ଟିଙ୍ଗହାଉସ କମ୍ପାନୀର ପ୍ରଧାନ ବିକ୍ରେତାର କାର୍ଯ୍ୟ କରିବାକୁ ହେଉଥିଲା । ପ୍ରକୃତ ପକ୍ଷରେ ସେ କମ୍ପାନୀର ଏକମାତ୍ର ବିକ୍ରେତା ଥିଲା । ତଥାପି ଯେଉଁ ଅଳ୍ପ ସମୟ ମିଳୁଥିଲା, ସେଥିରେ ସେ କଠିନ ପରିଶ୍ରମ କରି ଦୁଇ ମାସ ମଧ୍ୟରେ ନକ୍ସାଟି ସମ୍ପୂର୍ଣ୍ଣ କଲା । ଏହାପରେ ସେ ଗୋଟିଏ ପରୀକ୍ଷାମୂଳକ ମଡେଲ କରିବା ଦିଗରେ ମନ ବଳାଇଲା । କିନ୍ତୁ ଏହି ସମୟରେ ୧୮୭୮ ମସିହାର ନଭେମ୍ବର ମାସରେ ହଠାତ୍ ଏହି କାର୍ଯ୍ୟ ବନ୍ଦ କରିବାକୁ ହେଲା ।

ବ୍ୟବସାୟ ସମ୍ପର୍କରେ ଥରେ ସେ ଆଲବାନି ଯାଇଥିଲା । ଦିନେ ଉପରବେଳା ସେଠାରୁ ଫେରିଆସି ସେ ଦେଖିଲା ଯେ ତାର ଅନ୍ୟ ଦୁଇ ଅଂଶୀଦାରଙ୍କ ପାଖରୁ ଗୋଟିଏ ଜରୁରି ସମ୍ବାଦ ଉପସ୍ଥିତ । ମାର୍ଗାରେଟ କହିଲା, "ସେମାନେ ତୁମ୍ଭ ସଙ୍ଗେ ବର୍ତ୍ତମାନ ଦେଖାକରିବାକୁ ଚାହାନ୍ତି । ମିଷ୍ଟର ରାଓଲସ କହିଛନ୍ତି ଯେ ଖୁବ୍ ଜରୁରି କାମ ଅଛି । ଘଟନା କଅଣ କିଛି ଗଣ୍ଡଗୋଳ ହୋଇଛି କି ?"

ଜର୍ଜ ଉତ୍ତର କଲା, "କିଏ ଜାଣେ ? ଗଲା ଛଅ ମାସ ହେଲା ଦୁହେଁ ଯାକ ମୋତେ ବଡ଼ ବ୍ୟତିବ୍ୟସ୍ତ କରୁଛନ୍ତି । ସେମାନଙ୍କର ପ୍ରଧାନ ଆପତ୍ତି, କମ୍ପାନୀର ଲାଭ ହେଉନାହିଁ ।"

ଗୋଟାଏ ପୁରୁଣା ତଳେଇ କାରଖାନା ଘରେ କମ୍ପାନୀର ପ୍ରଧାନ ଅଫିସ । ଜର୍ଜ ସେଠାରେ ପହଞ୍ଚି ଦେଖିଲା ଯେ ଗ୍ରିଓଲସ ଓ ଓପ୍ୟାଲ ଦୁହେଁ ଗମ୍ଭୀର ଭାବରେ ବସି ତାଙ୍କୁ ଅପେକ୍ଷା କରି ରହିଛନ୍ତି । ଦୁହିଁଙ୍କ ପକ୍ଷରୁ କେବଳ ଗ୍ରିଓଲସ କଥାବାର୍ତ୍ତା କଲେ । ସେ କହିଲେ ଯେ ବିକ୍ରିର ପରିମାଣ ଆଶାନୁରୂପେ ବୃଦ୍ଧି ପାଉନାହିଁ । ତେଣୁ କମ୍ପାନୀର ପୁନର୍ଗଠନ ଆବଶ୍ୟକ ।

ଜର୍ଜ ଆପତ୍ତି ଜଣାଇ କହିଲା, "କିନ୍ତୁ ପୁନର୍ଗଠନର ଦରକାର କଅଣ ? ଅଳ୍ପ ହେଲେ ମଧ୍ୟ ଆମର ଲାଭ ହେଉଛି, ମୂଳଧନରେ କ୍ଷତି ହୋଇ ନାହିଁ । ବ୍ୟବସାୟର ଅଭିବୃଦ୍ଧି ପାଇଁ ସମୟ ଦରକାର । ଆପଣ-ମାନେ ଯଦି ଅପେକ୍ଷା କରନ୍ତି...... ।"

ଗ୍ରିଓଲସ ବାଧା ଦେଇ କହିଲେ, "ଆଉ ଅପେକ୍ଷା କରିବାକୁ ଆମର ଧୈର୍ଯ୍ୟ ନାହିଁ । ମୁଁ ଆଉ ମିଷ୍ଟର ଓପ୍ୟାଲ ଉଭୟେ ବ୍ୟବସାୟୀ ଲୋକ । ଯଦି ବ୍ୟବସାୟରେ ଶୀଘ୍ର ଲାଭ ନ ମିଳିଲା, ତେବେ ଆମ ଆଗରେ ଗୋଟିଏ ମାତ୍ର ପନ୍ଥା ଉନ୍ମୁକ୍ତ ଅଛି । ନିଜ ନିଜର ଅଂଶ ବିକି କାରବାର ବନ୍ଦ କରି ଦେବା ।"

କଥାର ଭଙ୍ଗୀରେ ଜର୍ଜ ସ୍ତମ୍ଭୀଭୂତ ହୋଇଯାଇ କହିଲା, "ଆପଣଙ୍କର ଉଦ୍ଦେଶ୍ୟ କଅଣ ସ୍ପଷ୍ଟ କରି କହନ୍ତୁ ।"

"ବେଶ୍, ତାହାହେଲେ ଆମର ଯାହା କହିବାର କଥା, ସ୍ପଷ୍ଟ କରି ବୁଝାଇ ଦେଉଛି; ଶୁଣ । ଏପରି ଏକ ଗ୍ରୋଟ ବ୍ୟବସାୟରେ ତିନି ଜଣ ଅଂଶୀଦାର ରହିବା ସମ୍ଭବପର ନୁହେଁ । ତୁମ୍ଭେ ଆମ ଦୁହିଁଙ୍କର ଅଂଶ କିଣି ନେଇ ଏକା ବ୍ୟବସାୟ ଚଳାଅ; କିମ୍ବା ତୁମ୍ଭେ ଅଲଗା ହୋଇଯାଅ । ଆମ୍ଭେ ବ୍ୟବସାୟ ଚଳାଇବୁ ।" ଗ୍ରିଓଲସ ଏହିପରି କହିଲେ ।

ଓପ୍ୟାଲ ଟିକିଏ ମୋଟା ଓ ଖର୍ବ କାୟ । ତାଙ୍କ ଦେହରୁ ଝାଳ ବୋହିଯାଉଥିଲା । ସେ କିଛି ନ କହି କେବଳ ମୁଣ୍ଡ ଟୁଙ୍ଗାରି ଗ୍ରିଓଲସଙ୍କ କଥାରେ ସମର୍ଥନ ଜଣାଇଲେ ।

ଟିକିଏ ଚକିତ ଭାବରେ ଜର୍ଜ କହିଲା, "ଆପଣମାନଙ୍କର ଅଂଶ କିଣିବାକୁ ଯେ ମୋର ସାମର୍ଥ୍ୟ ନାହିଁ, ଏ କଥା ଜଣାଶୁଣା । ମୁଁ ବ୍ୟବସାୟ ଛାଡ଼ି ଦେଲେ ମୋର ପେଟେଣ୍ଟ ବାବଦରେ ମୁଁ କେତେ ପାଇବି କହନ୍ତୁ ।"

"କିଛି ନାହିଁ ।"

ଜର୍ଜ ବିସ୍ମିତ ହୋଇ କହିଲା, "ଆପଣ କଅଣ କହୁଛନ୍ତି ? କିଛି ପାଇବି ନାହିଁ କିପରି ? ଗାଡ଼ିଜଠା ଯନ୍ତ୍ର ଓ ଫ୍ରଗ୍ ମୋର ଉଦ୍ଭାବନ । ଆପଣ ମନେ କରୁଛନ୍ତି ଯେ ମୁଁ ମୋର ପେଟେଣ୍ଟ ଅଧିକାରକୁ ବିନା ମୂଲ୍ୟରେ ଆପଣଙ୍କୁ ଦାନ କରିଦେବି ?"

ୱାଓଲିସ ପୁଣି କହିଲେ; "ତୁମ୍ଭର ଆମଠାରୁ କିଛି ପାଇବାର ନାହିଁ । ଆମେ ଟଙ୍କା ଖଟେଇଛୁ । ତୁମେ ସେ ଟଙ୍କାରେ କାରବାର ଚଳାଇଛ । ବିକ୍ରେତା ହିସାବରେ ସମୟ ଦେବା ଛଡ଼ା ତୁମେ ପଇସାଟିଏ ଦେଇ ନାହଁ । ସେଇଥି ପାଇଁ ମଧ୍ୟ ତୁମେ ଲାଭର ଏକ ତୃତୀୟାଂଶ ଭାଗ ପାଉଛ । ଆମେ ଏବେ ଠିକ୍ କରିଛୁ ଯେ ଜଣେ ଲୋକକୁ ଦରମା ଦେଇ ବିକି ପାଇଁ ରଖିବୁ । ବ୍ୟବସାୟ ମାନ୍ଦା ଦେଖାଗଲେ ତାକୁ ମଧ୍ୟ ବିଦାୟ କରି ଦେବୁ ।

ପ୍ରତି ମୁହୂର୍ତ୍ତରେ ଜର୍ଜର ମିଜାଜ ବେଶି ବେଶି ଗରମ ହୋଇ ଯାଉଥିଲା । ପିଲାଟି ଦିନୁଁ ତାର ମିଜାଜ ଏହିପରି । ତା ପ୍ରତି କେହି ଅନ୍ୟାୟ କଲେ ସେ ନିଜକୁ ସମ୍ଭାଳି ପାରୁ ନଥିଲା । ସେଥିପାଇଁ ତାକୁ ଅନେକ ସମୟରେ ଅସୁବିଧାରେ ପଡ଼ିବାକୁ ହେଉଥିଲା । ଏହି ଘଟନାରେ ସେ ବହୁକଷ୍ଟରେ ନିଜକୁ ସମ୍ଭାଳି ନେଇ କହିଲା, "ମୁଁ ମଧ୍ୟ ମୋର ବୁଦ୍ଧି, ଦକ୍ଷତା ଏହି ବ୍ୟବସାୟରେ ଖଟାଇଛି । ତାର କଅଣ କିଛି ମୂଲ୍ୟ ନାହିଁ ?"

ୱାଓଲିସ ବ୍ୟଙ୍ଗ କଲା ପରି କହିଲେ, "ଓଃ ବୁଦ୍ଧି, ଦକ୍ଷତା ! ସେ ସବୁ ବାଜେ କଥା । ଅସଲ କଥା ହେଉଛି ଟଙ୍କା ।"

କ୍ରୋଧ ଓ ନୈରାଶ୍ୟରେ ଅନ୍ଧ ହୋଇ ଜର୍ଜ କହିଲା, "ଆପଣମାନେ କି ପ୍ରକାରର ଲୋକ ମୁଁ ବୁଝି ପାରୁନାହିଁ । ଆପଣମାନଙ୍କର କଅଣ ଟିକିଏ ହେଲେ ନ୍ୟାୟ କି ଭଦ୍ରତାର ବିଚାର ନାହିଁ ?"

ୱାଓଲିସ ଉତ୍ତର କଲେ, "ସେ ସବୁ ବାଜେ କଥା । ବ୍ୟବସାୟ ହେଉଛି ବ୍ୟବସାୟ ।"

ଓୟାଲ ପ୍ରତିଧ୍ୱନି କଲା ପରି କହିଲେ, "ହଁ ଠିକ୍, ବ୍ୟବସାୟ ତ ହେଉଛି ବ୍ୟବସାୟ ।"

ଜର୍ଜ ରାଗିଯାଇ କହିଲା, "ତାହାହେଲେ ଆଜିଠାରୁ ଆମେ ଅଲଗା ହୋଇଗଲୁଁ । କିନ୍ତୁ ମନେ ରଖିଥାନ୍ତୁ, ଏଣିକି ମୋର ପେଟେଣ୍ଟ ବ୍ୟବହାର କଲେ ଆପଣମାନଙ୍କୁ ମୋର ନ୍ୟାଯ୍ୟ ରୟାଲଟି ଦେବାକୁ ପଡ଼ିବ ।"

"ମୋଟେ ନୁହେଁ । ଆଗପରି ଆମେ ଇଚ୍ଛାନୁସାରେ ତୁମର ପେଟେଣ୍ଟ ବ୍ୟବହାର କରିବୁ । ସେ ଅଧିକାର ତୁମେ ପ୍ରଥମରୁ ଦେଇ ସାରିଛ । ଏ କଥା ଭୁଲି ଯାଉଛ କିପରି ?"

"ହଁ, କମ୍ପାନୀକୁ ଦେଇଥିଲି; କିନ୍ତୁ ଥରେ କମ୍ପାନୀ ଭାଙ୍ଗିଗଲେ ମୋର ପେଟେଣ୍ଟ ବ୍ୟବହାର କରିବାକୁ ଆପଣମାନଙ୍କର ଅଧିକାର ରହିଲା କିପରି ?

ଗାଓଲସ କହିଲେ, "ସେ କଥା ଦେଖାଯିବ । ସେ ବିଷୟରେ ଅଦାଲତ କିଛି କହିପାରେ । ତୁମେ ନୁହେଁ ।"

ସ୍ଥାନ ତ୍ୟାଗ କରିବା ପୂର୍ବରୁ ଜର୍ଜ ଫକ୍ଷେପରେ କହିଲା, "ଅଦାଲତ କଅଣ କହିବ, ତାହା ଦେଖି ନେବାକୁ ମୁଁ ମଧ୍ୟ ପ୍ରସ୍ତୁତ ।"

ବାହାରେ ଏତେ ଶୀତ ଯେ ଗରମ ପୋଷାକ ପିନ୍ଧି ଥିଲେ ସୁଦ୍ଧା ଜର୍ଜର ହାଡ଼ କମ୍ପି ଯାଉଥିଲା । ଏହି ସାକ୍ଷାତ ବଡ଼ ଅପ୍ରୀତକର ବୋଧ ହେଲା । ଗାଓଲସ ଓ ରୟାଲ ଭାବିଥିଲେ ଯେ ସେ ଦୁହେଁ ଜର୍ଜକୁ ଫାଙ୍କି ଦେଇ ତାର ଅଂଶଟାକୁ ମାରି ନେବେ; କିନ୍ତୁ ସେମାନେ କଳ୍ପନା କରି ନ ଥିଲେ ଯେ ଜର୍ଜ ମଧ୍ୟ ସେମାନଙ୍କୁ ବେଖାତିର କରି ପାରେ । ଏବେ ସେମାନଙ୍କର କିଛି ଉପାୟ ରହିଲା ନାହିଁ ।

ଗୋଟାଏ ପୁରୁଣା ଗପ ଅଛି ଯେ ଜଣେ ଲୋକର ମୁରଗୀଟି ପ୍ରତି ଦିନ ଗୋଟିଏ ଲେଖାଏଁ ସୁନାର ଡିମ୍ବ ଦେଉଥିଲା । ମାତ୍ର ସେ ଏକା-ବେଳକେ ସବୁ ସୁନାଡ଼ିମ୍ବ ପାଇବ ବୋଲି ତାକୁ ମାରି ସର୍ବସ୍ୱ ହରାଇଥିଲା । ଏବେ ଗାଓଲସ ଓ ଓୟାଲଙ୍କର ସେହି ଦଶା ଘଟିଲା ।

ଏହି ଅଭିଜ୍ଞତାରୁ ଜର୍ଜ ଗୋଟିଏ ବହୁମୂଲ୍ୟ ଶିକ୍ଷା ପାଇଲା । ସୁପରି-ଣ୍ଟେଣ୍ଡେଣ୍ଟ ଟାଉନଙ୍କ ସଙ୍ଗେ ସେ ପ୍ରଥମେ ବନ୍ଧି କାରବାର କରି ଭାବିଥିଲା ଯେ ବ୍ୟବସାୟ କରିବା ବଡ଼ ସହଜ । କିନ୍ତୁ ସେ ଏବେ ଶିଖିଲା ଯେ ବ୍ୟବସାୟରେ ଉନ୍ନତି କରିବା ଏତେ ସହଜ ନୁହେଁ । ଏତେ ଦୁରବସ୍ଥାରେ

ଚିତ୍ତ ମଧ୍ୟ ସେ ହସି ଉଠିଲା । ମନୁଷ୍ୟର ପ୍ରକୃତ ବିଷୟରେ ତାର ନୂତନ ଜ୍ଞାନ ଜନ୍ମିଲା ଯେ ଜଗତରେ ନିଜର ସ୍ୱାର୍ଥ ଲାଗି ଅନ୍ୟର ସର୍ବସ୍ୱ ଲୁଣ୍ଠନ କରିବା ଲୋକର ଅଭାବ ନାହିଁ । ନିମ୍ନ ସ୍ୱରରେ ସେ ମନକୁ ମନ କହିଲା, ଭଗବାନ କରନ୍ତୁ, ଅନ୍ୟକୁ ଉପଯୁକ୍ତ ମୂଲ୍ୟ ନ ଦେଇ ତାର ଜିନିଷକୁ ଆତ୍ମସାତ୍ କରିବାର ପ୍ରବୃତ୍ତି ମୋର ଯେପରି ନହୁଏ ।"

ଘର ନିକଟବର୍ତ୍ତୀ ହେବାରୁ ତାର ପ୍ରଧାନ ଚିନ୍ତା ହେଲା, କିପରି ସେ ଏହି ଦୁଃସମ୍ବାଦ ମାର୍ଗାରେଟ୍‌କୁ ଜଣାଇବ । ମାତ୍ର ବାଇଶି ବର୍ଷ ବୟସରେ, ଗୋଟିଏ ବର୍ଷର ବୈବାହିକ ଜୀବନ ଅତିବାହିତ କରି ସେ କିପରି ନିଜର ପତ୍ନୀ ନିକଟରେ ପ୍ରକାଶ କରିବ ଯେ ତାର ସକଳ ଉଦ୍ୟମ ବିଫଳ ହୋଇଅଛି; ଭବିଷ୍ୟତ ପାଇଁ ତାର ଅର୍ଥ ନାହିଁ କି ଅର୍ଥାଗମର ସମ୍ଭାବନା ମଧ୍ୟ ନାହିଁ । ସମ୍ବଳ ଅଛି କେବଳ ଏକ ଅଦ୍ଭୁତ କଳ୍ପନା—ସଞ୍ଚାପିତ ବାୟୁ ଦ୍ୱାରା ଟ୍ରେନରେ ବ୍ରେକ ଦେବାର କୌଶଳ ।

---

ପାଞ୍ଚ

# ଏୟାର ବ୍ରେକର ଜନ୍ମ

"ମାର୍ଗାରେଟ ଓ ମୁଁ ପିଟସବର୍ଗ ଯିବୁ ବୋଲି ସ୍ଥିର କରିଛୁ ।"

୧୮୬୮ ମସିହା ଡିସେମ୍ବର ମାସ ପ୍ରଥମ ଭାଗରେ ଦିନେ ଜର୍ଜଠାରୁ ଏହି କଥା ଶୁଣି ତାର ବାପମାଆ ବିସ୍ମିତ ହୋଇ ଗଲେ । ଏଥି ପୂର୍ବରୁ ଏ ବିଷୟରେ ତାର ମାର୍ଗରେଟ ସାଥିରେ ପରାମର୍ଶ ହୋଇଥିଲି । ଏବେ ତାହାର ସମ୍ମତି ନେଇ ଜର୍ଜ ବାପମାଆଙ୍କ ଆଗରେ କଥାଟା ଉତ୍‌ଥାପନ କଲି ।

ମିସେସ ଓ୍ୱେଷ୍ଟିଙ୍ଗହାଉସ ଉଦ୍‌ବିଗ୍ନ ହୋଇ କହିଲେ, "ପିଟିସବର୍ଗ ? ପିଟିସବର୍ଗ କାହିଁକି ଯିବ ? ସେତ ବହୁତ ଦୂର; ପେନ୍‌ସିଲଭାନିଆର ପଶ୍ଚିମରେ ।"

ଧୀର ଭାବରେ ଜର୍ଜ ବୁଝାଇ ଦେଲି ଯେ "ସେଠାରେ ଆଣ୍ଡରସେନ ଏଣ୍ଡବ୍ରୁକ୍ ନାମରେ ଗୋଟିଏ ଇସ୍ପାତ କମ୍ପାନୀ ଅଛି । ଉକ୍ତ କମ୍ପାନୀ ମୋର ଗାଡ଼ିଉଠା ଯନ୍ତ୍ର ଓ ଫ୍ରଗ ତିଆରି କରିବାକୁ ପ୍ରସ୍ତୁତ ଅଛନ୍ତି । ପୂର୍ବାଞ୍ଚଳର କାରଖାନା ଅପେକ୍ଷା ସେଠା ଖରଚ କମ ପଡ଼ିବ । ସେମାନେ ଚୁକ୍ତି କରି-ଅଛନ୍ତି ଯେ ନିଜ ଖରଚରେ ସେମାନେ ଯନ୍ତ୍ରର ଗୁଞ୍ଜ ତିଆରି କରିବେ । ମୁଁ ସେମାନଙ୍କର ବିକ୍ରେତାଭାବରେ କାର୍ଯ୍ୟ କରିବି । ମୁଁ ମୋର ରୟାଲଟି ପାଇବି; ତା ଛଡ଼ା ବିକ୍ରି ଉପରେ କମିଶନ ମଧ୍ୟ ପାଇବି । ଆଉ ଗୋଟିଏ କଥା—ଏହି ପଶ୍ଚିମାଞ୍ଚଳରେ ରେଲ କମ୍ପାନୀଙ୍କ ସଂଖ୍ୟା ଖୁବ୍ ବେଶି । ତେଣୁ କାରବାର ଭଲ ଚାଲିବ ବୋଲି ଆଶା କରାଯାଏ ।"

ମିସେସ ଓ୍ୱେଷ୍ଟିଙ୍ଗହାଉସ ଟିକିଏ କୁଣ୍ଠିତ ଭାବରେ କହିଲେ, "କିନ୍ତୁ ତୁ ମାର୍ଗାରେଟକୁ ପିଟସବର୍ଗକୁ ନେବୁ କିପରି ? ସେଠାରେ ତୋର

ଜଣେହେଲେ ପରିଚିତ ଲୋକ ନାହାଁନ୍ତି । ଏପରି କି ରହିବାର ଜାଗା ଠିକଣା ହୋଇନାହିଁ ।

ଜର୍ଜ କହିଲା, "ଆମେ ସେ କଥା ଭାବି ଦେଖିଛୁ । ଯଦି ତୁମେ ଓ ବାପା ରାଜି ହୁଅ, ତେବେ ମାର୍ଗରେଟ୍ କିଛି ଦିନ ଏହିଠାରେ ରହିଯିବ । ତା ପରେ ସବୁ ସୁବିଧା ହେଲେ ମୁଁ ଘରର ବ୍ୟବସ୍ଥା କରି ମାର୍ଗାରେଟ୍‌କୁ ଯିବା ପାଇଁ ଚିଠି ଦେବି ।"

ଏ ପ୍ରସ୍ତାବରେ ମିସେସ ଓୟେଷ୍ଟିଂହାଉସ ଟିକିଏ ଆଶ୍ୱସ୍ତ ହେଲେ ସେ ସ୍ୱୀକୃତି ଜଣାଇ କହିଲେ, "ବୋହୂ ଆମ ପାଖରେ ରହୁ । ମୋର ମନେ ହୁଏ ଯେ ପିଟ୍‌ସବର୍ଗ ଏଠାରୁ ବହୁତ ଦୂର । ସେଠାରେ ତୋର କିପରି ସୁବିଧା ହେବ ନ ଜାଣି ମାର୍ଗାରେଟ୍‌କୁ ସେଠାକୁ ନେବା ବୁଦ୍ଧିମାନର କାର୍ଯ୍ୟ ହୁଅନ୍ତା ନାହିଁ ।"

ଦୁଇ ସପ୍ତାହ ପରେ ଜର୍ଜ ଦୁଇଟି ପୁରୁଣା ସୁଟ୍‌କେଶ ସହିତ ପିଟ୍‌ସବର୍ଗ ଷ୍ଟେସନରେ ଓହ୍ଲାଇଲା । ଷ୍ଟେସନ ମାଷ୍ଟରଙ୍କ ଜିମ୍ମାରେ ସୁଟ୍‌କେଶ ଦୁଇଟି ରଖି ଦେଇ ସେ ଆଣ୍ଡରସନ ଏଣ୍ଡ କୁକ ଇସ୍ପାତ କାରଖାନାର ସନ୍ଧାନରେ ବାହାରି ପଡ଼ିଲା । ସେ ଜାଣିଥିଲା ଯେ ସେକେଣ୍ଡ ଏଭିନ୍ୟୁ ଓ ଟ୍ରାଇଷ୍ଟ୍ରୀଟର ଛକ ନିକଟରେ ଏହି କାରଖାନାଟି ଅବସ୍ଥିତ; କିନ୍ତୁ ଏଥି-ପୂର୍ବରୁ କେବେହେଲେ ଏହି ସହର ଦେଖି ନଥିବାରୁ ସେଠାରେ କିପରି ପହଞ୍ଚିବାକୁ ହେବ ଏ ବିଷୟରେ ତାର ଲବମାତ୍ର ଧାରଣା ନ ଥିଲା ।

ସେ ଜଣେ ଭଦ୍ର ବ୍ୟକ୍ତିଙ୍କୁ ଅଟକାଇ କାରଖାନାକୁ ବାଟ ପଚାରିଲା । ସେହି ଭଦ୍ରବ୍ୟକ୍ତି ଜଣେ ଯୁବକ ଓ ଉତ୍ତମ ପୋଷାକ ପରିଧାନ କରିଥିଲେ । ଲକ୍ଷ୍ୟ ସ୍ଥଳରେ ପହଞ୍ଚିବାକୁ ହେଲେ କେଉଁ ବାଟରେ ଯିବାକୁ ହେବ ତାହା ସେ କହି ଥିଲେ । ଜର୍ଜ ତାଙ୍କୁ ଧନ୍ୟବାଦ ଦେଇ ଚାଲି ଯିବାକୁ ବସିଥିଲା, ଏହି ସମୟରେ ଉକ୍ତ ଭଦ୍ରବ୍ୟକ୍ତି କହିଲେ, "ଦେଖନ୍ତୁ, କାରଖାନାଟା ଏଠାରୁ ବେଶି ଦୂର ନୁହେଁ; କିନ୍ତୁ ବିଦେଶୀ ଲୋକ ପକ୍ଷରେ ବାଟ ବଡ଼ ଗୋଳମାଳିଆ । ମୋର ଟିକିଏ ସମୟ ଅଛି; ମୁଁ ଆପଣଙ୍କୁ ନେଇ ସେଠାରେ ଛାଡ଼ି ଦେଇ ପାରିବି ।"

ଜର୍ଜ ଆପତ୍ତି କରୁଥିଲା; କିନ୍ତୁ ଭଦ୍ରବ୍ୟକ୍ତି କହିଲେ, "ମୋର ତ ଏଥିରେ କିଛି ଅସୁବିଧା ହେବ ନାହିଁ । ଆପଣ ମୋ ସାଙ୍ଗରେ ଆସନ୍ତୁ ।"

ସାଙ୍ଗ ହୋଇ ଯିବାବେଳେ କଥାବାର୍ତ୍ତା ହେଉ ହେଉ ଜର୍ଜ କହିଲା ଯେ ସେ ଆଣ୍ଡରସନ ଏଣ୍ଡ କୁକ କମ୍ପାନୀକୁ ଯିବ । ଏହା ଶୁଣିଲା କ୍ଷଣି ଭଦ୍ରବ୍ୟକ୍ତିଙ୍କ ମୁଖ ଉଜ୍ଜ୍ୱଳ ହୋଇଗଲା । ସେ କହିଲେ, "ମୁଁ ଏହି କମ୍ପାନୀକୁ ଭଲଭାବରେ ଜାଣେ । ମୁଁ ଗୋଟିଏ ଢଳେଇ କାରଖାନାରେ କାମ କରେଁ । ଆମର ଆଣ୍ଡରସନ ଏଣ୍ଡ କୁକ କମ୍ପାନୀ ସଙ୍ଗରେ ଅନେକ କାରବାର ଚାଲେ ।"

ଅଳ୍ପ ସମୟ କଥାବାର୍ତ୍ତା ପରେ ଦୁହିଁଙ୍କମଧ୍ୟରେ ବନ୍ଧୁତା ଆସିଗଲା । ଏହି ଭଦ୍ରବ୍ୟକ୍ତିଙ୍କ ନାମ ରାଲଫ୍ ବ୍ୟାଗଲେ । ସେ ପିଟ୍‌ସବର୍ଗର ଏକ ଉଚ୍ଚ ପରିବାରରେ ଜାତ ଏବଂ ଗୋଟିଏ ସ୍ଥାନୀୟ ଢଳେଇ କାରଖାନାର ଜେନେରାଲ ମାନେଜର । ସେକେଣ୍ଡ ଏଭିନ୍ୟୁ ଓ ଟ୍ରାଇଷ୍ଟ୍ରୀଟ ଛକରେ ପହଞ୍ଚି ଭଦ୍ରଲୋକଟି ନିଜର ନାମାଙ୍କିତ କାର୍ଡ଼ଟିଏ ଜର୍ଜର ହାତକୁ ବଢ଼ାଇ କୌଣସି ଦିନ ସନ୍ଧ୍ୟାରେ ତାଙ୍କ ଘରକୁ ଯିବାପାଇଁ ନିମନ୍ତ୍ରଣ ଜଣାଇଲେ ।

ଆଣ୍ଡରସନ ଏଣ୍ଡ କୁକ କମ୍ପାନୀରେ ସାକ୍ଷାତକାର ସନ୍ତୋଷଜନକ ହେଲା । ଜର୍ଜ ପ୍ରଧାନ ଅଂଶୀଦାର ଆଣ୍ଡରସନଙ୍କ ସହିତ କଥାବାର୍ତ୍ତା କଲା । ଏଥି ପୂର୍ବରୁ ତାଙ୍କ ସହିତ ବ୍ୟବସାୟ ସମ୍ପର୍କରେ ପତ୍ର ବିନିମୟ ହୋଇଥିଲା । ସେଥିରେ ଯେଉଁ ସବୁ ବ୍ୟବସାୟଗତ ପ୍ରସ୍ତାବ ହୋଇଥିଲା, ସେ ସବୁ ପକ୍କା ହୋଇଗଲା । ରେଲ କମ୍ପାନୀମାନଙ୍କ ସଙ୍ଗେ ମାଲ ବିକ୍ରି କରିବା ସକାଶେ ଅବିଳମ୍ବେ କାର୍ଯ୍ୟରେ ଯୋଗ ଦେବାକୁ ଜର୍ଜକୁ ଅନୁରୋଧ କରାଗଲା ।

ଏହାପରେ ଦୁଇମାସ ପର୍ଯ୍ୟନ୍ତ ତାକୁ କଠୋର ପରିଶ୍ରମ କରିବାକୁ ହେଉଥିଲେ । ଗୋଟିଏ ଛୋଟ ହୋଟେଲରେ ରହି ଅଳ୍ପ ମୂଲ୍ୟର ଖାଦ୍ୟ ଖାଇ ସେ ଚଳି ଯାଉଥିଲା । କିଛି ପଇସା ସଞ୍ଚୟ କରି ମାର୍ଗାରେଟକୁ ସେଠାକୁ ଆଣିବା ତାର ଉଦ୍ଦେଶ୍ୟ ଥିଲା । ମାର୍ଗାରେଟର ଅଭାବ ସେ ତୀବ୍ର ଭାବରେ ଅନୁଭବ କରୁଥିଲା । ଘରଭଡ଼ା ଦେବା ତ ଦୂରର କଥା; ମାର୍ଗାରେଟ ଆସିବା ପାଇଁ ରେଲଭଡ଼ା ଯୋଗାଇବାକୁ ମଧ୍ୟ ତା ପାଖରେ

ସମ୍ବଳ ନ ଥିଲା । ତଥାପି ପିଟ୍‌ସବର୍ଗ ଆସିବା ପାଇଁ ସେ ମାର୍ଗାରେଟ୍ ପାଖକୁ ଦୁଇ ଥର ଚିଠି ଲେଖିବାକୁ ବସିଥିଲା; ମାତ୍ର ଶେଷରେ ଦୁଇଥର ଯାକ ସେ ଚିଠି ଚିରି ଦେଇଥିଲା । ଅବସ୍ଥା ଦେଖି ବ୍ୟବସ୍ଥା କରିବାକୁ ହେବ ବୋଲି ବିଚାରି ସେ କେବଳ ଲେଖିଥିଲା—ବ୍ୟବସାୟ ଭଲ ଚାଲିଛି । ତୁମର ଅଭାବ ମୁଁ ବିଶେଷ ଭାବରେ ଅନୁଭବ କରୁଛି । ଆଶାକରେ ଅଳ୍ପ ଦିନ ଭିତରେ ତୁମକୁ ଏଠାକୁ ଅଣାଇବାର ବ୍ୟବସ୍ଥା କରି ପାରିବି ।

ଏଥି ମଧ୍ୟରେ ଯେ ଜର୍ଜ ସଙ୍କୋଚିତ ବାୟୁ ଚାଳିତ ବ୍ରେକ ବିଷୟ ଭୁଲି ଯାଇଥିଲା, ତାହା ନୁହେଁ । ସେ ଏହି ବ୍ରେକର ନକ୍‌ସାଗୁଡ଼ିକ ଯେତେ ସବୁବେଳେ ବୁଲୁଥାଏ । ଯେତେବେଳେ କୌଣସି ରେଲ କମ୍ପାନୀ କର୍ତ୍ତାଙ୍କ ସହିତ ସେ ଗାଡ଼ି ଉଠାଯନ୍ତ୍ର ବା ଫ୍ରଗର ବିକ୍ରି ପ୍ରସଙ୍ଗରେ ଦେଖା କରୁଥିଲା, ସେତେବେଳେ ସୁଯୋଗ ଦେଖି ସେ ଏହି ବ୍ରେକ ବିଷୟ ଉତ୍ଥାପନ କରୁଥିଲା । ଗାଡ଼ିଉଠା ଯନ୍ତ୍ର ଓ ଫ୍ରଗର ବିକ୍ରି କ୍ରମଶ ବୃଦ୍ଧି ପାଇବାକୁ ଲାଗିଲା କିନ୍ତୁ ଏୟାର ବ୍ରେକ ଦିଗରେ ସେ ଆଦୌ ଅଗ୍ରସର ହୋଇପାରିଲା ନାହିଁ । ଏହାର ପ୍ରଧାନ ପ୍ରତିବନ୍ଧକ ଥିଲା ଅର୍ଥବ୍ୟୟ । ଶିକାଗୋର୍. ମିଷ୍ଟର ଟାଉନଙ୍କ ଭଳି ଅନ୍ୟାନ୍ୟ ଅନେକ ସୁପରିଣ୍ଟେଣ୍ଡେଣ୍ଟ ଉନ୍ନତତର ବ୍ରେକର ଆବଶ୍ୟକତା ସ୍ୱୀକାର କରୁଥିଲେହେଁ ପରୀକ୍ଷାମୂଳକ ଭାବରେ ନୂତନ ବ୍ରେକ ତିଆରି କରାଇ, ଟ୍ରେନରେ ଲଗାଇ ଦେଖିବାର ଖରଚବହନ କରିବାକୁ ସାହାସ କରୁ ନ ଥିଲେ । ଅନ୍ୟ କେତେକ ରେଲକମ୍ପାନୀର କର୍ତ୍ତାମାନେ ଏହି ସଙ୍କୋଚିତ ବାୟୁଚାଳିତ ବ୍ରେକର ମୌଳିକ ସୂତ୍ରକୁ (Principles) ବୁଝିପାରୁ ନ ଥିଲେ । ଅବଶ୍ୟ ଜର୍ଜ ସେମାନଙ୍କୁ ଏହା ବୁଝାଇବା ଲାଗି ଯଥେଷ୍ଟ ଉଦ୍ୟମ କରୁଥିଲା । ସେମାନେ ଏହାକୁ ଏକ ଉଦ୍ଭଟ କଳ୍ପନା ବୋଲି ହସରେ ଉଡ଼ାଇ ଦେଉଥିଲେ ।

ନଜର ରଖିବା ପାଇଁ ଜର୍ଜ ମଧ୍ୟେ ମଧ୍ୟେ ଆଣ୍ଡରସନ ଏଣ୍ଡ-କୁକ କମ୍ପାନୀକୁ ଆସି କିଛି ସମୟ ନିମନ୍ତେ ରହୁ ଥିଲା । ଥରେ ଏହିପରି ଆସି ଥିବା ସମୟରେ ସେ ନ୍ୟୁୟର୍କ ସେଣ୍ଟ୍ରାଲ ରେଲ କମ୍ପାନୀର ଖଣ୍ଡିଏ ଚିଠି ପାଇଲା । ସେଥିରେ ଲେଖାଥିଲା ଯେ ଜର୍ଜ ନ୍ୟୁୟର୍କ ଯାଇ କମ୍ପାନୀର ଗୋଟିଏ ଅର୍ଡ଼ରର ଆନୁମାନିକ ମୂଲ୍ୟର ହିସାବ ଦେଇ ଆସିବ । ଚିଠିଟି ପାଇ ସେ ବଡ଼ ଆନନ୍ଦିତ ହେଲା; କାରଣ ନ୍ୟୁୟର୍କ ସେଣ୍ଟ୍ରାଲ ହେଉଛି,

ରେଲକମ୍ପାନୀମାନଙ୍କ ମଧ୍ୟରେ ବୃହତ୍ତମ ଓ ଏହାର ମାଲିକ ଥିଲେ କମୋଡ଼ୋର କର୍ଣ୍ଣେଲିଅସ ଭାଣ୍ଡେରବିଲ୍ଟ । ଏ କମ୍ପାନୀ ନିଶ୍ଚୟ ଗୋଟାଏ ବଡ଼ ଅର୍ଡ଼ର ଦେବେ ଓ ଜର୍ଜକୁ ଗୋଟାଏ ମୋଟା କମିଶନ ମିଳିବ । ଏହାଛଡ଼ା ତାର ଏୟାରବ୍ରେକରେ ଆଗ୍ରହ ଜନ୍ମାଇବାର କି ସୁବର୍ଣ୍ଣ-ସୁଯୋଗ ! ଯଦି କୌଣସି ରେଲକମ୍ପାନୀ ଅର୍ଥ ବ୍ୟୟ କରି ଏୟାରବ୍ରେକର ପରୀକ୍ଷା କରାଇପାରେ ତେବେ ସେ ହେଉଛି ନ୍ୟୁୟର୍କ ସେଣ୍ଟ୍ରାଲ କମ୍ପାନୀ !

କ୍ରୟ ବିଭାଗର ନାନା କର୍ମଚାରୀଙ୍କ ସଙ୍ଗରେ ତିନି ଦିନ ଧରି କଥା ବାର୍ତ୍ତା କଲା ପରେ ଜର୍ଜ ଅଧ ଡଜନ ଯନ୍ତ୍ର ପାଇଁ ଅର୍ଡ଼ର ପାଇଲା । ଚୁକ୍ତି ପତ୍ରରେ ନ୍ୟୁୟର୍କ ସେଣ୍ଟ୍ରାଲ କମ୍ପାନୀ ପକ୍ଷରୁ ସ୍ୱାକ୍ଷର ମିଳିଲା ପରେ ଜର୍ଜ ଆନନ୍ଦରେ ଏୟାରବ୍ରେକର ନକ୍‌ସା ବାହାର କରି କ୍ରୟ ବିଭାଗର କର୍ମଚାରୀ-ମାନଙ୍କୁ ଏହା ବିଷୟରେ ବୁଝାଇବାକୁ ବାହାରିଲା । କିନ୍ତୁ ସେମାନେ କହିଲେ ଏ ସବୁ ସଙ୍ଗେ ସେମାନଙ୍କର କିଛି ସମ୍ବନ୍ଧ ନାହିଁ । ସେମାନେ ବୁଝାଇ ଦେଲେ, "ଏହି ଅନୁଷ୍ଠାନଟିର ପରିଚାଳନା ଏକ ଜଟିଳ ବ୍ୟାପାର । ଆମ ବିଭାଗର କାର୍ଯ୍ୟ ହେଉଛି କେବଳ ମାମୁଲି ଯନ୍ତ୍ରପାତି ଖରିଦ କରିବା । ଯଦି ଆପଣ ଏହି ନୂତନ କଳ୍ପନା ବିଷୟରେ କିଛି କହିବାକୁ ଚାହାନ୍ତି, ତେବେ ଚଳାଚଳ ବିଭାଗର କର୍ମଚାରୀଙ୍କ ସଙ୍ଗେ (Operation executive) କଥାବାର୍ତ୍ତା କରି ପାରନ୍ତି ।"

ଚଳାଚଳ ବିଭାଗର କର୍ମଚାରୀଙ୍କ ସଙ୍ଗେ ସାକ୍ଷାତର ସୁବିଧା କରାଇ ଦେବାକୁ ଜର୍ଜ ଅନୁରୋଧ କଲା; ମାତ୍ର ତାହା ହୋଇ ପାରିଲା ନାହିଁ । ଉତ୍ତର ମିଳିଲା, "ବ୍ୟବସାୟର ସେ ବିଭାଗ ସହିତ ଆମର କୌଣସି ସମ୍ପର୍କ ନାହିଁ । ସ୍ପଷ୍ଟ କହିବାକୁ ଗଲେ ଆମ ବିଭାଗ ସହିତ ଯାହାର ସମ୍ପର୍କ ନାହିଁ, ସେ ବିଷୟରେ ଜଡ଼ିତ ହେବାକୁ ଯିବା ଆମ ପକ୍ଷରେ ଆଦୌ ଉଚିତ ନୁହେଁ ।"

ଜର୍ଜ ସେମାନଙ୍କୁ ଧନ୍ୟବାଦ ଜଣାଇ ଆପଣା ହୋଟେଲକୁ ଫେରି ଆସିଲା । କିଛି ବଡ଼ ଅର୍ଡ଼ର ପାଇଥିବାରୁ ତାହା ମନରେ ଯେଉଁ ସନ୍ତୋଷ ଆସିଥିଲା, ଏୟାରବ୍ରେକରେ କାହାରି ଆଗ୍ରହ ଜନ୍ମାଇ ପାରି ନ ଥିବାରୁ ତାହା ଅନେକ ଊଣା ହୋଇଗଲା । ତଥାପି ରାତିରେ ଶୋଇବାକୁ ଯିବା ପୂର୍ବରୁ ସେ ଗୋଟିଏ ଦୁଃସାହସିକ ଉପାୟ ସ୍ଥିର କରିନେଲା ।

ପର ଦିନ ସକାଳେ ସେ ଖୁବ୍ ଶୀଘ୍ର ଉଠି ନିତ୍ୟକର୍ମ ଶେଷକଲା, ଓ ଅତି ଯତ୍ନରେ ଭଲ ପୋଷାକ ପିନ୍ଧିଲା । ଗୋଟିଏ ଘୋଡ଼ାଗାଡ଼ି ଭଡ଼ା କରି ଯାଇ ସେ କମୋଡ୍ରୋର ଭେଣ୍ଡାରବିଲ୍ଟଙ୍କ ଅଫିସରେ ପହଞ୍ଚିଲା ।

ନ୍ୟୁୟର୍କ ସେଣ୍ଟ୍ରାଲ କମ୍ପାନୀର ମାଲିକ ଭେଣ୍ଡାରବିଲ୍ଟଙ୍କ ଜୀବନ ଅଦ୍ଭୁତ; ଶୁଣିବାକୁ ରୂପ କଥା ପରି । ସେ ଜୀବନ ଆରମ୍ଭ କରିଥିଲେ ନଦୀ ଘାଟର ନାଉରିଆବରେ । ଏବେ ମଧ୍ୟ ମାନହାଟନର ବନ୍ଦର ଅଞ୍ଚଳରେ ତାଙ୍କର ଅଫିସମାନ ଅଛି । ଷାଠିଏ ବର୍ଷ ହେଲା ସେ ବ୍ୟବସାୟରେ ଉନ୍ନତି କରି ଚାଲିଛନ୍ତି । ଏବେ ସେ କେତେ ଷ୍ଟୀମଜାହାଜ କମ୍ପାନୀର ମାଲିକ । ରେଲ କମ୍ପାନୀର ସେ ଜଣେ ସମ୍ରାଟ କହିଲେ ଚଳେ । ସେ କେତେ ମୂଲ୍ୟବାନ୍ ସମ୍ପତ୍ତିର ଅଧିକାରୀ ହୋଇ ଅଛନ୍ତି । ବର୍ତ୍ତମାନ ତାଙ୍କର ବୟସ ୭୫ ବର୍ଷ । ପୃଥିବୀର କୋଟିପତି ଶିଳ୍ପ ସମ୍ରାଟମାନଙ୍କ ମଧ୍ୟରୁ ସେ ଜଣେ । ତାଙ୍କ ସମ୍ପତ୍ତିର ମୂଲ୍ୟ ପ୍ରାୟ ପଚିଶ କୋଟି ଟଙ୍କା ।

ପ୍ରଥମେ ଜର୍ଜ କମୋଡ୍ରୋରଙ୍କର ଜଣେ ଯୁବକ ସେକ୍ରେଟରୀଙ୍କ ସଙ୍ଗେ ଦେଖାକଲା । ଯୁବକଙ୍କ ଆଖିରେ ଚଷମା; ଚେହେରା ଟିକିଏ ବିବର୍ଣ୍ଣ । ସେ ସହାନୁଭୂତିଶୀଳ ବୋଲି ବୋଧ ହେଉଥିଲେ । କମୋଡ୍ରୋରଙ୍କ ସହିତ ସାକ୍ଷାତ କରିବାକୁ ଆସିଛି ବୋଲି ଜର୍ଜ ଜଣାଇବା ମାତ୍ରକେ ସେ ସଙ୍ଗେ ସଙ୍ଗେ ମନା କରି ଦେଇ କହିଲେ, "କମୋଡ୍ରୋରଙ୍କର ପରିଚିତ କୌଣସି ବ୍ୟକ୍ତିଙ୍କଠାରୁ ପରିଚୟ ପତ୍ର ନ ଆଣିଲେ ତାଙ୍କର ସାକ୍ଷାତ ପାଇବା ଅସମ୍ଭବ ।"

ଜର୍ଜ ନିଜ ଏୟାରବ୍ରେକର ନକ୍ସା ପ୍ରଭୃତି ବାହାର କରି ତାଙ୍କୁ ଦେଖାଇ କହିଲା, "ମୋର ଆସିବାର ଅଭିପ୍ରାୟ ଜାଣିଲେ ସେ ନିଶ୍ଚୟ ଆଗ୍ରହର ସହିତ ବିଚାର କରିବେ ।"

ଏହି ସେକ୍ରେଟାରୀ ଜର୍ଜର ପ୍ରାୟ ସମବୟସ୍କ ସେ ଗମ୍ଭୀର ଭାବରେ କହିଲେ, "ମୁଁ ବଡ଼ ଦୁଃଖିତ । କମୋଡ୍ରୋରଙ୍କ ସହିତ ଆପଣଙ୍କର ଦେଖା ହୋଇ ପାରିବ ନାହିଁ ।"

"ତେବେ ମୁଁ ଅପେକ୍ଷା କରୁଛି ।"

କମୋଡ଼ୋରଙ୍କ ସାକ୍ଷାତ ପାଇବା ଆଶାରେ ଜର୍ଜ ସାରା ସକାଳ ବେଳାଟି ସେଠାରେ ବସି ରହିଲା । ବେଳ ଦୁଇ ପ୍ରହର ହେଲା; ଦୁଇଟା ବାଜିଲା । ଭୋକରେ ଜର୍ଜର ପେଟ ଜଳୁଛି, ଶୋଷରେ ତଣ୍ଟି ଶୁଖି ଯାଉଛି । ତଥାପି ଜର୍ଜ ସେଠାରୁ ଘୁଞ୍ଚିଲା ନାହିଁ । ପ୍ରାୟ ତିନିଟା ବେଳ ହେଲା । ହଠାତ୍ ଲୋକମାନଙ୍କ ମଧ୍ୟରେ ଚାଞ୍ଚଲ୍ୟ ଦେଖାଗଲା । ସେକ୍ରେଟାରୀ ଓ କିରାଣିମାନେ ଏଣେତେଣେ ଯିବା ଆସିବା କରିବାକୁ ଲାଗିଲେ । ଜର୍ଜ ବୁଝିପାରିଲା ଯେ କିଛି ବିଶେଷ ବ୍ୟାପାର ଘଟିବାକୁ ଯାଉଛି । କେତେକ ମିନିଟ ପରେ ଗୋଟିଏ ଦ୍ୱାର ଖୋଲିଗଲା । ଫର୍‌କୋଟ ପିନ୍ଧା ଜଣେ ଦୀର୍ଘକାୟ ଲୋକ ସେହି ଦ୍ୱାର ବାଟେ ବାହାର ଆସିଲେ ତାଙ୍କ ପଛରେ ଦଳେ କର୍ମଚାରୀ ।

ଜର୍ଜ ହଠାତ୍ ଠିଆ ହୋଇ ପଡ଼ି ଏହି ଭଦ୍ର ଲୋକଙ୍କ ପାଖକୁ ଚାଲିଯାଇ କହିଲା—କମୋଡ଼ୋର ଭେଣ୍ଡରବିଲ୍‌ଟ !

ଉତ୍ତର ମିଳିଲା, "ହଁ ହଁ । ତୁମେ କିଏ ? କଅଣ ଚାହଁ ?"

"ମହାଶୟ, ମୋର ନାମ ଜର୍ଜ ଓୟେଷ୍ଟିଂହାଉସ । ମୋତେ କିଛି ସମୟ ପାଇଁ ସାକ୍ଷାତ...... ।"

ସେ ଆଉ କିଛି କହିବା ପୂର୍ବରୁ ଦୁଇଜଣ କର୍ମଚାରୀ ଦଉଡ଼ି ଆସି ଏହି ଉଦ୍ଧତ ଯୁବକକୁ ସେଠାରୁ ତଡ଼ି ଦେବାକୁ ବସିଲେ । ମାତ୍ର ଜର୍ଜ ଛାଡ଼ିବାର ପାତ୍ର ନୁହେଁ ।

କମୋଡ଼ୋର କହିଲେ, "ଦେଖ, ମୁଁ କେବେ କାହା ସଙ୍ଗେ ସାକ୍ଷାତର ସମୟର ସ୍ଥିର କରେ ନାହିଁ । ସେଥିପାଇଁ ମୁଁ ବେତନ ଦେଇ ସେକ୍ରେଟାରୀମାନଙ୍କୁ ରଖିଛି । ସେମାନଙ୍କ ସଙ୍ଗେ ଦେଖାକର ।"

"ମୁଁ ସେ ଚେଷ୍ଟା କରିଛି । ସେମାନେ କହିଲେ ଯେ ଆପଣଙ୍କର ପରିଚିତ କୌଣସି...... ।"

କମୋଡ଼ୋର ବିଶେଷ କାର୍ଯ୍ୟ ବ୍ୟସ୍ତ ଥିଲେ । ଯୁବକର ଅପ୍ରତ୍ୟାଶିତ କଥାରେ ସେ ବିରକ୍ତ ହୋଇ ଗଲେ । କିନ୍ତୁ ଦେଖିଲେ ଯେ ଏହି ଛୁଅ

ସୂର୍ତ ଉଚ ଦୃଢ଼ ମନା ଯୁବକଟିକୁ ସହଜେ ଏଡ଼ ଦେଇ ହେବ ନାହିଁ । ତେଣୁ ସେ ଟିକଏ ଇତସ୍ତତଃ ହୋଇ କହିଲେ, ଆଚ୍ଛା, ଜନ୍, ଏ ଲୋକଟିର ନାମ ଲେଖି ରଖ । କାଲି ସକାଳେ ମୁଁ ତାକୁ ସାକ୍ଷାତ ଦେବି ।

ପରଦିନ ଦଶଟା ବେଳକୁ ଜର୍ଜ ଅଫିସରେ ଉପସ୍ଥିତ ହୋଇ ଅପେକ୍ଷା କରି ରହିଲା । ପ୍ରାୟ ଘଣ୍ଟାକ ପରେ ପୂର୍ବଦିନର ସେହି ସେକ୍ରେଟାରୀ ଉଦାସୀନ ଭାବରେ ଜଣାଇଲେ ଯେ କମୋଡ଼ୋର ତାଙ୍କ ସହିତ କଥାବାର୍ତ୍ତା ହେବାକୁ ଡ଼ାକୁଛନ୍ତି ।

ଜର୍ଜ କମୋଡ଼ୋରଙ୍କ ଅଫିସ ଗୃହକୁ ପ୍ରବେଶ କଲା । ଗୃହର ମେଜଆ ବହୁମୂଲ୍ୟ କାର୍ପେଟରେ ଆଚ୍ଛାଦିତ । ଅସବାବଗୁଡ଼ିକ ମୂଲ୍ୟବାନ ଓ ସୁଦୃଶ୍ୟ । ମେହଗାନି କାଷ୍ଠନିର୍ମିତ ଏକ ସୁନ୍ଦର ଟେବୁଲ ପାଖରେ ବସି କମୋଡ଼ୋର ଚରୁଟର ଧୂଆଁ ଛାଡ଼ୁଥିଲେ ।

ଭେଣ୍ଡାରବିଲ୍ଟ ଜର୍ଜକୁ ବସିବାକୁ ସୁଦ୍ଧା ନ କହି ରୁକ୍ଷସ୍ୱରରେ କହିଲେ, "କୌଣସି ଭୂମିକାର ପ୍ରୟୋଜନ ନାହିଁ । ତୁମର ଯାହା କହିବାକୁ ଅଛି, କହିଯାଅ । ମୋର ସମୟ ନାହିଁ ଯେ ନଷ୍ଟ କରିବି ।

ଜର୍ଜ ନକ୍ସାଗୁଡ଼ିକ ବାହାର କରି ସଂକ୍ଷେପରେ ନିଜର ଉଦ୍ଦେଶ୍ୟ ପ୍ରକାଶ କଲା । ଏଥିପାଇଁ ସେ ପୂର୍ବରୁ ପ୍ରସ୍ତୁତ ହୋଇ ଯାଇଥିଲା । ସେ ଏୟାରବ୍ରେକର ମୌଳିକ ସୂତ୍ରଗୁଡ଼ିକ ନକ୍ସା ସାହାଯ୍ୟରେ ବର୍ଣ୍ଣନା କରିଗଲା ।

କମୋଡ଼ୋର ବସି ଶୁଣୁଥାନ୍ତି । ସେ ପାଟିରୁ ଟିକଏ ତମାଖୁର ଛିଟା ବାହାର କରି ପକାଇ ଦେଲେ ଓ ନକ୍ସାଗୁଡ଼ିକ ଆଡ଼କୁ ହାତ ଦେଖାଇ କହିଲେ, "ଏଥିରୁ ମୁଁ ଏତିକି ବୁଝୁଛି ଯେ ତୁମେ ପବନଦ୍ୱାରା ଟ୍ରେନର ବ୍ରେକ ଦେଇ ପାରିବ ବୋଲି କହୁଛ । ଏଭଳି ପ୍ରଳାପ ଶୁଣିବାକୁ ମୋର ସମୟର ନିତାନ୍ତ ଅଭାବ । ତୁମେ ବିଦାୟ ନେଇପାର ।"

ଏତିକରେ ସାକ୍ଷାତ ଶେଷ । ଆଉ କିଛି କହିବା ବା ପୁଣି ଥରେ ଦେଖା କରିବାକୁ ଅନୁରୋଧ କରିବାର ସୁଯୋଗ ମଧ୍ୟ ରହିଲା ନାହିଁ ।

କମୋଡ଼ୋର ତାଙ୍କର ଶେଷ କଥା କହି ସାରିଥିଲେ । ଜର୍ଜ ନିଜର ନକ୍‌ସା-ଗୁଡ଼ିକ ଧରି ଚାଲି ଆସିଲା ।

ପିଟସବର୍ଗକୁ ଫେରିଲା ବେଳେ ତାର ମନ ବଡ଼ ବିକ୍ଷୁବ୍ଧ । ସେ ଯେଉଁ ସୁବିଧା ପାଇଥିଲା, ସେଥିରେ ବିଫଳ ହେଲା । ହୁଏ ତ ଏପରି ଏକ ସୁଯୋଗ ଆଉ କେବେ ହେଲେ ମିଳି ପାରିବ ନାହିଁ । ତଥାପି ସେ ଏକବାର ହତାଶ ହୋଇ ପଡ଼ି ନ ଥିଲା । ଯେତିକି ବିକ୍ରି ହେଲା, ସେତିକର କମିଶନ ଓ ରୟାଲଟିରେ ସେ ମାର୍ଗାରେଟକୁ ପିଟସବର୍ଗକୁ ଅଣାଇ ପାରିବ ବୋଲି ଆଶା ଥିଲା ।

ଏହାର ପରବର୍ତ୍ତୀ କେତେକ ଦିନ ସେ କାର୍ଯ୍ୟ ବ୍ୟସ୍ତ ରହିଲା । ସହରରେ ସେ ଶସ୍ତାରେ ଗୋଟିଏ ଦୁଇ ବଖରିଆ ଘର ଠିକଣା କରି ମାସକର ଭଡ଼ା ଅଗ୍ରୀମ ଦେଇ ପକାଇଲା ଏବଂ ନିଜର ପୁରୁଣା ସୁଟକେଶ ଦୁଇଟି ଧରି ସେଥିରେ ରହିବାକୁ ଗଲା । ତା'ପରେ ସେ ମାର୍ଗାରେଟ ପାଖକୁ ଗୋଟିଏ ଦୀର୍ଘ ପତ୍ର ଲେଖିବସିଲା । ନ୍ୟୁୟର୍କ ସେଣ୍ଟ୍ରାଲ କମ୍ପାନୀକୁ ଯନ୍ତ୍ର ବିକ୍ରି କଥା ଓ ରହିବା ପାଇଁ ଘରର ବ୍ୟବସ୍ଥା ବିଷୟ ସେଥିରେ ଉଲ୍ଲେଖ ଥିଲା । ପିଟିସବର୍ଗକୁ ଆସିବା ପାଇଁ ରେଲଭଡ଼ା ଓ ଅନ୍ୟାନ୍ୟ ଖର୍ଚ୍ଚ ପାଇଁ ସେ ଏହି ଚିଠି ସଙ୍ଗେ ଖଣ୍ଡିଏ ଚେକ୍ ପଠାଇ ଦେଲା ।

ଜର୍ଜ ମାର୍ଗାରେଟର ଆସିବାକୁ ଅପେକ୍ଷା କରି ରହିଲା । ଏଥି ମଧ୍ୟରେ ସେ ଏୟାର ବ୍ରେକର ପେଟେଣ୍ଟ ପାଇବା ପାଇଁ ଦରଖାସ୍ତ କରି ଦେଇଥିଲା । ଆହୁରି ମଧ୍ୟ ଏୟାର ବ୍ରେକର ବିଶଦ ବର୍ଣ୍ଣନା ଦେଇ ସେ ସୁପରିଣ୍ଟେଣ୍ଡେଣ୍ଟ ଟାଉନଙ୍କ ପାଖକୁ ଖଣ୍ଡିଏ ପତ୍ର ଦେଲା । ତାର ଉଦ୍ଦେଶ୍ୟ ଥିଲା ଯେ ହୁଏତ ଶିକାଗୋ-ବର୍ଲିଂଟନ ଏଣ୍ଡ କୁଇନ୍‌ସ କମ୍ପାନୀ ଏହି ବ୍ରେକ ତିଆରି କରାଇ ପରୀକ୍ଷା କରାଇ ପାରନ୍ତି ।

ଦିନେ ସନ୍ଧ୍ୟା ବେଳେ ଜର୍ଜର କିଛି କାମ ନ ଥିଲା । ରାଲଫ୍ ବ୍ୟାଗଲେର ନିମନ୍ତ୍ରଣ କଥା ତାର ମନେ ପଡ଼ିଲା । ଭୋଜନ ଶେଷ କରି ସେ ଖଣ୍ଡିଏ ଗାଡ଼ିରେ ବସି ବ୍ୟାଗଲେଙ୍କ ଘରେ ପହଞ୍ଚିଲା । ବ୍ୟାଗଲେ ତାକୁ ସାଦର ଅଭ୍ୟର୍ଥନା ଜଣାଇ ନିଜର ବାପମାଆଙ୍କ ସଙ୍ଗେ ତାର ପରିଚୟ କରାଇ ଦେଲା । ଏହାପରେ ଉଭୟେ ବସି ଗଳ୍ପ କଲେ । ଜର୍ଜ

ନିଜର ଉଦ୍ଭାବିତ ଏୟାରବ୍ରେକ ବିଷୟ ବର୍ଣ୍ଣନା କଲି । ତା ସଙ୍ଗେ ସଙ୍ଗେ ସେ କପରି କମୋଡ଼ୋର ଭେଣ୍ଡରବିଲ୍ଟଙ୍କଠାରୁ ନିରାଶ ହୋଇ ଫେରି ଥିଲି, ତାହା ମଧ୍ୟ କହିଲି । ଶୁଣୁ ଶୁଣୁ ବ୍ୟାଗଲେ ଏହି ଏୟାର ବ୍ରେକ ବିଷୟରେ ଜର୍ଜ ଭଳି ଉତ୍ସାହୀ ହୋଇ ପଡ଼ିଲା ।

ରାଲଫ୍ ବିରକ୍ତି ପ୍ରକାଶ କରି କହିଲା, "ଲୋକ ଯେ ଏପରି ଏକ ଆଶ୍ଚର୍ଯ୍ୟଜନକ ଉଦ୍ଭାବନ ବିଷୟରେ ଏତେ ଉଦାସୀନ ହୋଇପାରେ, ମୁଁ କଳ୍ପନା କରି ପାରୁନାହିଁ ।"

ଜର୍ଜ ମନ୍ତବ୍ୟ କଲା, "ସେମାନଙ୍କର ଉଦାସୀନତାର ପ୍ରଧାନ କାରଣ ହେଉଛି ଟଙ୍କା । ଲୋକେ ମୋ କଥା ଠିକ୍ ଶୁଣୁଛନ୍ତି, ବୁଝୁଛନ୍ତି; କିନ୍ତୁ ଯେତେବେଳେ ଟଙ୍କା ଖରଚ କଥା ଉଠୁଛି ସେତେବେଳେ ସେମାନେ ଆଉ ଆଗକୁ ଗୁହିଁ ପାରୁ ନାହାନ୍ତି ।"

ରାଲ୍ଫ ପଚାରିଲା, "ତୁମ ବାପା କଅଣ କହୁଛନ୍ତି ? ଏୟାରବ୍ରେକର ଗୋଟାଏ ଚଳନୀୟ ମଡେଲ ତିଆରି କରିବା ପାଇଁ ସେ କଅଣ ଟଙ୍କା ଧାର ଦେଇ ପାରିବେ ନାହିଁ । ତାହାହେଲେ ତୁମେ ରେଲକମ୍ପାନୀମାନଙ୍କୁ ମଡେଲଟି ଦେଖାଇ ପାରିବ, ଏଇ ହେଉଛି ମୋର ନୂତନ ଏୟାରବ୍ରେକ । ତୁମେ ପରୀକ୍ଷା କରି ଦେଖ ।"

ଜର୍ଜ ଉତ୍ତର କଲା, "ବାପା ତାଙ୍କର ଟଙ୍କା କାରଖାନାରେ ଲଗାଇ ଅଛନ୍ତି । ହାତରେ ନଗଦ କିଛି ନାହିଁ । ତାହା ଛଡ଼ା ଗାଡ଼ିଉଠା ଯନ୍ତ୍ର ଆରମ୍ଭ କଲାବେଳେ ମୁଁ ତାଙ୍କ ଠାରୁ କିଛି ଟଙ୍କା ଧାର ଆଣିଥିଲି । ତାକୁ ଏ ପର୍ଯ୍ୟନ୍ତ ଶୁଝିପାରି ନାହିଁ । ତାଙ୍କୁ ଆଉ ଧାର ମାଗିବା ଉଚିତ ହେବ ନାହିଁ । ଏୟାରବ୍ରେକ ପାଇଁ ମୋତେ ହିଁ ଟଙ୍କା ଯୋଗାଡ଼ କରିବାକୁ ହେବ ।

ପରଦିନ ସନ୍ଧ୍ୟାରେ ମାର୍ଗାରେଟ ଆସି ପହଞ୍ଚିଲା । ଜର୍ଜ ଆଗରୁ ଯାଇ ଷ୍ଟେସନରେ ଅପେକ୍ଷା କରିଥିଲା । ଜର୍ଜର ମନେ ହେଲା, ସତେ ଯେପରି ମାର୍ଗାରେଟର ସୌନ୍ଦର୍ଯ୍ୟ ଆହୁରି ବଢ଼ି ଯାଇଛି । ଜର୍ଜ ତାକୁ ଆଲିଙ୍ଗନ କରି ଚୁପ ଚୁପ କରି କହିଲା, "ତୁମକୁ ନ ଦେଖି ଏ କେତେ

ସମ୍ବାଦ ହେଲା ମୁଁ କି ଦୁଃଖରେ ଦିନ କାଟୁଥିଲି, ତାହା କହି ହେବ ନାହିଁ ।”

ମାର୍ଗାରେଟ ପାଖରୁ ଦେଶର ଅନେକ ଖବର ମିଳିଲା । ସେଥିରୁ ଜଣାଗଲା ଯେ ରାଓଲସ ଓ ଓୟାଲ ଆପଣା ଭିତରେ କଳି କରି କମ୍ପାନୀ ଭାଙ୍ଗି ଦେଇ ଅଛନ୍ତି । ରେଲର ଯନ୍ତ୍ରପାତି ତିଆରି କରିବାର ବ୍ୟବସାୟ ଏକବାର ବନ୍ଦ । ଜର୍ଜର ଉଦ୍ଭାବିତ ଯନ୍ତ୍ର ଯେ ସେମାନେ ଅନ୍ୟାୟ ଭାବରେ ବ୍ୟବହାର କରି ପାରିବେ, ସେ ଚିନ୍ତା ଆଉ ନାହିଁ ।

ଜର୍ଜ ଏହା ଶୁଣି କହିଲା, “ତାହାହେଲେ ସେ ଚୋର ଦୁଇଟା ଆପଣା ଭିତରେ କଳି କଲେ; ଏଥିରେ ଆଶ୍ଚର୍ଯ୍ୟ ହେବାର କାରଣ ନାହିଁ ।”

ଘରଟି ମାର୍ଗାରେଟ ବେଶ୍ ପସନ୍ଦ କଲା । ସେ ଘରଟିକୁ ସଫାସୁତରା କରି, ପର୍ଦ୍ଦା ଟାଣି ଏକ ପ୍ରକାର ସୁଦୃଶ୍ୟ କରି ଦେଲା ।

ଦିନେ ସକାଳେ ଜର୍ଜ ମିଷ୍ଟର ଟାଉନଙ୍କଠାରୁ ଖଣ୍ଡିଏ ପତ୍ର ପାଇଲା । ସମ୍ବାଦଟି ନିତାନ୍ତ ଦୁଃଖ ଦାୟକ । ସେ ଲେଖିଥିଲେ ଯେ ଶିକାଗୋ-ବର୍ଲିଙ୍ଗଟନ-ଏଣ୍ଡ କୁଇନ୍‌ସ ରେଲ କମ୍ପାନୀ ଏୟାର ବ୍ରେକ ତିଆରି କରି ପରୀକ୍ଷା କରିବା ସକାଶେ ଖରଚ ନାମଞ୍ଜୁର କରି ଦେଇଅଛନ୍ତି ।

ଏହି ସମ୍ବାଦରେ ଜର୍ଜ ନିରାଶ ହେବାର କଥା; କିନ୍ତୁ ତାର ନୈରାଶ୍ୟ ବେଶି ଦିନ ଲାଗି ରହି ନ ଥିଲା । କିଛି ଦିନ ପରେ ଜର୍ଜ ଓ ମାର୍ଗାରେଟ ଦିନେ ରାଲଫକୁ ନିଜ ବସା ଘରକୁ ନିମନ୍ତ୍ରଣ କରିଥିଲେ । ଭୋଜନ ଶେଷରେ ରାଲ୍‌ଫ ଖଣ୍ଡିଏ ସିଗାରେଟ ମୁହଁରେ ଲଗାଇ ଧୂଆଁ ଛାଡୁଥାଏ । ଚୂଲି ଉପରେ ନିଆଁ ଜଳୁଥାଏ । ସେଇ ଆଡ଼କୁ ଚାହିଁ ରାଲ୍‌ଫ ଚିନ୍ତା କରୁ କରୁ କହିଲା, “ଜର୍ଜ ମୁଁ ତୁମକୁ ଗୋଟିଏ ପ୍ରସ୍ତାବ ଦେଉଛି । ବ୍ୟାଙ୍କରେ ମୋର କେତେ ହଜାର ଡଲାର ଅଛି । ତୁମର ଏଇ ଏୟାର-ବ୍ରେକରେ ମୁଁ ସେହି ଟଙ୍କା ଖଟେଇବାକୁ ଚାହେଁ ।”

ଜର୍ଜ ଏଥିରେ ଅପତ୍ତି କରି ଉଠିବାରୁ ରାଲ୍‌ଫ କହିଲା, “ନା, ନା ତୁମେ କିଛି କହିବା ପୂର୍ବରୁ ଆଗେ ମୋ ପ୍ରସ୍ତାବଟା ଭଲରୂପେ ଶୁଣ ।

ମୋ ଟଙ୍କାରେ ତୁମେ ଗୋଟିଏ ପୂର୍ଣ୍ଣ ବ୍ରେକ ସରଞ୍ଜାମ ତିଆରି କରି ପାରିବ । ତାହାହେଲେ ତୁମେ କୌଣସି ରେଲକମ୍ପାନୀ ପାଖକୁ ଯାଇ ଖାଲି କାଗଜରେ ନକ୍ସା ପରିବର୍ତ୍ତିରେ ଗୋଟାଏ ବାସ୍ତବ ଜିନିଷ ଦେଖାଇ ପାରିବ ।"

ଜର୍ଜ ଦୃଢ଼ ସ୍ୱରରେ କହିଲି, "ନା, ମୁଁ ତୁମର ଏ ପ୍ରସ୍ତାବ ଗ୍ରହଣ କରି ପାରିବି ନାହିଁ । ଏଥିରେ ବିପଦର ସମ୍ଭାବନା ଅଛି । ମନେ କର, କୌଣସି ରେଲକମ୍ପାନୀ ମୋର ଏହି ଯନ୍ତ୍ରଟିକୁ ପସନ୍ଦ କଲେ ନାହିଁ । ତାହାହେଲେ ତୁମର ସବୁ ତକ ଟଙ୍କା ବୁଡ଼ିଯିବ । ନା, ମୁଁ ବନ୍ଧୁତ୍ୱର ସୁଯୋଗ ନେଇ ଏପରି କରି ନ ପାରେ ।

ରାଲଫ୍ ହସି ହସି କହିଲି, "ଏଥିରେ ବନ୍ଧୁତ୍ୱର ପ୍ରଶ୍ନ ଆଦୌ ନାହିଁ । ପୂରା ବ୍ୟବସାୟର କଥା । ବୁଝିଲ ମୁଁ ବ୍ୟବସାୟୀ ବଂଶରେ ଜନ୍ମ, କେତେ ପୁରୁଷ ହେଲା ଆମେ ବ୍ୟବସାୟ କରି ଆସୁଛୁ । ମୁଁ ନିଶ୍ଚୟ କରି କହି ପାରେଁ, ଏଥିରେ ଲାଭ ମିଳିବାର ବିଶ୍ୱାସ ନ ଥିଲେ ମୁଁ କଦାପି ଟଙ୍କାଦେବାକୁ କହି ନ ଥାନ୍ତି ।"

ଜର୍ଜ ଇତସ୍ତତଃ ହୋଇ ଟିକିଏ ଚିନ୍ତା କରି ମାର୍ଗେରେଟ ଆଡ଼କୁ ଚାହିଁ ପଚାରିଲି, "ଏ ବିଷୟରେ ତୁମର ମତ କଅଣ କହିଲ ।"

ମାର୍ଗାରେଟ କହିଲା, "ତୁମେ ସିନା ସ୍ଥିର କରିବ । ମୁଁ ତ କରିବି ନାହିଁ । ତେବେ ତୁମର କଳ୍ପନାରେ ମୋର ପୂରା ବିଶ୍ୱାସ ଅଛି । ରାଲଫ୍‌ଙ୍କର ମଧ୍ୟ ସେହିପରି ପ୍ରଗାଢ଼ ବିଶ୍ୱାସ । ତେଣୁ ମୁଁ ନିରପେକ୍ଷ ମତ ଦେଇ ପାରିବି ବୋଲି ଆଶା କରାଯାଏ ନାହିଁ ।"

କିଛି ସମୟ ପର୍ଯ୍ୟନ୍ତ ସମସ୍ତେ ନୀରବ ରହିଲେ । ତାପରେ ଜର୍ଜ ନମ୍ର ସ୍ୱରରେ କହିଲି, "ଆଚ୍ଛା ରାଲଫ୍, ମୁଁ ତେବେ ତୁମର ପ୍ରସ୍ତାବ ଗ୍ରହଣ କରୁଛି । କିନ୍ତୁ ମୋର କହିବାର କଥା ହେଉଛି, ଗୋଟାଏ ଚୁକ୍ତି ପତ୍ରରେ ଉଭୟ ପକ୍ଷ ସ୍ୱାକ୍ଷର କରିଦେବା ଦରକାର । ତାହାହେଲେ ଏୟାରବ୍ରେକରେ ତୁମର ସ୍ୱାର୍ଥ ସୁରକ୍ଷିତ ହୋଇ ପାରିବ ।"

ରାଲ୍ଫ ହିକଏ ହସି ଏଥିରେ ସ୍ୱୀକୃତ ଜଣାଇଲା । ଦୁଇ ଅଂଶୀଦାର ଚୁକ୍ତି ପତ୍ରରେ ସ୍ୱାକ୍ଷର କରି ପରସ୍ପର କରମର୍ଦ୍ଦନ କଲେ ।

ଏହାର ଠିକ୍ ପରେ ଜର୍ଜ ଏୟାରବ୍ରେକର ସମସ୍ତ ଯନ୍ତ୍ରପାତି ତିଆରି କରାଇବାରେ ଲାଗି ପଡ଼ିଲା । ସ୍କଟ୍‌ଉଡ୍ ଏଣ୍ଡ ମାକ୍‌କାଫ୍ରେ ନାମକ ଏକ ସ୍ଥାନୀୟ କାରଖାନା ସଙ୍ଗେ ରାଲ୍ଫର ପରିଚୟ ଥିଲା । ତେଣୁ ସେହି କାରଖାନାରେ କେବଳ ମୂଳ ଖରଚରେ ଏହି କାମ ହୋଇଗଲା । ଜର୍ଜ ପ୍ରଥମ ଦିନ ପୁରୁଣା ଲଫାପା ଉପରେ ଯେଉଁ ନକ୍‌ସାଟି ଆଙ୍କିଥିଲା, ମୂଳତଃ ତାହାର ଅନୁସାରେ ଯନ୍ତ୍ରଟି ତିଆରି ହେଲା । ଅବଶ୍ୟ ସେଥିରେ ଛୋଟ ଛୋଟ ପରିବର୍ତ୍ତନ କରାଯାଇଥିଲା । ସଂକ୍ଷେପରେ ଯନ୍ତ୍ରଟି ହେଲା ଏହିପରି—

ଷ୍ଟୀମ ଚାଳିତ ପମ୍ପଦ୍ୱାରା ଗୋଟିଏ ଟ୍ୟାଙ୍କରେ ବାୟୁକୁ ସଞ୍ଚାପିତ କରି ପ୍ରତି ବର୍ଗ ଇଞ୍ଚରେ ଷାଠିଏଠାରୁ ସତୁରି ପାଉଣ୍ଡ ପର୍ଯ୍ୟନ୍ତ ଚାପ ଦିଆଗଲା । ଟ୍ୟାଙ୍କରୁ ଗୋଟିଏ ପାଇପ ଗଲା ଭଲ୍‌ଭ ବ୍ୟବସ୍ଥା ପର୍ଯ୍ୟନ୍ତ । ଏହିଠାରୁ ଇଞ୍ଜିନଚାଳକ ବ୍ରେକ ନିୟନ୍ତ୍ରଣ କରିବ । ଆଉ ଗୋଟିଏ ¾ ଇଞ୍ଚ ବ୍ୟାସବିଶିଷ୍ଟ ପାଇପ ଟ୍ରେନର ଏକପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ଗଲା । ପ୍ରଧାନ ପାଇପଟି ପ୍ରକୃତ ପକ୍ଷରେ ବହୁ ସଂଖ୍ୟକ ଛୋଟ ଛୋଟ ପାଇପର ସମଷ୍ଟି । ପ୍ରତ୍ୟେକ ଦୁଇଡବାର ମଧ୍ୟ ସ୍ଥଳରେ ମୋଟ ରବରର ନଳଦ୍ୱାରା ସେଗୁଡ଼ିକ ପରସ୍ପର ସଂଯୁକ୍ତ ହୋଇଥିଲେ । ଆହୁରି ମଧ୍ୟ ପ୍ରତ୍ୟେକ ଡବାର ତଳେ ପ୍ରଧାନ ପାଇପଟି ସିଲିଣ୍ଡର ଓ ଭଲ୍‌ଭ ସଙ୍ଗେ ସଂଯୁକ୍ତ ହୋଇଥିଲା । ପୁଣି ଏଗୁଡ଼ିକ ବ୍ରେକ-ଶୁ ସହିତ ସଂଲଗ୍ନ ରହିବାର ବ୍ୟବସ୍ଥା ଥିଲା ।

ଗାଡ଼ି ବନ୍ଦ କରିବାକୁ ହେଲେ ଇଞ୍ଜିନଚାଳକ କେବଳ ଭଲ୍‌ଭଟି ଖୋଲି ଦେବ । ସଙ୍ଗେ ସଙ୍ଗେ ସଞ୍ଚାପିତ ବାୟୁ ଲମ୍ବା ପାଇପରେ ପ୍ରବେଶ କରିବ ଓ ସେଠାରୁ ଯିବ ପ୍ରତ୍ୟେକ ଡବାର ତଳେ ଥିବା ସିଲିଣ୍ଡରକୁ । ବ୍ରେକ ଖୋଲିବା ବେଳେ ଏହି ବାୟୁକୁ ପୁଣି ଭଲ୍‌ଭବାଟେ ବାହାର କରି ଦେଲେ ହେଲା ।

ନକ୍‌ସାଟିରେ ଜର୍ଜ ସାମାନ୍ୟ ପରିବର୍ତ୍ତନ କରିଥିଲା । ସେ ଦୁଇ ଡବାର ମଝିରେ ପ୍ରତ୍ୟେକ ଜୋଡ଼ ସ୍ଥାନରେ ଗୋଟିଏ ଲେଖାଏଁ ଭଲ୍‌ଭର

ବ୍ୟବସ୍ଥା କଲା । ଜୋଡ଼ ମୁହଁ ବନ୍ଦ ଥିଲେ ଭଲ୍‌ଭଟି ଆପେ ଆପେ ଖୋଲା ଯିବ । ଜୋଡ଼ ମୁହଁ ଖୋଲା ଥିଲେ ଭଲ୍‌ଭଟି ବନ୍ଦ ହୋଇଯିବାର ବ୍ୟବସ୍ଥା ଥି । ଯଦି କୌଣସି କାରଣରୁ ବ୍ରେକ ଦେବା ପରେ ଗୋଟିଏ ଡବା ଟ୍ରେନରୁ ଅଲଗା ହୋଇପଡ଼େ, ତେବେ କୌଣସି ଡବାରୁ ସଞ୍ଚାପିତ ବାୟୁ ବାହାର ଯିବାର ପଥ ଖୋଲା ନଥିବା ହେତୁ ଅଲଗା ହୋଇଥିବା ଡବା ଓ ଟ୍ରେନ ଉଭୟେ ବନ୍ଦ ହୋଇ ରହିଯିବେ । ପାହାଡ଼ର ଗଡ଼ାଣିଆ ଜାଗାରେ ବା ଢ଼ାଲୁ ଜାଗାରେ ଗାଡ଼ି ଯେପରି ଗଡ଼ି ନ ପଡ଼େ ସେଥିପାଇଁ ସତର୍କତା ଅବଲମ୍ବନ କରାଯାଇଥିଲା ।

ଯନ୍ତ୍ରଟି ଏତେ ସାଧାସିଧା ଯେ ମାତ୍ର କେତୋଟି ସପ୍ତାହ ମଧ୍ୟରେ ତିଆରି ହୋଇଗଲା । ଜର୍ଜ ନିଜର ବନ୍ଧି କାର୍ଯ୍ୟରେ ଏଣେତେଣେ ଯିବା ସମୟ ଛଡ଼ା ଅନ୍ୟ ସମୟରେ ଯନ୍ତ୍ରନିର୍ମାଣ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରୁଥିଲା । ଯନ୍ତ୍ରଟିର ନିର୍ମାଣ ଶେଷ ହେବାପରେ ଜର୍ଜ ରାଲ୍‌ଫକୁ କାରଖାନାକୁ ଡାକ ନେଇ ଦେଖାଇଲା । "ଏବେ ସୁଦ୍ଧା କିଛି ଠିକ୍ ଚାଲିଛି ।" ଏହା କହି ସେ ଖଣ୍ଡିଏ ଖର୍ଚ୍ଚ ତାଲିକା ରାଲ୍‌ଫ ହାତକୁ ବଢ଼ାଇ ଦେଲା ।

ରାଲ୍‌ଫର ସହାୟତାରେ ସେ ପେନସିଲଭାନିଆ ରେଲକମ୍ପାନୀର ଜଣେ ଉଚ୍ଚ କର୍ମଚାରୀଙ୍କ ସହିତ ସାକ୍ଷାତ ଲାଭ କରିବାକୁ ସମର୍ଥ ହେଲା । ଉକ୍ତ କର୍ମଚାରୀ ବ୍ରେକଯନ୍ତ୍ରଟି ପରୀକ୍ଷାକରି ସନ୍ତୁଷ୍ଟ ହେଲେ । ସେ ଆଶା ଦେଇ କହିଲେ, "ମୁଁ ଏହି ବିଷୟ ଆମ କମ୍ପାନୀର ବୋର୍ଡ଼ ଅଫ୍ ଡିରେକ୍ଟରସ୍‌ଙ୍କ ଆଗରେ ଉପସ୍ଥାପିତ କରିବି ।" ମାତ୍ର ଏହାପରେ କମ୍ପାନୀ-ଠାରୁ ଆଉ କିଛି ଶୁଣାଯାଇ ନ ଥିଲା । କେତେ ସପ୍ତାହ ଚାଲିଗଲା । କିଛି ଉତ୍ତର ନ ଆସିବାରୁ ଅନୁମାନ କରାଗଲା ଯେ କମ୍ପାନୀ ଏ ବିଷୟରେ ଆଗ୍ରହୀ ନୁହନ୍ତି ।

ଆଣ୍ଡରସନ ଏଣ୍ଡ କୁକ୍ କମ୍ପାନୀର ଅଫିସରେ କାମ କରିବାର ସୁବିଧା ପାଇଁ ଜର୍ଜକୁ ଗୋଟିଏ ଟେବୁଲ ଦିଆ ଯାଇଥିଲା । ଦିନେ ସକାଳ ବେଳା ସେ ଏହି ଟେବୁଲ ପାଖରେ ବସି ମାସିକ ହିସାବ ଦେଖୁଛି ଏହି ସମୟରେ ଜଣେ ହୃଷ୍ଟପୁଷ୍ଟ ପ୍ରୌଢ଼ ଭଦ୍ରବ୍ୟକ୍ତି ସେଠାରେ ଉପସ୍ଥିତ ହେଲେ ।

ସେ ପଚାରିଲେ, "ମିଷ୍ଟର ୱେଷ୍ଟିଂହାଉସଙ୍କ ସଙ୍ଗେ କେଉଁଠାରେ ଦେଖା ମିଳିପାରିବ ?"

"ମୁଁ ହେଉଛି ଜର୍ଜ ୱେଷ୍ଟିଂହାଉସ ।"

ଆଗନ୍ତୁକ ଭଦ୍ରବ୍ୟକ୍ତି ବିଶ୍ୱାସ ନ କରି ଭଳି କହିଲେ, "ତୁମେ ? ମୁଁ ଭାବିଥିଲି ଯେ ମିଷ୍ଟର ୱେଷ୍ଟିଂହାଉସ ମୋଟିକି ଜଣେ ବୟସ୍କ ଲୋକ ହୋଇଥିବେ ।"

ଜର୍ଜ ଟିକିଏ ହସି ଦେଇ କହିଲା, "କିନ୍ତୁ ମୁଁ ହେଉଛି ସେହି ଜର୍ଜ ୱେଷ୍ଟିଂହାଉସ ।"

ଆଗନ୍ତୁକ ଭଦ୍ରବ୍ୟକ୍ତି କହିଲେ, "ମୋର ନାମ ହେଉଛି ଡବଲିଉ ଡବଲିଉ କାର୍ଡ଼ । ମୁଁ ପାନହାଣ୍ଡଲ ରେଲକମ୍ପାନୀର ସୁପରିଣ୍ଟେଣ୍ଡେଣ୍ଟ । ଏବେ ମୋର ଆସିବାର ଉଦ୍ଦେଶ୍ୟ କହେ । ପେନସିଲଭାନିଆ ରେଲକମ୍ପାନୀରେ ଥିବା ମୋର କେତେକ ବନ୍ଧୁଙ୍କଠାରୁ ଶୁଣିଲି ଯେ ତୁମେ ଗୋଟିଏ ବିଚିତ୍ର ବ୍ରେକ ତିଆରି କରିଛ । ତା' ବିଷୟରେ କିଛି ଜାଣିବା ପାଇଁ ମୁଁ ଆସିଛି ।"

ଜର୍ଜ ଏୟାରବ୍ରେକର ନକ୍ସାଗୁଡ଼ିକ ବାହାର କରି ପ୍ରାୟ ଦଶମିନିଟ ପର୍ଯ୍ୟନ୍ତ ଏହି ଯନ୍ତ୍ରର ମୌଳିକ ସୂତ୍ରଗୁଡ଼ିକ ବୁଝାଇଲା । ମିଷ୍ଟର କାର୍ଡ଼ ଅତି ଯତ୍ନ ସହକାରେ ନକ୍ସାଗୁଡ଼ିକ ପରୀକ୍ଷା କରି ଦେଖିଲେ । ତାହାପରେ ସେ କହିଲେ, "ତୁମେ ଏହି ବ୍ରେକ ବିଷୟରେ ଯାହା କହିଲ, ସେଥିରୁ ଜଣାପଡ଼ୁଛି, ଏ ଗୋଟିଏ ଉତ୍ତମ ଉପାୟ । କାଗଜ କଲମର ହିସାବରୁ ଏ ଯେପରି କାମ ଦେବ ବୋଲି ଜଣାଯାଉଛି, ଯଦି ପ୍ରକୃତରେ ସେହିପରି କାମ ଦିଏ, ତେବେ ତୁମେ ରେଲଚଳାଚଳରେ ଗୋଟାଏ ବିପ୍ଳବ ସୃଷ୍ଟି କରିବ । ଟ୍ରେନ ଚାଲିବାର ସମୟ ଅଧେ କମି ଯାଇ ପାରିବ । ଆଚ୍ଛା, ଆପଣଙ୍କ ଯନ୍ତ୍ରଟି କେଉଁଠାରେ ଦେଖିବାକୁ ମିଳିବ ?"

ଜର୍ଜ ସବୁ କାଗଜପତ୍ର ରଖିଦେଇ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ସାଙ୍ଗରେ ନେଇ ଆଟଉଡ଼ ଏଣ୍ଡ ମାକ୍‌କାଫ୍ରେଙ୍କ କାରଖାନାରେ ପହଞ୍ଚିଲା । ସେହିଠାରେ

ଯନ୍ତ୍ରଟି ରଖା ଯାଇଥିଲା । ମିଷ୍ଟର କାର୍ଡ଼ ଯନ୍ତ୍ରର ପ୍ରତ୍ୟେକ ଅଂଶ ପରୀକ୍ଷା କରି ଦେଖିଲେ । ଜର୍ଜଙ୍କୁ ନାନା ପ୍ରଶ୍ନ ପଚାରି ବୁଝିଲେ । ତାପରେ ସେ କହିଲେ, "ଆଚ୍ଛା, ମିଷ୍ଟର ଓ୍ୱେଷ୍ଟିଙ୍ଗ୍‌ହାଉସ, ଆମର ନିପୁଣ ବିଭାଗର କର୍ମଚାରୀଙ୍କୁ ଆଣି ଏଇଟି ଦେଖାଇବି ।"

ଦୁଇଦିନ ପରେ ମିଷ୍ଟର କାର୍ଡ଼ ଉକ୍ତ କର୍ମଚାରୀଙ୍କ ସହିତ ପୁନରାୟ ଉପସ୍ଥିତ ହେଲେ । ଦୁହେଁଯାକ ଯନ୍ତ୍ରଟିର ସବୁ ଅଂଶ ଦେଖି କହିଗଲେ ଯେ ସେମାନେ ଏହି ଯନ୍ତ୍ର କିଣିବା ପାଇଁ ପାନହାଣ୍ଡଲ ରେଲକମ୍ପାନୀର ବୋର୍ଡ଼ ଅଫ୍ ଡିରେକ୍ଟରଙ୍କୁ ସୁପାରିଶ କରିବେ ।

ପେନସିଲଭାନିଆ କମ୍ପାନୀର ଅଭିଜ୍ଞତାପରେ ଜର୍ଜ ଓ ରାଲ୍‌ଫ ଆଶଙ୍କା କରିଥିଲେ ଯେ ବ୍ୟାପାରଟି ଅନେକ ଦିନ ଗଡ଼ି ଚାଲିବ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ କାମଟା ବଡ଼ ଦ୍ରୁତ ଗତିରେ ହୋଇଗଲା । ଠିକ୍ ଏକ ସପ୍ତାହ ପରେ ମିଷ୍ଟର କାର୍ଡ଼ ଗୋଟିଏ ପ୍ରସ୍ତାବ ଘେନି ଉପସ୍ଥିତ ହେଲେ ।

ସେ କହିଲେ, "ଆମ କମ୍ପାନୀ ଆପଣଙ୍କର ଏହି ଯନ୍ତ୍ରକୁ ପରୀକ୍ଷା-ମୂଳକ ଭାବରେ ଚଳାଇ ଦେଖିବାକୁ ସ୍ୱୀକୃତ ହୋଇଅଛନ୍ତି । ଆମେ ଗୋଟିଏ ଟ୍ରେନ ଠିକ୍ କରି ରଖିଛୁ । ଏଥିରେ ଇଞ୍ଜିନ ଛଡ଼ା ଚାରିଟି ଡବା ଅଛି । ଟ୍ରେନଟିର ନାମ 'ଷ୍ଟିଉବେନଭିଲ ଆକମୋଡେସନ' । ପିଟସବର୍ଗ ଷ୍ଟେସନରୁ ଟ୍ରେନ ଚାଲିଯିବ । କିନ୍ତୁ ବ୍ରେକ ଲଗାଇବାର ଖରଚ ଆପଣଙ୍କର । ପରୀକ୍ଷାରେ ଟ୍ରେନର କିଛି କ୍ଷତି ହେଲେ ତାର କ୍ଷତି-ପୂରଣ ଦେବାପାଇଁ ଆପଣଙ୍କୁ ଚୁକ୍ତିବଦ୍ଧ ହେବାକୁ ପଡ଼ିବ । ଆପଣମାନଙ୍କ ମତ କଅଣ ?"

ଜର୍ଜ ଓ ରାଲ୍‌ଫ ପରସ୍ପରକୁ ଚାହିଁ ରହିଲେ । ସେମାନେ ହଠାତ୍ କଥାଟା ବିଶ୍ୱାସ କରି ପାରିଲେ ନାହିଁ । ଏତେ ଦିନ ହେଲା ସେମାନେ ଏହିପରି ଏକ ସୁଯୋଗର ଅପେକ୍ଷାରେ ରହିଥିଲେ ।

ଜର୍ଜ ଅବିଳମ୍ବେ ଉତ୍ତର କଲା, "ଆମେ ଆନନ୍ଦରେ ଆପଣର ପ୍ରସ୍ତାବ ଗ୍ରହଣ କରୁଛୁ । ସଙ୍ଗେ ସଙ୍ଗେ ଟ୍ରେନରେ ବ୍ରେକ ଲଗାଇବାର ବ୍ୟବସ୍ଥା କରୁଛୁ । ଯେତେ ଶୀଘ୍ର ସମ୍ଭବ ଟ୍ରେନ ଚଳାଇ ପରୀକ୍ଷା କରାଯାଉ ।"

ପରେ ଦୁଇ ଅଂଶୀଦାର ହିସାବ କରି ଦେଖିଲେ ଯେ ଆଗରୁ ଯନ୍ତ୍ର ତିଆରିରେ ଯାହା ଖରଚ ହୋଇଥିଲା ତାହା ସଙ୍ଗରେ ବ୍ରେକ ଲଗାଇବାର ଖରଚ ମିଶିଲେ ଅନେକ ବେଶି ହୋଇଯିବ । ସେମାନେ ଯେତେ ଖରଚ ହେବ ବୋଲି ଅନୁମାନ କରିଥିଲେ, ତହିଁରୁ ତେର ବଳି ପଡ଼ିବ । କିନ୍ତୁ ବ୍ରେକର କାର୍ଯ୍ୟକାରିତା ପରୀକ୍ଷା କରି ଦେଖିବାର ଉତ୍ସାହରେ ସେମାନେ ଏ ସବୁ ବିଷୟ ପ୍ରତି ଦୃଷ୍ଟି ଦେଇ ନ ଥିଲେ । ବ୍ରେକର ଯନ୍ତ୍ରପାତି ନେଇ ଟ୍ରେନରେ ଖଞ୍ଜିବା କାମରେ ଦୁହେଁଯାକ ନିଜେ ମିସ୍ତ୍ରୀଙ୍କ ସାଥିରେ ଲାଗି ପଡ଼ିଲେ । ଏହାଦ୍ୱାରା ସେମାନେ ଆଶା କରିଥିଲେ ଯେ ମିସ୍ତ୍ରୀ ଖରଚରୁ କିଛି କମିଯିବ ଓ ଫଳରେ ରାଲ୍‌ଫ ଦେଇଥିବା ଟଙ୍କାରୁ ସାମାନ୍ୟ କିଛି ବଳି ପାରିବ ।

ଏତେ ହିସାବ ସତ୍ତ୍ୱେ କାର୍ଯ୍ୟ ଶେଷରେ ଯାହା ବଳିଲା ସେଥିରେ ବିଶେଷ ଆଶ୍ୱାସନାର କାରଣ ନ ଥିଲା । ଟ୍ରେନରେ ବ୍ରେକ ଲଗାଯିବା ପରେ ଦେଖାଗଲା ଯେ ହାତରେ ନଗଦ ଅଛି ଦଶ ଡଲାରରୁ କିଛି କମ୍ ।

୧୮୬୯ ମସିହା ଅପ୍ରେଲ ମାସର ଦିନେ ସକାଳେ ମାର୍ଗରେଟଠାରୁ ବିଦାୟ ନେଇ ଜର୍ଜ ୟୁନିଅନ ଷ୍ଟେସନ ଅଭିମୁଖରେ ଯାତ୍ରା କଲା । ଆଗରୁ ରାଲ୍‌ଫ ସେଠାକୁ ଆସିଥିଲା । ଦୁହିଁଙ୍କର ଷ୍ଟେସନରେ ଭେଟ ହେଲା । ଟ୍ରେନ ଲାଇନ ଉପରେ ଠିଆ ହୋଇଥିଲା । ଇଞ୍ଜିନରେ ନିଆଁ ଦିଆ ହୋଇଥିବାରୁ ସେଥିରୁ ଫଁସଫଁସ ହୋଇ ଧୂଆଁ ବାହାରୁଥିଲା । ମିଷ୍ଟର କାର୍ଡ ଓ ପାନହାଣ୍ଡଲ ରେଲକମ୍ପାନୀର କର୍ମଚାରୀମାନଙ୍କୁ ସମସ୍ତେ ଅପେକ୍ଷା କରି ଥାଆନ୍ତି । ଏଥି ମଧ୍ୟରେ ଜର୍ଜ ଟ୍ରେନରେ ଲାଗିଥିବା ବ୍ରେକର ପ୍ରତ୍ୟେକ ଅଂଶ ଶେଷ ଥର ପାଇଁ ଭଲକରି ଦେଖି ଜାଣିଲା ଯେ ଯନ୍ତ୍ରଟି ଠିକ୍ ଅଛି । ସୁପରିଣ୍ଟେଣ୍ଡେଣ୍ଟ କାର୍ଡ ତାଙ୍କର କର୍ମଚାରୀମାନଙ୍କ ସହିତ ପହଞ୍ଚିବାରୁ ସେମାନେ ରାଲ୍‌ଫ ସହିତ ଯାତ୍ରୀଡବାମାନଙ୍କରେ ବସିଲେ । ଜର୍ଜ ଇଞ୍ଜିନ-ଚାଳକ ଡେନିଏଲ ଟେଟଙ୍କ ପାଖରେ ବସିପଡ଼ିଲା ।

ଜର୍ଜ କହିଲା, "ଡେନିଏଲ, ଏଥର ଗାଡ଼ି ଛାଡ଼ ।"

ଇଞ୍ଜିନ ଚାଳକ ଘଣ୍ଟି ଦେଇ ଭଲ୍‌ଭର ମୁହଁ ଖୋଲିଦେଲା । ଟିକିଏ ଝିଙ୍କିକରି ଗାଡ଼ି ଧୀରେ ଧୀରେ ଚାଲିଲା । ଗାଡ଼ି ଷ୍ଟେସନ ଅତିକ୍ରମ କରି

ଆଗେଇବାକୁ ଲାଗିଲା । ଡେନିଏଲ କହିଲା ଯେ ଆଉ କେତେକ ମିନିଟ ପରେ ଟ୍ରେନ ଗ୍ରାଣ୍ଟ ପାହାଡ଼ର ସୁଡ଼ଙ୍ଗରେ ପହଞ୍ଚିବ । ଜର୍ଜ ଅତି ଆନନ୍ଦରେ ଏହା ଶୁଣିଲା ।

ହଠାତ୍ ବାହାର ଲାଇନ ଉପରେ ଦୃଷ୍ଟି ପଡ଼ିଲା କ୍ଷଣି ତା ଦେହର ରକ୍ତ ଜମାଟ ବାନ୍ଧିଗଲା । ମାତ୍ର କେତେ ଶହ ଗଜ ଦୂରରେ ଯେଉଁଠାରେ ଗୋଟିଏ ରାସ୍ତା ରେଲଲାଇନ ପାର ହୋଇ ଯାଇଛି, ସେଠାରେ ଗୋଟିଏ ଘୋଡ଼ାଗାଡ଼ି ଅସ୍ଥିର ଭାବରେ ରେଲଲାଇନ ଉପରେ ଛିଡ଼ା ହୋଇଛି । ଗାଡ଼ି ଚାଳକ ଆତଙ୍କିତ ହୋଇ ଚାବୁକ ମାରିବାରୁ ଘୋଡ଼ା ଦୁଇଟା ଲଗାମ ଛିଣ୍ଡାଇ ପଳାଇ ଯାଇଥିଲେ । ଗାଡ଼ିବାଲା ଛିଟିକି ଯାଇ ଠିକ୍ ଲାଇନ ଉପରେ ପଡ଼ିଛି ।

ଭୟରେ ଅସ୍ଥିର ହୋଇ ଜର୍ଜ ଡେନିଏଲ ଆଡ଼କୁ ଚାହିଁଲା । ସେତେବେଳକୁ ସେ ମଧ୍ୟ ଅବସ୍ଥାର ଗୁରୁତ୍ୱ ବୁଝି ସାରିଥିଲା । ଡେନିଏଲ ଖୁବ୍ ଜୋରରେ ବ୍ରେକ ଭଲ୍‌ଭକୁ ଧରି ଘୁରାଇ ଦେଲା । ପିଷ୍ଟନସବୁ ବ୍ରେକ୍-ଶୁଗୁଡ଼ିକୁ ଶକ୍ତ ଭାବରେ ଚକ ଦେହରେ ଲଗାଇ ଦେଲା ବେଳେ ଗୋଟାଏ ବିକଟ ଶବ୍ଦ ଶୁଣାଗଲା । ଟ୍ରେନ ଏତେ ଶୀଘ୍ର ବନ୍ଦ ହୋଇଗଲା ଯେ ଆଉ ଟିକିଏ ଯାଇଥିଲେ ଜର୍ଜ ମୁହଁମାଡ଼ି ପଡ଼ି ଯାଇଥାନ୍ତା । ଇଞ୍ଜିନର ସମ୍ମୁଖ ଭାଗଟି ଧରାଶାୟୀ ଗାଡ଼ିବାଲାଠାରୁ ମାତ୍ର ଏକ ଗଜ ଦୂରରେ ଥିଲା । ଲୋକଟି ଭୟରେ ଏତେ ବିଚଳିତ ହୋଇ ଯାଇଥିଲା ଯେ ତାର ଉଠିବାର ଶକ୍ତି ଲୋପ ପାଇଯାଇଥିଲା ।

ସେତେବେଳକୁ କଅଣ ହେଲା ବୋଲି ପଛ ଗାଡ଼ିର ଲୋକେ ଓ ମିଷ୍ଟର କର୍ଡ଼ ହୋହା କରି ଇଞ୍ଜିନ ପାଖକୁ ଧାଇଁଆସିଥିଲେ । ଦୁର୍ଘଟଣାରୁ ରକ୍ଷା ମିଳିଗଲା ସତ, କିନ୍ତୁ ଏହି ଦୁର୍ଘଟଣାର ଭୟରେ ଜର୍ଜର ମୁହଁ କଳା ପଡ଼ି ଯାଇଥିଲା । ଇଞ୍ଜିନ ଚାଳକ ଡେନିଏଲ ତଳକୁ ଓହ୍ଲାଇ ପଡ଼ି ଲୋକଟାକୁ ଛିଡ଼ା କରାଇ ଦେଲା । ସୌଭାଗ୍ୟବଶତଃ ତାର ଆଘାତ ଆଦୌ ଗୁରୁତର ନ ଥିଲା । ଜର୍ଜ ସମସ୍ତଙ୍କୁ ଘଟଣାଟା ବିଶଦଭାବରେ ବୁଝାଇ ଦେଲା ।

ମିଷ୍ଟର କାର୍ଡ଼ ଜର୍ଜର ପିଠିରେ ହାତ ମାରି ଧନ୍ୟବାଦ ଜଣାଇ କହିଲେ, "ଜର୍ଜ, ତୁମର ବ୍ରେକ ଚମତ୍କାର ଫଳ ଦେଇଛି । ଏହାର କାର୍ଯ୍ୟକାରିତା ନିଃସନ୍ଦେହରୂପେ ପ୍ରମାଣିତ ହୋଇଗଲା । ଅନ୍ୟ କର୍ମଚାରୀ-ମାନେ ମଧ୍ୟ କାର୍ଡ଼ଙ୍କ ସହିତ ଏକମତ ହେଲେ ।

ଜର୍ଜ କହିଲା ଯେ ପୂର୍ବ ପ୍ରସ୍ତାବ ଅନୁସାରେ ପୂରା ପରୀକ୍ଷା କରାଯାଉ । ସେ ଡେନିଏଲଙ୍କୁ ପୁଣି ଗାଡ଼ି ଚଳାଇବାକୁ ସଙ୍କେତ ଦେଲା ।

ପରୀକ୍ଷାମୂଳକ ଗାଡ଼ି ଚାଳନାର ଅବଶିଷ୍ଟ ଅଂଶରେ ସେପରି ବିଶେଷ ଘଟଣା ଘଟି ନ ଥିଲା । ନାନା ଅବସ୍ଥାରେ—ଧୀର ଗତିରେ ଗଲାବେଳେ, ଦ୍ରୁତ ଗତିରେ ଗଲାବେଳେ, ବାଙ୍କ ବୁଲିବା ବେଳେ, ଉଠାଣିରେ, ଗଡ଼ାଣିରେ—ବ୍ରେକ ଦେଇ ପରୀକ୍ଷା କରାଗଲା । ଏହିପରି ଦଶଥର ପରୀକ୍ଷା ହୋଇଥିଲା । ପ୍ରତ୍ୟେକ ଥର ବ୍ରେକ ନିର୍ଭୁଲ ଭାବରେ ଗାଡ଼ି ବନ୍ଦ କରି ପାରିଲା ।

ଟ୍ରେନ ପୁଣି ପୂର୍ବ ଷ୍ଟେସନକୁ ଫେରିଆସିଲା । ରାଲ୍ଫ ଓ ଜର୍ଜ ଯାଇ ଆଗେ ମାର୍ଗାରେଟଙ୍କୁ ଏହି ଶୁଭ ସମ୍ବାଦ ଜଣାଇଲେ । ମାର୍ଗାରେଟ ଆନନ୍ଦରେ ଜର୍ଜଙ୍କୁ ଆଲିଙ୍ଗନ କରି କହିଲା, "ଏ ଶୁଭଦିନରେ ରାଲ୍ଫ ଆଜି ଏହିଠାରେ ଭୋଜନ କରିବେ ।" ମାତ୍ର ଜର୍ଜ ଓ ରାଲ୍ଫ ଆନନ୍ଦରେ ଏପରି ଅଧୀର ହୋଇ ପଡ଼ିଥିଲେ ଯେ ଦୁହେଁଯାକ କ୍ଷୁଧା ତୃଷା ଭୁଲି ଯାଇଥିଲେ ।

ଏହି ଘଟଣାର ପ୍ରାୟ ତିନିମାସ ପରେ ୧୮୬୯ ମସିହାର ଜୁଲାଇ ମାସରେ ରାଲ୍ଫ ଓ ଜର୍ଜ ଦୁହେଁଯାକ ଯାଇ ସୁପରିଣ୍ଟେଣ୍ଡେଣ୍ଟ ମିଷ୍ଟର କାର୍ଡ଼ ଓ ପିଟସବର୍ଗ ଅଞ୍ଚଳର କେତେକ ରେଲକମ୍ପାନୀର କର୍ତ୍ତୃପକ୍ଷଙ୍କ ସଙ୍ଗେ ସାକ୍ଷାତ କଲେ । ଏୟାର ବ୍ରେକ ଭଲ କାମ ଦେଉଛି ବୋଲି ସମସ୍ତେ ଏହାର ପ୍ରଶଂସା କଲେ । ବିଧିବଦ୍ଧଭାବରେ ଭୋଟ ନିଆଯାଇ ସ୍ଥିର ହେଲା ଯେ ସେମାନେ ଓ୍ୱେଷ୍ଟିଂହାଉସ ଏୟାର ବ୍ରେକ କମ୍ପାନୀ ନାମରେ ଗୋଟିଏ ସମବାୟ ଅନୁଷ୍ଠାନ ପ୍ରତିଷ୍ଠା କରିବେ ଓ ଏହାର ମୂଳଧନ ହେବ ଦଶଲକ୍ଷ ଡଲାର ।

ରାଲ୍ଫ କହିଲା ଯେ ସେ ଯେଉଁ କମ୍ପାନୀରେ କାର୍ଯ୍ୟ କରୁଥିଲା, ତାହା ଭାଙ୍ଗି ଯାଇଛି । ତେଣୁ ଏହାର ତଳେଇ କାରଖାନାକୁ ଏୟାରବ୍ରେକ ତିଆରି କାରଖାନାରେ ପରିଣତ କରାଯାଇ ପାରିବ । ସମସ୍ତେ ଏହି ପ୍ରସ୍ତାବରେ ସ୍ୱୀକୃତ ହେଲେ ।

ଏହାପରେ କମ୍ପାନୀର କର୍ମକର୍ତ୍ତାମାନଙ୍କର ନିର୍ବାଚନ ହେଲା । ରାଲ୍ଫ ବୋର୍ଡ଼ ଅଫ ଡିରେକ୍ଟରସର ଜଣେ ସଭ୍ୟରୂପେ ନିର୍ବାଚିତ ହେଲା । ସୁପରିଣ୍ଟେଣ୍ଡେଣ୍ଟ କାର୍ଡ଼ ପ୍ରସ୍ତାବ କଲେ ଯେ ଜର୍ଜ ଓ୍ୱେଷ୍ଟିଂଗ-ହାଉସ ଏହି ନୂତନ କମ୍ପାନୀର ପ୍ରେସିଡେଣ୍ଟ ହୁଅନ୍ତୁ । ସର୍ବସମ୍ମତିକ୍ରମେ ଏହା ଗୃହୀତ ହେଲା । ତେଇଶି ବର୍ଷର ଯୁବକ ଜର୍ଜ କମ୍ପାନୀର ପ୍ରେସିଡେଣ୍ଟ ପଦ ଗ୍ରହଣ କଲା ।

---

ଆଠ

# ରେଲ୍ ଶିଳ୍ପରେ ଯୁଗାନ୍ତର

ଯେଉଁମାନେ ଗଣତନ୍ତ୍ର ଆମେରିକାର ପ୍ରତିଷ୍ଠା କରିଥିଲେ, ସେମାନେ ଯଦି ୧୮୬୯ ମସିହାରେ ସେହି ଆମେରିକାକୁ ଦେଖିଥାନ୍ତେ, ତେବେ ଚିହ୍ନି ପାରିନଥାନ୍ତେ । ଏହି ବର୍ଷ ଜର୍ଜ ଓ୍ୱେଷ୍ଟିଂହାଉସଙ୍କ ଏୟାରବ୍ରେକ ରେଲପଥମାନଙ୍କରେ ପ୍ରଚଳିତ ହେଲା । ଓ୍ୱାଶିଂଟନ, ଜେଫରସନ ଏବଂ ବେଞ୍ଜାମିନ ଫ୍ରାଙ୍କଲିନଙ୍କ ସମୟରେ ଆମେରିକା ଗୋଟିଏ କୃଷିପ୍ରଧାନ ଦେଶ ଥିଲା । ଏବେ ସେହି ମହାଦେଶ ଏକ ନୂତନ ଶିଳ୍ପ ଯୁଗର ଦ୍ୱାର-ଦେଶରେ ଉପସ୍ଥିତ । ଗୃହଯୁଦ୍ଧ ଫଳରେ ଦେଶରେ ଦ୍ରୁତଗତିରେ ଶିଳ୍ପାନ୍ନତିର ଆବଶ୍ୟକତା ଅନୁଭୂତ ହେଲା । କି କୃଷି, କି ଉତ୍ପାଦନ, କି ବିଜ୍ଞାନ, କି ଆବିଷ୍କାର ସବୁ କ୍ଷେତ୍ରରେ ଏକ ବିପ୍ଳବର ସୂଚନା ଦେଖା ଦେଲା । ମନୁଷ୍ୟର ଚିନ୍ତାଧାରା ଓ ଦୃଷ୍ଟିଭଙ୍ଗୀ ଉପରେ ଏହା ବିଶେଷ ପ୍ରଭାବ ପକାଇଥିଲା ।

ସେତେବେଳକୁ ଇଉରୋପୀୟ ଦେଶମାନଙ୍କରେ ଶିଳ୍ପବିପ୍ଳବ ଆରମ୍ଭ ହୋଇ ସାରିଥିଲା । କିନ୍ତୁ ଆମେରିକାରେ ଏହି ବିପ୍ଳବର ଅତି ଦ୍ରୁତ ଓ ଅପ୍ରତିବନ୍ଧିତ ଭାବରେ ଅଗ୍ରଗତି ହୋଇଥିଲା । ଶିଳ୍ପ ବିପ୍ଳବକୁ ଆମେରିକାର ଲୋକେ ସନ୍ଦେହ ଦୃଷ୍ଟିରେ ନ ଦେଖି ଗଭୀର ବିଶ୍ୱାସ ଓ ଉତ୍ସାହ ସହ ଦେଖୁଥିଲେ । ଏହା ପୂର୍ବରୁ କୌଣସି ନୂତନ ଉଦ୍ଭାବନ ବା ଆବିଷ୍କାର ପ୍ରତି ଲୋକଙ୍କର ପ୍ରତ୍ୟକ୍ଷ ବିରୋଧ ନ ଥିଲେ ସୁଦ୍ଧା ଅନ୍ତତଃ ଉଦାସିନତା, ସନ୍ଦେହ ବା ଭୟ ଦେଖାଯାଉଥିଲା । କିନ୍ତୁ ଏବେ ସେମାନେ ଏଗୁଡ଼ିକୁ ଭିନ୍ନ ଦୃଷ୍ଟିରେ ଦେଖିବାକୁ ଲାଗିଲେ । ଟେଲିଗ୍ରାଫ, ଷ୍ଟିମ ଇଞ୍ଜିନ, ଫଟୋଗ୍ରାଫି ପ୍ରଭୃତିର ଉଦ୍ଭାବନ ହେତୁ ଯେଉଁସବୁ ଅଦ୍ଭୁତ ପରିବର୍ତ୍ତନ

ଘଟିଥିଲା ସେ ସବୁ ପ୍ରତ୍ୟକ୍ଷ କରି ଜନସାଧାରଣ କୌଣସି ନୂତନ ଉଦ୍ଭାବନ ବିଷୟ ଶୁଣିଲେ ତାହାକୁ ଦେଖି, ତାହାର ବିସ୍ତୃତ କାର୍ଯ୍ୟ ବିଷୟରେ ଜାଣିବାକୁ ଆଗ୍ରହ ପ୍ରକାଶ କରୁଥିଲେ ।

ଆତ୍ମପ୍ରତ୍ୟୟ, ଉତ୍ସାହ ଓ ପରିବର୍ତ୍ତନ ପୂର୍ଣ୍ଣ ଏକ ଯୁଗରେ ଜର୍ଜ ଓ୍ୱେଷ୍ଟିଂହାଉସ ତାଙ୍କର ନବୀନ ଉଦ୍ଭାବନ—ଏୟାରବ୍ରେକର ପ୍ରବର୍ତ୍ତନ କଲେ । ତତ୍କାଳୀନ ଆମେରିକାର ଜନସାଧାରଣଙ୍କ ମନୋଭାବ ସେ ଉତ୍ତମ ରୂପେ ଲକ୍ଷ୍ୟ କରିଥିଲେ । ତେଣୁ ସେ ସ୍ଥିର କଲେ ଯେ ପ୍ରଥମେ ଏହି ଏୟାର ବ୍ରେକର ଉପଯୋଗିତା ଲୋକ ସାଧାରଣଙ୍କୁ ଜଣାଇ ଦେବାକୁ ହେବ । ଏହି ଉଦ୍ଦେଶ୍ୟରେ ସେ ଓ୍ୱେଷ୍ଟିଂହାଉସ ଏୟାରବ୍ରେକ କମ୍ପାନୀର ଡିରେକ୍ଟରମାନଙ୍କୁ କହିଲେ, "ମୋର ଇଚ୍ଛା, ଗୋଟିଏ ପ୍ରଦର୍ଶନୀ ଟ୍ରେନର ଆୟୋଜନ କରି ବଡ଼ ବଡ଼ ସହରରେ ଏହି ବ୍ରେକର କାର୍ଯ୍ୟ-କାରିତା ପ୍ରଦର୍ଶନ କରାଯାଉ ।"

ଜଣେ ଡିରେକ୍ଟର ଆପତ୍ତି କଲେ, "ରେଲକମ୍ପାନୀମାନଙ୍କ ମନରେ ଏୟାରବ୍ରେକ ବିଷୟରେ ବିଶ୍ୱାସ ଜନ୍ମାଇବା ଆମର ଉଦ୍ଦେଶ୍ୟ । ଲୋକ-ସାଧାରଣଙ୍କ ସହିତ ଆମର କି ସମ୍ବନ୍ଧ ? ଆମର ଲକ୍ଷ୍ୟ ହେଉଛି, ରେଲ-କମ୍ପାନୀ ନିକଟରେ ଆମ ବ୍ରେକର କାର୍ଯ୍ୟକାରିତା ପ୍ରମାଣ କରାଇ ସେମାନଙ୍କୁ ଆମର ଯନ୍ତ୍ର ବିକିବା ।"

ଏହାର ଉତ୍ତରରେ ଜର୍ଜ କହିଲେ, "ମୋର ମତ ତାହା ନୁହେଁ । ରେଲକମ୍ପାନୀମାନେ କପରି ଗତାନୁଗତିକ ପନ୍ଥାରେ ପରିଚାଳିତ ସେ ବିଷୟରେ ମୋର ବ୍ୟକ୍ତିଗତ ଅଭିଜ୍ଞତା ଅଛି । ବରଂ ଆମେ ଲୋକ-ସାଧାରଣଙ୍କର; ଯେଉଁମାନେ ରେଲଯାତ୍ରା କରନ୍ତି—ମନ ନେଇ ପାରିଲେ ସେମାନେ ରେଲକମ୍ପାନୀମାନଙ୍କୁ ଏହି ବ୍ରେକ ବ୍ୟବହାର କରିବାପାଇଁ ଆମ୍ଭମାନଙ୍କ ଅପେକ୍ଷା ବେଶି ପ୍ରଭାବିତ କରିପାରିବେ ।"

ଆହୁରି କିଛି ତର୍କ ବିତର୍କ ପରେ ଡିରେକ୍ଟରମାନେ ଜର୍ଜଙ୍କ ପ୍ରସ୍ତାବକୁ ଅନୁମୋଦନ କଲେ । ଜର୍ଜ ସଙ୍ଗେ ସଙ୍ଗେ ଗୋଟିଏ ଟ୍ରେନରେ ଏୟାରବ୍ରେକ ଖଞ୍ଜିବାର ବ୍ୟବସ୍ଥା କଲେ । ଗାଡ଼ିର ଅସବାବଗୁଡ଼ିକ

ସେପରି ଆରାମଦାୟକ ହେବ, ସେଥିପାଇଁ ଆଦେଶ ଦେଲେ । ତାହା ହେଲେ ଯାତ୍ରୀମାନେ ମନେ କରିବେ ଯେ ନୂତନ ବ୍ରେକ କେବଳ ନିରାପଦ ନୁହେଁ; ଏହି ବ୍ରେକସଂଯୁକ୍ତ ଗାଡ଼ିରେ ଯିବାରେ ସୁଖସ୍ୱାଚ୍ଛନ୍ଦ୍ୟ ମଧ୍ୟ ଅଛି ।

ଜର୍ଜ ଏହି ପ୍ରଦର୍ଶନୀ ଟ୍ରେନର ସମସ୍ତ ବନ୍ଦୋବସ୍ତ ଭାର ନିଜେ ଗ୍ରହଣ କରିଥିଲେ । ଗାଡ଼ି ସଜ୍ଜିତ ହେବା ପରେ ସେ ୧୮୬୯ ମସିହାର ଶରତ ଋତୁରେ ଫିଲାଡେଲଫିଆ, ଶିକାଗୋ, ଇଣ୍ଡିଆନୋପଲିସ, ସେଣ୍ଟଲୁଇ, ମିଲଓ୍ୱାକି ପ୍ରଭୃତି ସହର ପରିକ୍ରମା କଲେ । ପ୍ରତି ଷ୍ଟେସନରେ ସାମ୍ବାଦିକ, ନଗରପାଳ, ଗଭର୍ଣ୍ଣର, ରେଲକମ୍ପାନୀର ଉଚ୍ଚ କର୍ମଚାରୀମାନଙ୍କୁ ଗାଡ଼ିରେ ବସାଇ ନିଆ ଯାଉଥିଲା । ଗାଡ଼ି ଚାଲିଲାବେଳେ ଜର୍ଜ ସେମାନଙ୍କୁ ଏୟାରବ୍ରେକର ନିରାପତ୍ତା, ଆର୍ଥିକ ଲାଭ ପ୍ରଭୃତି ବୁଝାଇ କହୁଥିଲେ ଯେ ଏହାଦ୍ୱାରା ପୂର୍ବ ଅପେକ୍ଷା ଅଳ୍ପ ସମୟ ମଧ୍ୟରେ ମାଲପତ୍ର ପଠାଇ ପାରିବ, ରେଲଯାତ୍ରା ଅଧିକ ଆରାମଦାୟକ ହେବ ଏବଂ ଏହାଫଳରେ ଅଧିକ ସଂଖ୍ୟକ ଲୋକ ରେଲର ବ୍ୟବହାର କରିବେ ।

ଜର୍ଜଙ୍କର ଏହି ପରିକଳ୍ପନା ଆଶାତୀତ ସାଫଲ୍ୟ ଅର୍ଜନ କରିଥିଲା । ଯେଉଁ ସହରରେ ଟ୍ରେନ ପହଞ୍ଚୁଥିଲା, ସେଠାରେ ଲୋକେ ଦଳ ଦଳ ହୋଇ ଏହି ନୂତନ ବ୍ରେକ ଦେଖିବାକୁ ରୁଣ୍ଡ ହେଉଥିଲେ । ସାମ୍ବାଦିକ-ମାନେ ସମ୍ବାଦପତ୍ରରେ ଏହି ବ୍ରେକ ସମ୍ବନ୍ଧରେ ଦୀର୍ଘ ପ୍ରବନ୍ଧମାନ ଲେଖିଲେ, ସମ୍ପାଦକମାନେ ଏହି ଅଦ୍ଭୁତ ଉଦ୍ଭାବନ ଏବଂ ଏହାର ଉଦ୍ଭାବକଙ୍କର ପ୍ରଶଂସାଗାନ କରି ସମ୍ପାଦକୀୟ ସ୍ତମ୍ଭମାନ ପୂର୍ଣ୍ଣକରି-ଦେଲେ । ସମ୍ବାଦପତ୍ରମାନଙ୍କର ପ୍ରଥମ ପୃଷ୍ଠାରେ ଜର୍ଜଙ୍କର ଛବି ବାହାରିଲା । କେତେକ ଶ୍ରେଷ୍ଠ ସହରରେ ଲୋକେ ବ୍ୟାଣ୍ଡ ବାଦ୍ୟ ବଜାଇ ଏହି ପ୍ରଦର୍ଶନୀ ଟ୍ରେନକୁ ଅଭ୍ୟର୍ଥନା ଜଣାଇଲେ । ଲୋକେ ବୁଝିପାରିଲେ ଯେ ଏହି ଉଦ୍ଭାବନ ଫଳରେ ବ୍ୟବସାୟ ବାଣିଜ୍ୟର ପ୍ରସାର ସଙ୍ଗେ ଜୀବନର ସକଳ କ୍ଷେତ୍ରରେ ଉନ୍ନତି ସାଧିତ ହୋଇ ପାରିବ ।

ଅନ୍ୟାନ୍ୟ ସହରରୁ ଜନସାଧାରଣ ଅନୁରୋଧ କଲେ ଯେ ସେମାନେ ଯେପରି ପ୍ରଦର୍ଶନୀ ଟ୍ରେନ ଦେଖିବା ସୁଯୋଗରୁ ବଞ୍ଚିତ ନହୁଅନ୍ତି । ଜର୍ଜ ଅତି ଆନନ୍ଦରେ ଅନ୍ୟାନ୍ୟ ସହରକୁ ଟ୍ରେନ ନେଇଗଲେ । ପ୍ରଥମେ ପ୍ରସ୍ତାବ

ଥିଲି ଯେ କେବଳ କେତୋଟି ପ୍ରଧାନ ସହରକୁ ପ୍ରଦର୍ଶନୀ ଟ୍ରେନ ଯାଆ-ଯିବ; କିନ୍ତୁ କାର୍ଯ୍ୟତଃ ଟ୍ରେନଟି ସମଗ୍ର ପୂର୍ବ ଓ ମଧ୍ୟପଶ୍ଚିମାଞ୍ଚଳ ପରିଭ୍ରମଣ କରିଥିଲି ।

ଅଳ୍ପକାଳ ମଧ୍ୟରେ ସମଗ୍ର ଦେଶର ନାନା ରେଲକମ୍ପାନୀରୁ ଏୟାର-ବ୍ରେକ ପାଇଁ ଅର୍ଡ଼ର ପହଞ୍ଚିଲି । ଏତେ ପରିମାଣର ଏୟାରବ୍ରେକ ପାଇଁ ଅର୍ଡ଼ର ମିଳିଲି ଯେ ପିଟ୍ସବର୍ଗର କମ୍ପାନୀ ସେତେ ତିଆରି କରି ଦେଇ ପାରିଲେ ନାହିଁ । କମ୍ପାନୀର କାରଖାନା ବଢ଼ାଇବାକୁ ହେଲି । ତଥାପି ମାଲ ସରବରାହରେ ବିଳମ୍ବ ନିମିତ୍ତ କ୍ଷମା ପ୍ରାର୍ଥନା କରି ରେଲକମ୍ପାନୀମାନଙ୍କୁ ପତ୍ର ଦେବାକୁ ପଡ଼ୁଥିଲି । ଏହା ଛଡ଼ା ଅନେକ କମ୍ପାନୀ ଗୋଟିଏ ଯନ୍ତ୍ର ମଗାଇ ଦୈନନ୍ଦିନ ବ୍ୟବହାରରେ ଏହି ବ୍ରେକର ଉପଯୋଗିତା ପରୀକ୍ଷା କରି ଅଳ୍ପଦିନ ପରେ ବହୁସଂଖ୍ୟକ ଯନ୍ତ୍ର ପାଇଁ ଅର୍ଡ଼ର ପଠାଉଥିଲେ । ଏହା ଫଳରେ ଉତ୍ପାଦନ ତୁଳନାରେ ଚାହିଦା ଯଥେଷ୍ଟ ବୃଦ୍ଧି ପାଉଥିଲି ।

ଅଧିକାଂଶ ରେଲକମ୍ପାନୀ ଏହି ବ୍ରେକ ପ୍ରତି ଆଗ୍ରହ ପ୍ରକାଶ କରି-ଥିଲେ ବୋଲି ଯେ ଜର୍ଜ ଅଳ୍ପେଶରେ ସାଫଲ୍ୟ ଅର୍ଜନ କରି ପାରିଥିଲେ, ଏପରି ମନେ କରିବା ଭୁଲ ହେବ । ପ୍ରଥମେ ପ୍ରଥମେ ଗ୍ରେଟ ରେଲ କମ୍ପାନୀମାନେ ଏୟାରବ୍ରେକ ପ୍ରବର୍ତ୍ତନ କରିବାରେ ବିଶେଷ ଆଗ୍ରହୀ ହୋଇଥିଲେ । ବଡ଼ ବଡ଼ କମ୍ପାନୀ ସଙ୍ଗେ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ହେଲେ ଜର୍ଜଙ୍କ ଉଦ୍ଭାବିତ ଏୟାରବ୍ରେକର ପ୍ରଚଳନ କରିବା ଆବଶ୍ୟକ ବୋଲି ସେମାନେ ବୁଝିପାରିଥିଲେ । ଏହି ବ୍ରେକ ଯୋଗୁ ସେମାନଙ୍କର ଟ୍ରେନ ଅଧିକ ନିରାପଦ ହେଲି ଏବଂ ସେମାନେ ଦ୍ରୁତଗତିରେ ଟ୍ରେନ ଚଳାଇ ପାରିଲେ । ତେଣୁ ପ୍ରତିଯୋଗିତାରେ ସେମାନେ ସୁବିଧା ପାଇଲେ । ମାତ୍ର ବଡ଼ ବଡ଼ ରେଲକମ୍ପାନୀମାନେ ପୂର୍ବପ୍ରଚଳିତ ବ୍ରେକ ଲଗାଇବାରେ ବହୁତ ଅର୍ଥ ବ୍ୟୟ କରିଥିଲେ । ତେଣୁ ଏୟାରବ୍ରେକ ତୁଳନାରେ ପୂର୍ବପ୍ରଚଳିତ ବ୍ରେକ ଗୁଡ଼ିକର ଅକ୍ଷମତା ସ୍ପଷ୍ଟ ପ୍ରମାଣିତ ହୋଇଥିଲେହେଁ ସେମାନେ ପୁରୁଣା ବ୍ରେକଗୁଡ଼ିକୁ ବାହାର କରି ଏୟାର ବ୍ରେକ ଖଞ୍ଜିବାକୁ ପ୍ରସ୍ତୁତ ନ ଥିଲେ ।

ଏତଦ୍‌ବ୍ୟତୀତ ପୁରୁଣା ହାତବ୍ରେକର ନିର୍ମାତାମାନେ ଏତେ ସହଜରେ ଏହି ତେଇଶିବର୍ଷର ଯୁବକ ପାଖରେ ମୁଣ୍ଡ ନୁଆଇଁ ବ୍ୟବସାୟ ବନ୍ଦ କରିଦେବାକୁ ଆଦୌ ପ୍ରସ୍ତୁତ ନଥିଲେ । ସେମାନେ ବଡ଼ବଡ଼ ରେଲ କମ୍ପାନି ସଙ୍ଗେ ଷଡ଼ଯନ୍ତ୍ର କରି ଜର୍ଜଙ୍କ ଏୟାରବ୍ରେକର ନିନ୍ଦା ରଟନା କରିବାକୁ ଲାଗିଲେ । ଏୟାରବ୍ରେକ ଆଦୌ ନିର୍ଭରଯୋଗ୍ୟ ନୁହେଁ, ଜର୍ଜ ଜଣେ ପ୍ରତାରକ—ଏହି ମର୍ମରେ ସେମାନେ ବିଜ୍ଞାପନ ପ୍ରଚାର କଲେ ଓ କୌଶଳରେ ଜନରବ ସୃଷ୍ଟି କଲେ । ଏହି ବିରୋଧୀମାନଙ୍କ ମଧ୍ୟରେ କମୋଡ଼ୋର ଭେଣ୍ଡାରବିଲ୍‌ଟ ମୁଖ୍ୟ ଥିଲେ । ବାୟୁଦ୍ୱାରା ଟ୍ରେନରେ ବ୍ରେକ ଦିଆଯାଇ ପାରୁଛି—ଏହା ସ୍ୱୀକାର କରିବାକୁ ସେ ଏକାନ୍ତ ଅନିଚ୍ଛୁକ ଥିଲେ ।

ଏତେ ପ୍ରଚେଷ୍ଟା ସତ୍ତ୍ୱେ ଜନମତ ଦିନକୁ ଦିନ ଜର୍ଜଙ୍କୁ ସମର୍ଥନ କଲା । ଏୟାରବ୍ରେକ ଲାଗିଥିବା ଟ୍ରେନରେ ଯେଉଁ ଯାତ୍ରୀମାନେ ଯାଉଥିଲେ ସେମାନେ ଏହି ବ୍ରେକର ଉପଯୋଗିତା ସ୍ୱତଃ ଅନୁଭବ କରୁଥିଲେ । କ୍ରମେ ବଡ଼ ବଡ଼ ରେଲକମ୍ପାନିମାନେ ଓ୍ୱେଷ୍ଟିଂହାଉସ କମ୍ପାନିର ଏୟାର-ବ୍ରେକ ବ୍ୟବହାର କରନ୍ତୁ ବୋଲି ଜନମତ ପ୍ରବଳ ହେଲା । କେବଳ କମୋଡୋରଙ୍କ ନ୍ୟୁୟର୍କ ସେଣ୍ଟ୍ରାଲ କମ୍ପାନି ଭଳି ଅଳ୍ପ କେତୋଟି ରେଲକମ୍ପାନି ନିଜ ନିଜ ଟ୍ରେନରେ ଏୟାରବ୍ରେକ ଲଗାଇଲେ ନାହିଁ ।

୧୮୭୧ ମସିହାର ଶୀତଋତୁରେ ଦିନେ ରାତିରେ ଖୁବ ଶୀତ ହେଉଥାଏ । ଏହି ସମୟରେ ନ୍ୟୁୟର୍କ ସେଣ୍ଟ୍ରାଲ୍ କମ୍ପାନିର ପାସିଫିକ ଏକ୍‌ସପ୍ରେସ ନାମକ ଗୋଟିଏ ଦ୍ରୁତଗାମୀ ଟ୍ରେନ ନ୍ୟୁୟର୍କଠାରୁ ଶିକାଗୋ ଯାଉଥିଲା । ଏହି ଗାଡ଼ିଟି ଭେଣ୍ଡାରବିଲ୍‌ଟଙ୍କର ବିଶେଷ ଗର୍ବର ବିଷୟ ଥିଲା । ସେ କହୁଥିଲେ ଯେ ପାସିଫିକ ଏକ୍‌ସପ୍ରେସ ହେଉଛି ଆମେରିକାର ସବୁଠାରୁ ଶ୍ରେଷ୍ଠ ଟ୍ରେନ । ନ୍ୟୁୟର୍କଠାରୁ ଶିକାଗୋ ମଧ୍ୟରେ ଯିବା ଆସିବା କରିବାବେଳେ ଏହି ଟ୍ରେନ ବ୍ୟବହାର କରିବାକୁ ସେ ନିଜର ବନ୍ଧୁ-ବାନ୍ଧବ ମାନଙ୍କୁ ପରାମର୍ଶ ଦେଉଥିଲେ ।

ସେତେବେଳକୁ ରାତି ଦଶଟା ବାଜି ନ ଥାଏ । ଟ୍ରେନଟି ଓ୍ୱେପିଙ୍ଗ ନଦୀର ସେତୁ ନିକଟରେ ପହଞ୍ଚିଗଲା । ସେ ସ୍ଥାନଟି ପାଓକିପସିଠାରୁ

ସାତ ମାଇଲ ଦୂର । ଏହାର କେତେକ ମିନିଟ ଆଗରୁ ଗୋଟିଏ ଦକ୍ଷିଣ-ଗାମୀ ଟ୍ରେନ ସେତୁ ଉପରେ ଲାଇନଚ୍ୟୁତ ହୋଇ ଯାଇଥିଲା । ଏହି ଟ୍ରେନରେ ପଚାଶଟି ଡବା ଲାଗିଥିଲା ଓ ସେଥିରେ ତେଲ ଯାଉଥିଲା । ଗୋଟିଏ ଡବାର ଅକ୍ଷଦଣ୍ଡ ଭାଙ୍ଗିଯିବାରୁ ଏହି ଦୁର୍ଘଟଣା ଘଟିଥିଲା । ଡବାଗୁଡ଼ିକ ଲାଇନ ଉପରେ ସ୍ତୂପାକାରରେ ପଡ଼ି ରହିଥିଲା ।

ପାସିଫିକ ଏକ୍ସପ୍ରେସ ଟ୍ରେନ ଗୋଟାଏ ବାଙ୍କ ବୁଲିଯିବା ପରେ ସେତୁଟି ଦେଖାଗଲା । ଇଞ୍ଜିନଚାଳକ ସେତୁ ଉପରେ ଲାଇନଚ୍ୟୁତ ମାଲଗାଡ଼ି ଦେଖିପାରି ଭୟରେ ସ୍ତମ୍ଭୀଭୂତ ହୋଇଗଲା । ବ୍ରେକ ଦେବାପାଇଁ ସେ ପ୍ରାଣପଣେ ସଙ୍କେତ କଲା, କିନ୍ତୁ ବ୍ରେକ ଧରିବା ପୂର୍ବରୁ ଟ୍ରେନ ଖର-ବେଗରେ ଯାଇ ଲାଇନଚ୍ୟୁତ ଗାଡ଼ିରେ ଧକ୍କା ଦେଲା ।

ଇଞ୍ଜିନଟି କେତେକ ଡବା ସହିତ ଓ୍ୱାୟୁପିଙ୍ଗ ନଦୀଗର୍ଭରେ ପଡ଼ିଗଲା । ସେତେବେଳକୁ ନଦୀ ଜଳ ବରଫପରି ଶୀତଳ ହୋଇଥାଏ । ଶୋଇବାର ବ୍ୟବସ୍ଥା ଥିବା ପାଞ୍ଚଟି ଡବା କୋଚ ସେତୁ ଉପରେ ରହିଥିଲା । ମାତ୍ର କେତେକ ସେକେଣ୍ଡ ମଧ୍ୟରେ ସେଥିରେ ନିଆଁ ଲାଗି ତାହା ଭସ୍ମସାତ୍ ହୋଇଗଲା । କିଛିକ୍ଷଣ ପରେ ସମଗ୍ର ସେତୁଟି ଧ୍ୱଂସ ହୋଇ ନଦୀର ଅନ୍ଧକାରମୟ ଗର୍ଭରେ ପଡ଼ିଗଲା ।

ଏହି ଦୁର୍ଘଟନାରେ ତିରିଶଜଣ ମୃତ୍ୟୁ ମୁଖରେ ପଡ଼ିଥିଲେ । ଆହୁରି ଅନେକ ଲୋକ ଆହତ ହୋଇଥିଲେ । ରେଲପଥର ଇତିହାସରେ ଏଥିପୂର୍ବରୁ ଏଭଳି ଦୁର୍ଘଟଣା କେବେ ଘଟି ନ ଥିଲା । ଏହା ପରେ ରେଲ ପଥରେ ନିରାପତ୍ତା ବିଷୟରେ ଜନମତ ଏପରି ପ୍ରବଳ ହେଲା ଯେ କମୋଡ଼ୋର ତାହା ଉପେକ୍ଷା କରିପାରିଲେ ନାହିଁ । ପାସିଫିକ ଏକ୍ସପ୍ରେସର ଦୁର୍ଘଟଣା ପରେ ତାଙ୍କ ପକ୍ଷରେ ଏୟାରବ୍ରେକର ବିରୋଧ କରିବାପାଇଁ ଉପାୟ ରହିଲା ନାହିଁ । ନ୍ୟୁୟର୍କ ସେଣ୍ଟ୍ରାଲ କମ୍ପାନୀ ଏୟାର-ବ୍ରେକ ଯୋଗାଇବା ନିମନ୍ତେ ଓ୍ୱେଷ୍ଟିଙ୍ଗହାଉସ କମ୍ପାନୀକୁ ଅର୍ଡ଼ର ଦେଲେ । ଅଳ୍ପ କେତେ ବର୍ଷ ମଧ୍ୟରେ ଏହି ରେଲ କମ୍ପାନୀର ସମସ୍ତ ଯାତ୍ରୀଗାଡ଼ିରେ ଏୟାରବ୍ରେକ ଖଞ୍ଜା ହୋଇଗଲା ।

ଓଯେଷ୍ଟିଙ୍ଗହାଉସଙ୍କ ଏୟାରବ୍ରେକ ଅତ୍ୟନ୍ତ ସାଧାରଣ ଭାବରେ ପ୍ରଚଳିତ ହେବା ଫଳରେ ମାଲପରିବହନ କ୍ଷେତ୍ରରେ ଏକ ବିରାଟ ପରିବର୍ତ୍ତନ ଦେଖାଗଲା । ସବୁପକ୍ଷ ହିଁ ଏୟାରବ୍ରେକ ସର୍ବଶ୍ରେଷ୍ଠ ଉଦ୍ଭାବନ ବୋଲି ସମସ୍ତେ ସ୍ୱୀକାର କଲେ । ଗୃହଯୁଦ୍ଧ ଶେଷ ହେବା ପରେ ଦେଶରେ ରେଲପଥର ପ୍ରସାର ଦ୍ରୁତଗତିରେ ଚାଲିଥିଲା । ଏବେ ସେହି ପ୍ରସାର ଆହୁରି ଦ୍ରୁତତର ହେଲା । ସୁପରିଣ୍ଟେଣ୍ଡେଣ୍ଟ ମିଷ୍ଟର ଟାଉନ କହିଥିଲେ ଯେ ଉତ୍ତମ ବ୍ରେକ ହେଲେ ରେଲପଥର ପ୍ରସାର ହେବ । ଏବେ ତାଙ୍କର ସେହି ଭବିଷ୍ୟତବାଣୀ ସଫଳ ହେଲା । ଦୁର୍ଘଟଣାର ସଂଖ୍ୟା କମିଗଲା, ଯାତ୍ରୀସଂଖ୍ୟା ବଢ଼ିଲା, ଟ୍ରେନ ଚଳାଚଳରେ ଆଉ ପୂର୍ବପରି ବିଳମ୍ବ ଘଟିଲା ନାହିଁ । ସମଗ୍ର ଦେଶର ବକ୍ଷରେ ଇସ୍ପାତର ଧମନୀ ସଦୃଶ ରେଲପଥ ବିସ୍ତୃତ ହୋଇଗଲା । ସହରଗୁଡ଼ିକ ରେଲପଥଦ୍ୱାରା ପରସ୍ପର ସହିତ ସଂଯୁକ୍ତ ହେଲେ ।

ବ୍ୟବସାୟର ସାଫଲ୍ୟ ଦେଖି ରାଲ୍‌ଫ ବ୍ୟାଗଲେ, ସୁପରିଣ୍ଟେଣ୍ଡେଣ୍ଟ କାର୍ଡ଼ ଓ ଅନ୍ୟ ସହକର୍ମୀମାନେ ଅତ୍ୟନ୍ତ ଆନନ୍ଦିତ ହେଲେ । ରାଲ୍‌ଫ କହିଲେ, "ଜର୍ଜ, ଯଦି ଏହିପରି ଚାହିଦା ଚାଲୁ ରହେ, ତେବେ ଆମକୁ କାରଖାନାର ସଂପ୍ରସାରଣ କରିବାକୁ ପଡ଼ିବ । ହାତରେ ଯେତିକି ଅର୍ଡ଼ର ଅଛି, ଉତ୍ପାଦନ କରିବାକୁ ଆମକୁ ମାସେ କାଳ ଲାଗିଯିବ ।"

କମ୍ପାନୀର ପ୍ରେସିଡେଣ୍ଟ ଭାବରେ ଜର୍ଜଙ୍କୁ ଯଥେଷ୍ଟ ପରିଚାଳନାଗତ କାର୍ଯ୍ୟ କରିବାକୁ ପଡ଼ୁଥିଲା । ବ୍ରେକ ତିଆରି କାରଖାନାରେ ସେ ନିଜ ପାଇଁ ଗୋଟିଏ ଶ୍ରେଷ୍ଠ ବଖରା ଯୋଗାଡ଼ କରି ନେଇଥିଲେ । ଟିକିଏ ଅବସର ମିଳିଲେ, ସେ ଏଠାକୁ ଆସି କିଛି ନା କିଛି କାମ କରୁଥିଲେ । ଦିନର କାମ ଶେଷ ହେଲେ ସମସ୍ତେ ଘରକୁ ଚାଲି ଯାଉଥିଲେ କିନ୍ତୁ ଜର୍ଜ ଗୋଟିଏ ମଇଳା କୁର୍ତ୍ତା ପିନ୍ଧି କାମରେ ଲାଗି ଯାଉଥିଲେ । ବ୍ରେକଟି ସମ୍ପୂର୍ଣ୍ଣ ନିଖୁଣ ନ ହେଲେ ତାଙ୍କ ମନରେ ଶାନ୍ତି ଆସୁନଥିଲା । ସେ ଏଥିର ଉନ୍ନତି କରିବାକୁ ସତତ ଚେଷ୍ଟିତ ଥିଲେ । ସେ ଭଲ୍‌ଭ, ଯୋଡ଼ାରମୁହଁ, ଏୟାର ପମ୍ପ ଓ ଅନ୍ୟାନ୍ୟ ଅଂଶର ବାରମ୍ବାର ପରିବର୍ତ୍ତନ କରୁଥିବାର ଦେଖି ରାଲ୍‌ଫ ଥଟ୍ଟା କରି କହୁଥିଲେ, "ମିସ୍ତ୍ରୀମାନେ ପ୍ରତ୍ୟହ ସକାଳେ କାମ କରିବାକୁ ଆସି ସେଦିନ କ'ଣ ପରିବର୍ତ୍ତନ ହେବ ବୋଲି ବାଜି ମାରୁଛନ୍ତି ।"

ଜର୍ଜ କେବଳ ପରିବର୍ତ୍ତନ ଉଦ୍ଦେଶ୍ୟରେ ପରିବର୍ତ୍ତନର ଆଦୌ ପକ୍ଷପାତୀ ନ ଥିଲେ । ବରଂ ଯନ୍ତ୍ରରେ ଯେପରି ଲବ ମାତ୍ର ତ୍ରୁଟି ନ ରହେ, ତାହାହିଁ ତାଙ୍କର ଲକ୍ଷ୍ୟ ଥିଲା । ସେ ବୁଝିଥିଲେ ଯେ ଏୟାରବ୍ରେକ ସର୍ବାପେକ୍ଷା ନିରାପଦ ଓ କାର୍ଯ୍ୟକ୍ଷମ; ତଥାପି ଯେ କୌଣସି ଯନ୍ତ୍ର, ଯେତେ ଯତ୍ନ ସହକାରେ ନିର୍ମିତ ହୋଇଥିଲେ ମଧ୍ୟ ବ୍ୟବହାର ଦ୍ୱାରା କ୍ଷୟ ପାଇ ଭାଙ୍ଗି ଯାଇପାରେ । ଅପବ୍ୟବହାର ବା ଚାଳକର ଭ୍ରମ ହେତୁ ନଷ୍ଟ ହୋଇ ଯାଇପାରେ ।

ଏହି ଉଦ୍ଭାବନର ଫଳାଫଳ ବିଷୟରେ ଅନ୍ୟମାନଙ୍କ ଅପେକ୍ଷା ତାଙ୍କର ଦାୟିତ୍ୱ ଅଧିକ ବୋଲି ସେ ମନେ କରୁଥିଲେ । ଏୟାରବ୍ରେକର ପ୍ରଚଳନ ପୂର୍ବରେ ଟ୍ରେନଗୁଡ଼ିକ ମନ୍ଥର ଗତିରେ ଯିବାକୁ ବାଧ୍ୟ ହେଉଥିଲା, କାରଣ ଦୁର୍ଘଟଣାର ଆଶଙ୍କା ଦେଖିଲେ ସଙ୍ଗେ ସଙ୍ଗେ ଟ୍ରେନ ବନ୍ଦ କରିବାର ଉପାୟ ନଥିଲା । କିନ୍ତୁ ବର୍ତ୍ତମାନ ଚାଳକ ଜାଣିଲା ଯେ ଶକ୍ତିଶାଳୀ ବ୍ରେକ ତାର ଅଧୀନ, ଦରକାର ପଡ଼ିଲେ ସେ ମୁହୂର୍ତ୍ତକ ମଧ୍ୟରେ ଟ୍ରେନ ବନ୍ଦ କରିପାରିବ ।

ଜର୍ଜ ବାରମ୍ବାର ଚିନ୍ତା କରୁଥିଲେ-ଟ୍ରେନ ଦ୍ରୁତଗତିରେ ଯାଉଥିବା ବେଳେ ଯଦି ଏୟାରବ୍ରେକ ନ ଧରେ, ତେବେ କଅଣ ହେବ ? ଏଥିରେ ଯେଉଁ ସାଙ୍ଘାତିକ ଦୁର୍ଘଟଣା ଘଟିବ ତାହା ତୁଳନାରେ ପାସିଫିକ ଏକ୍ସପ୍ରେସର ଦୁର୍ଘଟଣା ନଗଣ୍ୟ । ଇଞ୍ଜିନ ଚାଳକର ଏହି ନୂତନ ବ୍ରେକ ଉପରେ ପ୍ରଗାଢ଼ ବିଶ୍ୱାସ ରହିବା ଉଚିତ । ଏହି ବିଶ୍ୱାସର ମର୍ଯ୍ୟାଦା ରକ୍ଷିବାକୁ ହେଲେ ତାଙ୍କର ପ୍ରତ୍ୟେକ ବ୍ରେକ ତ୍ରୁଟିଶୂନ୍ୟ ହେବା ଦରକାର, ଯେପରି କି ଯେ କୌଣସି ଅବସ୍ଥାରେ ଏହା ଅଚଳ ନ ହୁଏ । କିନ୍ତୁ କାର୍ଯ୍ୟତଃ ଏପରି ତ୍ରୁଟିଶୂନ୍ୟ ବ୍ରେକ ତିଆରି କରିବା ଅସମ୍ଭବ । କାରଣ ମନୁଷ୍ୟ ଏହାକୁ ତିଆରି କରୁଛି । ମନୁଷ୍ୟ କେତେବେଳେ ନା କେତେ-ବେଳେ ଭ୍ରମ କରିଥାଏ । ଯୁକ୍ତି ଇସ୍ପାତରେ ବ୍ରେକ ତିଆରି ହେଉଅଛି । ଜୋର ପଡ଼ିଲେ ଇସ୍ପାତ ମଧ୍ୟ ବଙ୍କେଇ ଯାଇପାରେ, ଭାଙ୍ଗି ଯାଇପାରେ ।

ତେଣୁ ଯାନ୍ତ୍ରିକ ଅଚଳତାର ଆଶଙ୍କା ଦୂର କରିବା ପାଇଁ ଜର୍ଜ ବାରମ୍ବାର ବ୍ରେକରେ ସାମାନ୍ୟ ସାମାନ୍ୟ ପରିବର୍ତ୍ତନ କରୁଥିଲେ । ସେ

କେତେବେଳେ ଭଲ୍‌ଭର ଆକାରକୁ ବଦଳାଉଥିଲେ, କେତେବେଳେ ନୂତନ ଅଂଶ ଯୋଗ କରୁଥିଲେ, କେତେବେଳେ ଆହୁରି ଭଲ ଇସ୍ପାତ ବ୍ୟବହାର କରୁଥିଲେ, ଯେପରି କି ଯାନ୍ତ୍ରିକ ଗୋଳମାଳର ଆଶଙ୍କା ଏକବାରେ କମିଯିବ । ନାନା ପରିବର୍ତ୍ତନ କରି ମଧ୍ୟ ତାଙ୍କର ମନରେ ସନ୍ତୋଷ ଆସିଲା ନାହିଁ ।

ଜଣେ ନିରପେକ୍ଷ ସମାଲୋଚକ ଭାବରେ ସେ ସମସ୍ତ ବିଷୟ ବିଶ୍ଳେଷଣ କରି ସମସ୍ୟାଟିକୁ ଏକ ନୂତନ ଦିଗରୁ ସମାଧାନ କରିବାର ଚେଷ୍ଟା କଲେ । ଯାନ୍ତ୍ରିକ ଅଚଳତା ଘଟିଲେ ଯେପରି ବ୍ରେକଗୁଡ଼ିକ ଆପେ ଆପେ ଚକକୁ ଧରିବ, ସେପରି ବ୍ୟବସ୍ଥା କରାଯାଇ ପାରିବ ନାହିଁ କାହିଁକି ? ସେ ଏହି ସମସ୍ୟାର ବିଷୟ ଚିନ୍ତା କଲାବେଳେ ଅନ୍ୟ କାହାରି ସହିତ କିଛି ପରାମର୍ଶ କରି ନଥିଲେ; କାରଣ ଏ ସମସ୍ୟା ଏକ ଅଦ୍ଭୁତ ଧରଣର । ଏପରି ବ୍ରେକ ତିଆରି ହେବ ଯେ ତାହାକୁ କାର୍ଯ୍ୟରେ ନଲଗାଇଲା ବେଳେ ମଧ୍ୟ ସେ ବଳେ ବଳେ କାର୍ଯ୍ୟ କରିବ । ଏପରି ସମସ୍ୟା ସେ କାହାକୁ କିପରି ବୁଝାଇବେ ! ଏପରି ବିଚିତ୍ର କଥା ଯେ ଶୁଣିବ ସେ ଏହାକୁ ପାଗଳର ପ୍ରଳାପ ବୋଲି ମନେ କରିବ । କିନ୍ତୁ ଇତିହାସର ପୃଷ୍ଠାରୁ ଦେଖାଯାଏ ଯେ ପ୍ରଥମେ ଯେଉଁ ଧାରଣା ଅସମ୍ଭବ ବୋଲି ବୋଧ ହୋଇଥାଏ ସେଇଥିରୁ ଅନେକ ବଡ଼ ବଡ଼ ଆବିଷ୍କାର ସମ୍ଭବ ହୋଇପାରିଅଛି ।

ଦିନେ ଅପରାହ୍ନବେଳା ଗୋଟିଏ ଏୟାରବ୍ରେକର ମଡେଲ ଧରି ଏପାଖ ସେପାଖ କଲାବେଳେ ତାଙ୍କ ମନରେ ଗୋଟାଏ ବିଚିତ୍ର କଳ୍ପନା ଉଦିତ ହେଲା । ବ୍ରେକ-ଶୁକୁ ଚକରେ ଲଗାଇବା ପାଇଁ ବାୟୁର ଚାପ ପ୍ରୟୋଗ କରାଯାଉଅଛି । ତାହା ନ ହୋଇ ଯଦି ବ୍ରେକ-ଶୁକୁ ଚକରୁ ଖୋଲିବାପାଇଁ ବାୟୁ ଚାପ ପ୍ରୟୋଗ କରାଯାଏ, ତେବେ କଅଣ ହେବ ? ସେମାନେ ଯେଉଁ ଏୟାରବ୍ରେକ ତିଆରି କରୁଥିଲେ ସେଥିରେ ବାୟୁଚାପ ବୃଦ୍ଧି କଲେ ବ୍ରେକଶୁଗୁଡ଼ିକ ଚକ ଦେହରେ ଲାଗି ଟ୍ରେନକୁ ବନ୍ଦ କରୁଥିଲେ ଓ ଚାପ କମାଇ ଦେଲେ ବ୍ରେକ-ଶୁଗୁଡ଼ିକ ଚକ ଦେହରୁ ଅଲଗା ହୋଇ ଯାଉଥିବାରୁ ଗାଡ଼ି ଚାଲୁଥିଲା ।

ଜର୍ଜ ସ୍ତମ୍ଭୀଭୂତ ହୋଇ ମଡେଲଟିକୁ ଚାହିଁ ରହିଲେ । ଏହା ଏଡ଼େ ସହଜ ଓ ସୁନ୍ଦର ଯେ ସେ ବିସ୍ମିତ ହୋଇଗଲେ । ସେ ବିଷୟଟିକୁ

ଆମୂଳଚୂଳ ବିଶ୍ଳେଷଣ କରି କିଛି ଭୁଲ ଅଛି କି ନା ପରୀକ୍ଷା କଲେ । ପ୍ରଚଳିତ ପଦ୍ଧତିରେ ଗୋଟାଏ ପ୍ରଧାନ ବିପଦ ଥିଲା । ଯଦି ଏସ୍ପାର ବ୍ରେକର କୌଣସି ଅଂଶ ଟିକିଏ ଫାଟିଯାଏ, ବା ସେଥିରେ ଛିଦ୍ର ହୋଇଯାଏ ତାହାହେଲେ ବିପଦ । ଇସ୍ପାତ ପାଇପ ଯଦି ଫାଟିଯାଏ, କିମ୍ବା କଣା ହୋଇଯାଏ ଅଥବା ଯୋଡ଼ମୁହଁର ରବର ଚିରିଯାଏ କିମ୍ବା କଣା ହୋଇଯାଏ, ତେବେ ସଞ୍ଚାପିତ ବାୟୁ ବାହାରି ଚାଲିଯିବ ଏବଂ ଇଞ୍ଜିନଚାଳକ ବ୍ରେକ ଦେଲାବେଳକୁ ବାୟୁଚାପ ନ ଥିବ । ସେତେବେଳେ ଇଞ୍ଜିନଚାଳକ ଏକାବେଳକେ ନିରୁପାୟ ହୋଇଯିବ ।

ସମଗ୍ର ବ୍ୟବସ୍ଥାଟିକୁ ଓଲଟାଇ ଦିଆଯାଇ ବ୍ରେକ-ଶୁଗୁଡ଼ିକୁ ଚକଠାରୁ ଅଲଗା ରଖିବା ଉଦ୍ଦେଶ୍ୟରେ ସଞ୍ଚାପିତ ବାୟୁ ବ୍ୟବହାର କରାଗଲେ ଏ ଆଶଙ୍କା ଏକାବେଳକେ ଦୂରୀଭୂତ ହୋଇପାରିବ । ଟ୍ରେନ ବନ୍ଦ କରିବାକୁ ହେଲେ ଇଞ୍ଜିନଚାଳକ କେବଳ ଯନ୍ତ୍ରର ବାୟୁଚାପ କମାଇ ଦେଲେ ହେଲା । ଯଦି ପାଇପ ବା ଯୋଡ଼ାମୁହଁ ଫାଟି ଯାଏ ବା ସେଥିରେ ଛିଦ୍ର ହୋଇଯାଏ ତେବେ ଏହାର ପରିଣାମ ଯାହା ହେବ, ଇଞ୍ଜିନଚାଳକ ଚାପ କମାଇ ଦେଇଥିଲେ ଠିକ୍ ତାହାହିଁ ହୋଇଥାନ୍ତା, ଅର୍ଥାତ୍ ବ୍ରେକ-ଶୁଗୁଡ଼ିକ ଆପେ ଆପେ ଚକ ଦେହରେ ଲାଗିଯିବ ଓ ଟ୍ରେନ ତତ୍‌କ୍ଷଣାତ୍ ବନ୍ଦ ହୋଇଯିବ । ଏଥିରେ କୌଣସି ବିପଦ ଘଟିବାର ସମ୍ଭାବନା ନାହିଁ । ଆଉରି ଗୋଟିଏ ସୁବିଧା ମଧ୍ୟ ହେବ । ଚଳନ୍ତା ଟ୍ରେନର କୌଣସି ଡବା ଲାଇନରୁ ବିଚ୍ୟୁତ ହୋଇଗଲେ ତାହାହିଁ ଘଟିବ—ସେହି ଡବାର ବ୍ରେକ ଆପେ ଆପେ ଚକରେ ଲାଗିଯିବ ।

ଏହି ଉପାୟଟି ସ୍ଥିର ହେବାପରେ ଯନ୍ତ୍ରର ସରଞ୍ଜାମ ତିଆରି କରିବା କଷ୍ଟକର ବ୍ୟାପାର ନ ଥିଲା । ଏକ ସପ୍ତାହ ପରୀକ୍ଷା କରିବା ପରେ ଜର୍ଜ ଦେଖିଲେ ଯେ ସବୁଠାରୁ ସହଜ ଉପାୟ ହେବ, ପ୍ରତ୍ୟେକ ଗାଡ଼ିର ତଳେ ଗୋଟିଏ ଲେଖାଏଁ ସଞ୍ଚାପିତ ବାୟୁର ଆଧାର ରଖିବା । ଏଗୁଡ଼ିକ ସହିତ ଇଞ୍ଜିନରେ ଥିବା ପ୍ରଧାନ ଆଧାର ପମ୍ପର ସଂଯୋଗ ହେବ । ପ୍ରତ୍ୟେକ ଗାଡିର ତଳେ ଥିବା କ୍ଷୁଦ୍ର ଆଧାର ପ୍ରକୃତରେ ବ୍ରେକ-ଶୁକୁ ଚକରେ ଲଗାଇବା କାର୍ଯ୍ୟ କରିବ । ଏହି ନୂତନ ବ୍ୟବସ୍ଥା ପାଇଁ ସେ ଏକ ପ୍ରକାର ନୂତନ ଭାଲ୍‌ଭର କଳ୍ପନା କଲେ । ଇଞ୍ଜିନଚାଳକ

ପ୍ରଧାନ ଆଧାରର ସଞ୍ଚାପିତ ବାୟୁରଚାପ କମାଇ ଦେଲେ କିମ୍ବା ଅନ୍ୟ କୌଣସି ଯାନ୍ତ୍ରିକ ଅସୁବିଧାରୁ ଏହି ଚାପ କମିଗଲେ ଭଲ୍‌ଭର ଗୋଟିଏ ଦ୍ୱାର ଖୋଲିଯିବ ଏବଂ ବ୍ରେକ-ଶୁଗୁଡ଼ିକ ଆପେ ଆପେ ଚକ ଦେହରେ ଲାଗିଯିବ । ଭଲ୍‌ଭର ଦ୍ୱାରଗୁଡ଼ିକୁ ଗାଡ଼ିର ଆଧାର ଓ ବ୍ରେକ ସିଲିଣ୍ଡର ମଧ୍ୟରେ ସ୍ଥାପନ କରାଯିବ ।

୧୮୭୪ ମସିହାରେ ଏହି ଧରଣର ନୂତନ ବ୍ରେକ ବଜାରକୁ ଆସିଲା । ସଙ୍ଗେ ସଙ୍ଗେ ପୁରୁଣା ଏୟାରବ୍ରେକ ପରିବର୍ତ୍ତିରେ ଏହି ନୂତନ ଏୟାରବ୍ରେକ ବ୍ୟବହୃତ ହେଲା । ସେତେବେଳକୁ ଜର୍ଜଙ୍କର ସୁନାମ ପ୍ରତିଷ୍ଠିତ ହୋଇ ଯାଇଥାଏ । ତେଣୁ କେବଳ ତାଙ୍କ କଥା ଉପରେହିଁ ବିଶ୍ୱାସ କରି ରେଲକମ୍ପାନୀମାନେ ତାଙ୍କର ଏହି ସ୍ୱୟଂଚାଳିତ ବ୍ରେକକୁ ଗ୍ରହଣ କଲେ । ତାଙ୍କର ପ୍ରଥମ ଏୟାରବ୍ରେକକୁ ଗ୍ରହଣ କରିବା ବିଷୟରେ ସନ୍ଦେହ ଓ ଉଦାସୀନତା ଦେଖା ଯାଇଥିଲା । ମାତ୍ର ଏହି ନୂତନ ସ୍ୱୟଂଚାଳିତ ବ୍ରେକବେଳକୁ ସେପରି କିଛି ଦେଖା ଯାଇନଥିଲା ।

ଏଣେ ତାଙ୍କର ପେଟେଣ୍ଟଗୁଡ଼ିକ ବିସ୍ମୟକରଭାବରେ ବୃଦ୍ଧି ପାଉଥିଲା । ପ୍ରତି ମାସରେ ପ୍ରାୟ ଗୋଟିଏ ନୂଆ ପେଟେଣ୍ଟ । ବ୍ରେକକୁ ସର୍ବାଙ୍ଗସୁନ୍ଦର କରିବାରେ ତାଙ୍କର ଚେଷ୍ଟାର ଅନ୍ତ ନଥିଲା । ବ୍ରେକ ସୁନ୍ଦର କାମ ଦେଉଥିଲେ ସୁଦ୍ଧା ଏହାକୁ ଉନ୍ନତତର ଓ ତ୍ରୁଟିଶୂନ୍ୟ କରିବାପାଇଁ ସେ ନାନାପ୍ରକାର ଅଦଳବଦଳ କରିବାରେ ଲାଗିଥିଲେ ।

ଏଣିକି ଏୟାରବ୍ରେକ୍‌ର ଚାହିଦା ମଧ୍ୟ ବିଶେଷ ବୃଦ୍ଧି ପାଇଲା । ପରବର୍ତ୍ତୀ କେତେ ବର୍ଷ ଭିତରେ ଜର୍ଜ ବହୁବାର ଇଉରୋପ ଭ୍ରମଣରେ ଯାଇଥିଲେ । ଏହା ଫଳରେ ଇଂଲଣ୍ଡ, ଫ୍ରାନ୍ସ ଓ ରୁଷିଆରେ ତାଙ୍କର ସହଯୋଗୀ କମ୍ପାନୀମାନ ପ୍ରତିଷ୍ଠିତ ହୋଇଥିଲା ।

କାରଖାନାର କର୍ମଚାରୀମାନଙ୍କ ପ୍ରତି ତାଙ୍କର ସଦୟ ବ୍ୟବହାର ବିଷୟ ଚାରିଆଡ଼େ ଶୁଣାଯାଉଥିଲା । ଶ୍ରମିକମାନଙ୍କର ପାରିଶ୍ରମିକ ଯେପରି ବୃଦ୍ଧି ପାଇବ, ସେଥିଲାଗି ସେ କାର୍ଯ୍ୟର ପରିମାଣ ଅନୁସାରେ ମଜୁରି ଦେବା ପ୍ରଥା ପ୍ରଚଳନ କରିଥିଲେ ।

ସେ ତାଙ୍କର କାରଖାନାର ଶ୍ରମିକମାନଙ୍କୁ କହିଥିଲେ, "ଦେଖ' ତୁମେମାନେ ଯେତିକ ବେଶି ଅର୍ଜ୍ଜନ କରିପାରିବ, କମ୍ପାନୀ ସେତିକି ବେଶି ଅର୍ଜ୍ଜନ କରିବ । ତେଣୁ ତୁମକୁ ଦିନ ହିସାବରେ ମଜୁରି ନ ଦେଇ କାମର ପରିମାଣ ଅନୁସାରେ ମଜୁରି ଦେବାକୁ ମୁଁ ସ୍ଥିର କରିଅଛି ।

ଏହା ଫଳରେ ଦେଖାଗଲା ଯେ ଓ୍ଵେଷ୍ଟିଂହାଉସ ଏୟାରବ୍ରେକ କମ୍ପାନୀରେ କାର୍ଯ୍ୟ କରିବାକୁ ଶତ ଶତ ଲୋକ ପ୍ରାର୍ଥୀ ହେଲେ । କାରଣ ମିସ୍ତ୍ରୀମାନେ ଦେଖିଲେ ଯେ ସେମାନେ ଅନ୍ୟ କମ୍ପାନୀରେ ଦିନକୁ ଖୁବ୍ ବେଶି ହେଲେ ଅଢ଼େଇ ଡଲାର ପର୍ଯ୍ୟନ୍ତ ମଜୁରି ପାଉଅଛନ୍ତି । ଏଠାରେ କାମର ପରିମାଣ ହିସାବରେ ଦିନକୁ ସ୍ୱଚ୍ଛନ୍ଦରେ ଚାରି ଡଲାର ପର୍ଯ୍ୟନ୍ତ ଅର୍ଜି ପାରିବେ ।

ବ୍ୟକ୍ତିଗତ ଅଭିଜ୍ଞତାରୁ ଜର୍ଜ ବୁଝିଥିଲେ ଯେ ଯନ୍ତ୍ରପାତି ଯେତିକି ଉନ୍ନତ ଧରଣର ହେବ, ଉତ୍ପାଦନ ସେତିକି ଭଲ ହେବ । ସୁତରାଂ ସେ କାରଖାନାରେ ଅତ୍ୟାଧୁନିକ ଯନ୍ତ୍ରପାତିର ବ୍ୟବସ୍ଥା କରିଥିଲେ, ଶ୍ରମିକ-ମାନଙ୍କୁ ବର୍ଷକେ ଥରେ ଗୋଟିଏ ଭୋଜି ଦେବାର ପ୍ରଥା ଚଳାଇଥିଲେ । ଏହି ଭୋଜି ପିଟ୍‌ସବର୍ଗର ୟୁନିୟନ ଷ୍ଟେସନରେ ହେଉଥିଲା । ପ୍ରତି ଥାଙ୍କ୍‌ସଗିଭିଂ ଉତ୍ସବରେ ପ୍ରତ୍ୟେକ କର୍ମୀକୁ ଗୋଟିଏ ଲେଖାଏଁ ଟର୍କିପକ୍ଷୀ ଉପହାର ଦିଆଯାଉଥିଲା ।

ଅନ୍ୟାନ କମ୍ପାନୀର କର୍ତ୍ତାମାନେ ଆପତ୍ତି କରୁଥିଲେ ଯେ ଜର୍ଜ ଶ୍ରମିକମାନଙ୍କୁ ନଷ୍ଟ କରି ଦେଉଅଛନ୍ତି; ସେମାନଙ୍କୁ ଅତିରିକ୍ତ ମଜୁରି ଦେଉଅଛନ୍ତି । ଅତଏବ ଅନ୍ୟ କମ୍ପାନୀମାନଙ୍କର ଅବସ୍ଥା ଶୋଚନୀୟ ହୋଇ ପଡ଼ୁଅଛି । ଏହାର ଉତ୍ତରରେ ଜର୍ଜ କହିଲେ, "ଆପଣମାନେ ମୋର ପରି ଅତିରିକ୍ତ ମଜୁରି ଦେବାରେ ମୋର କୌଣସି ଆପତ୍ତି ନାହିଁ । ଓ୍ଵେଷ୍ଟିଂହାଉସ କମ୍ପାନୀରେ କେହି କାହାର ଚାକର ନୁହେଁ । ସମସ୍ତେ ସହକର୍ମୀ । କର୍ମୀମାନଙ୍କ ପ୍ରତି ଭଲ ବ୍ୟବହାର କଲେ, ସେମାନେ ମଧ୍ୟ ଆପଣଙ୍କ ପ୍ରତି ଭଲ ବ୍ୟବହାର କରିବେ ।"

ଓ୍ଵେଷ୍ଟିଂହାଉସ କମ୍ପାନୀ ପ୍ରତିଷ୍ଠିତ ହେବାର ପ୍ରଥମ ଅବସ୍ଥାରେ ଜର୍ଜ ଓ ମାର୍ଗାରେଟ ଗୋଟିଏ ଛୋଟ ଭଡ଼ାଘରେ ରହୁଥିଲେ । ୧୮୭୬

ମସିହାରେ ଜର୍ଜ ସ୍ଥିର କଲେ ଯେ ମାର୍ଗାରେଟଙ୍କୁ ଅବାକ୍ କରିଦେବାକୁ ହେବ ।

ସ୍ୱାଧୀନତା ଘୋଷଣାର ଶତବାର୍ଷିକୀ ଉପଲକ୍ଷେ ଫିଲାଡେଲଫିଆରେ ଏକ ବିରାଟ ପ୍ରଦର୍ଶନୀ ହୋଇଥିଲା । ଏଥିରେ ବିଭିନ୍ନ ବୈଜ୍ଞାନିକ ଓ ଶିଳ୍ପଗତ ଉଦ୍ଭାବନମାନ ପ୍ରଦର୍ଶିତ ହୋଇଥିଲା । ପୃଥିବୀର ସମସ୍ତ ଅଂଶର ଲୋକ ଏଗୁଡ଼ିକ ଦେଖିବାକୁ ଆସିଥିଲେ । ନିଜର କର୍ମୀମାନଙ୍କୁ ବିଶେଷ ଭାବରେ ପୁରସ୍କୃତ କରିବା ଉଦ୍ଦେଶ୍ୟରେ ସେମାନଙ୍କୁ ଏଥିପାଇଁ ଏକ ସପ୍ତାହ ଛୁଟି ଦିଆଗଲା । କର୍ମୀମାନଙ୍କ ପ୍ରାଇଁ କମ୍ପାନୀ ପକ୍ଷରୁ ଗୋଟିଏ ଟ୍ରେନ ଭଡ଼ା ଦିଆଗଲା । ଏହି ସମସ୍ତ ବ୍ୟୟ ଜର୍ଜ ନିଜେ ବହନ କରିଥିଲେ ।

ପ୍ରଦର୍ଶନୀଟି ଏକ ବିରାଟ ବ୍ୟାପାର । ଯେଉଁସବୁ ବିଶିଷ୍ଟ ଦ୍ରବ୍ୟ ପ୍ରଦର୍ଶନୀକୁ ଆସିଥିଲା ସେଥିମଧ୍ୟରେ ଓୟେଷ୍ଟିଂହାଉସଙ୍କ ଏୟାରବ୍ରେକର ମଡେଲ ସ୍ଥାନ ପାଇଥିଲା । ତାହାଛଡ଼ା ଆହୁରି କେତେକ ଅଦ୍ଭୁତ ଉଦ୍ଭାବନ ମଧ୍ୟ ଥିଲା । ସେଥିରୁ ଗୋଟିଏ ହେଉଛି 'ଟେଲିଫୋନ' । ଏହାକୁ ଆଲେକଜାଣ୍ଡର ଗ୍ରାହାମବେଲ୍ ବୋଲି ଜଣେ ବ୍ୟକ୍ତି ଉଦ୍ଭାବନ କରିଥିଲେ । ଟମାସ ଆଲ୍‌ଭା ଏଡିସନ ନାମକ ଜଣେ ଅଜ୍ଞାତ ଉଦ୍ଭାବକଙ୍କର ଗୋଟିଏ ଯନ୍ତ୍ର ସେଠାରେ ଥିଲା । ଏହାଦ୍ୱାରା ପରେ ଟେଲିଗ୍ରାଫ ବ୍ୟବସ୍ଥାର ଉନ୍ନତି ହୋଇ ପାରିଥିଲା ।

ପିଟସବର୍ଗକୁ ଫେରିବାପରେ ଦିନେ ସକାଳେ ଜର୍ଜ ମାର୍ଗାରେଟଙ୍କୁ କହିଲେ, "ଆଜି ଚାଲ, ସହରର ତଳ ଅଞ୍ଚଳକୁ ବୁଲିଯିବା ।" ଦୁହେଁ-ଯାକ ଗାଡିରେବସି ପିଟସବର୍ଗର ପୂର୍ବରେ ଥିବା ହୋମଉଡରେ ପହଞ୍ଚିଲେ ସେଠାରୁ ଗାଡ଼ି ବୁଲିଯାଇ ଗୋଟିଏ ହତା ମଧ୍ୟରେ ପ୍ରବେଶ କଲା । ପ୍ରବେଶ ପଥର ଦୁଇ ପାଖରେ ସୁନ୍ଦର ଗଛ ଓ ହତାର ଚାରିପାଖେ ତୃଣାଚ୍ଛନ୍ନ ପ୍ରାନ୍ତର । ହତା ମଝିରେ ଗୋଟିଏ ଅତି ସୁନ୍ଦର ତିନିତାଲ ପ୍ରାସାଦ ଦେଖାଗଲା ।

ଏହି ମନୋହର ଦୃଶ୍ୟ ଦେଖି ମାର୍ଗାରେଟ ସ୍ତମ୍ଭୀଭୂତ ହୋଇଗଲେ । ସେ କହି ପକାଇଲେ, 'ବାଃ, କି ଚମତ୍କାର ଘର । କିନ୍ତୁ ଆମର ଏଠାରେ ଅନଧିକାର ପ୍ରବେଶ କରିବା ଉଚିତ କି ?"

ଜର୍ଜ ଗମ୍ଭୀର ସ୍ୱରରେ ଉତ୍ତର କଲେ, "ମୁଁ ସେପରି କିଛି କରୁଛି ବୋଲି ମନେ କରୁନାହିଁ । ତୁମେ ଇଚ୍ଛାକଲେ ଏ ଘରଟି ଆମର ହୋଇ ପାରିବ । ତୁମର ଜନ୍ମଦିବସ ଉପଲକ୍ଷେ ମୁଁ ଏଇଟିକୁ ତୁମକୁ ଉପହାର ଦେବାକୁ ଇଚ୍ଛା କରେଁ ।

ବିସ୍ଫାରିତ ନେତ୍ରରେ ମାର୍ଗାରେଟ ଘର ଆଡ଼କୁ ଚାହିଁ କହିଲେ, "ଏତେ ବଡ଼ ଘରର ଦାମ ଦେଇ ପାରିବା ତ ?"

ଜର୍ଜ କୋମଳ ସ୍ୱରରେ କହିଲେ, "ଏଇଟି ହେବ ଆମ ନିଜର ପ୍ରଥମ ଘର । ତୁମେ ବହୁ କାଳରୁ ଗୋଟିଏ ଭଲ ଘରର ଅଭାବ ଅନୁଭବ କରି ଆସିଛ । ତେଣୁ ଏହି ଘରର ଦାମ ଯାହା ହେଉ ପଛକେ ଘରଟି ତୁମର ହେବା ଉଚିତ ।"

ନୀରବରେ ଦୁହେଁ ଘର ପର୍ଯ୍ୟନ୍ତ ଗାଡ଼ି ଚଳାଇଲେ । ମାର୍ଗାରେଟ କହିଲେ, "ମୁଁ ଗୋଟିଏ ନାମ ସ୍ଥିର କରିଛି ।"

ଜର୍ଜ ପଚାରିଲେ, "କାହାର ?"

ମାର୍ଗାରେଟ ଉତ୍ତର ଦେଲେ, "ଅବଶ୍ୟ ଏହି ଘରର । ଏହାର ନାମ ହେବ 'ନିଭୃତ ନିଳୟ' ।'

---

## ନଅ

# କର୍ମମୟ ଜୀବନ

ବର୍ତ୍ତମାନ ଜର୍ଜଙ୍କର ବୟସ ତିରିଶ ବର୍ଷରୁ ଊର୍ଦ୍ଧ୍ୱ । ତାଙ୍କର ସ୍ୱଭାବରେ ଅନେକ ପରିବର୍ତ୍ତନ ହୋଇଅଛି । ପ୍ରଥମ ଜୀବନରେ ଜଗତରେ ସେ ଯେପରି ସାଫଲ୍ୟ ଅର୍ଜ୍ଜନ କରିଥିଲେ, ତାହା ତାଙ୍କୁ ଦକ୍ଷତା ଓ ଗାମ୍ଭୀର୍ଯ୍ୟ ଆଣି ଦେଇଥିଲା । ଅତ୍ୟନ୍ତ ତରୁଣ ବୟସରେ ସେ ଯେପରି ଅଧୀରଭାବ ଦେଖାଇ କ୍ରୋଧ ପ୍ରକାଶ କରୁଥିଲେ, ତାହା ଆଉ ଦେଖାଯାଉ ନ ଥିଲା । ଏଥିମଧ୍ୟରେ ସେ ନିଜର ଅଦମ୍ୟ କ୍ରୋଧକୁ ଦମନ କରି ରଖିବାକୁ ଶିକ୍ଷା କରିଥିଲେ । ପ୍ରଥମେ ପ୍ରଥମେ ଏହା ଅତ୍ୟନ୍ତ କଠିନ ବ୍ୟାପାର ଥିଲା; ଦୃଢ଼ ମନୋବଳ ଆବଶ୍ୟକ କରୁଥିଲା; କିନ୍ତୁ କ୍ରମଶଃ ସେ ଏହି ପ୍ରବୃତ୍ତିକୁ ଦମନ କରି ପାରିଥିଲେ । ଏହି ଆତ୍ମସଂଯମ ଶିକ୍ଷା କରିବାରେ ମାର୍ଗାରେଟ ସ୍ୱାମୀଙ୍କୁ ଯଥେଷ୍ଟ ସାହାଯ୍ୟ କରିଥିଲେ । ସେ ତାଙ୍କୁ କହିଥିଲେ, "ଅନ୍ୟାନ୍ୟ ବ୍ୟବସାୟୀଙ୍କ ସହିତ କାରବାର କରିବାକୁ ହେଲେ ଏପରି କ୍ରୋଧ ପ୍ରକାଶ କରି ଚଳି ହେବ ନାହିଁ । ପ୍ରକୃତ ମନୋଭାବ ଗୋପନ ରଖିବାକୁ ହେବ ।"

ନିଜର ରାଗୀ ପ୍ରକୃତିକୁ ଗୋପନ ରଖି ଆତ୍ମସଂଯମ ପ୍ରକାଶ କରିବାକୁ ଯିବା ଫଳରେ ଅବସ୍ଥା ଏପରି ହେଲା ଯେ ସେ ପ୍ରକୃତରେ ଯାହା, ତାହାର ଠିକ୍ ବିପରୀତ ବୋଲି ବୋଧ ହେଉଥିଲେ । ଯେଉଁମାନେ ଭଲରୂପେ ଜାଣି ନ ଥିଲେ, ସେମାନେ ମନେ କରୁଥିଲେ ଯେ ସ୍ଥୈର୍ଯ୍ୟ ତାଙ୍କର ଚରିତ୍ରଗତ ଗୁଣ, କୌଣସିମତେ ତାଙ୍କର କ୍ରୋଧର ଉଦ୍ରେକ ହୁଏ ନାହିଁ; ସେ କୌଣସି ବିଷୟରେ ବିଶେଷ ଉତ୍ସାହ ପ୍ରଦର୍ଶନ କରିବାକୁ କୁଣ୍ଠିତ । କିନ୍ତୁ ଯେଉଁମାନଙ୍କ ସଙ୍ଗେ ତାଙ୍କର ପ୍ରଗାଢ଼ ପରିଚୟ ଥିଲା, ସେମାନେ ଜାଣିଥିଲେ ଯେ ତାଙ୍କର ଗାମ୍ଭୀର୍ଯ୍ୟ ନିତାନ୍ତ ବାହ୍ୟ, ଗୋଟାଏ

ଆବରଣ ମାତ୍ର । ପାରିବାରିକ ମିଳନ କ୍ଷେତ୍ରରେ ଓ ଅନ୍ତରଙ୍ଗ ବନ୍ଧୁମେଳରେ ତାଙ୍କର ଆଦର୍ଶବାଦିତାର ପରିଚୟ ମିଳୁଥିଲା, ତେଣୁ ବୟସର ସେହି ଅଭିମାନ ଜଣା ପଡ଼ି ଯାଉଥିଲା । କେହି ଅନ୍ୟାୟ ବ୍ୟବହାର କଲେ ବା ନିର୍ଦ୍ଦୟତା ପ୍ରକାଶ କଲେ ତାଙ୍କର ଅଭିମାନ ଓ କ୍ରୋଧ ବାହାରକୁ ପ୍ରକାଶ ପାଉଥିଲା ।

ତାଙ୍କ ଚେହେରାରେ ମଧ୍ୟ କମ ପରିବର୍ତ୍ତନ ଘଟି ନ ଥିଲା । ତିରିଶ ବର୍ଷ ବେଳକୁ ତାଙ୍କର ବାଳ ପାଚି ଆସିଥିଲା; ମେଦ ବୃଦ୍ଧି ହେତୁରୁ ଦେହ ମୋଟା ଦେଖା ଯାଉଥିଲା । ତେଣୁ ତାଙ୍କର ବୟସ ପ୍ରକୃତ ବୟସଠାରୁ ଖୁବ୍ ବେଶି ବୋଲି ବୋଧ ହେଉଥିଲା । ଏପରିକି ମାର୍ଗାରେଟ ତାଙ୍କୁ ବାରମ୍ବାର ଅନୁରୋଧ କରୁଥିଲେ ଯେ ଖାଦ୍ୟ ଟିକିଏ କମାଇ ଦେବାକୁ ହେବ । ଏହି ଅକାଳ ପ୍ରୌଢ଼ତ୍ୱ କେତେକ ପରିମାଣରେ କାରବାର କ୍ଷେତ୍ରରେ ସୁବିଧାଜନକ ହେଉଥିଲା । ଯେଉଁମାନଙ୍କ ସଙ୍ଗେ ତାଙ୍କର କାରବାର ଥିଲା, ସେମାନଙ୍କ ମଧ୍ୟରୁ ଅନେକଙ୍କ ବୟସ ଜର୍ଜଙ୍କ ବୟସର ପ୍ରାୟ ଦୁଇଗୁଣ ଥିଲା ।

୧୮୭୮ ମସିହା ବେଳକୁ ଜର୍ଜଙ୍କର ପାରିବାରିକ ଜୀବନ ଗୋଟାଏ ଗତାନୁଗତିକ ପନ୍ଥାରେ ପଡ଼ିଯାଇଥିଲା । ଅବଶ୍ୟ ଏହି ଜୀବନ କର୍ମମୟ ଥିଲା । ପ୍ରଥମ ଯୌବନରେ ମାର୍ଗାରେଟଙ୍କର ଯେଉଁ ଉଜ୍ଜ୍ୱଳ ସୌନ୍ଦର୍ଯ୍ୟ ଥିଲା, ତାହା ବୟୋବୃଦ୍ଧି ସଙ୍ଗେ ନାରୀତ୍ୱର ଶାନ୍ତ ପରିପୂର୍ଣ୍ଣତା ଲାଭ କରୁଥିଲା । ସେ ସ୍ୱଭାବତଃ ପତ୍ନୀଙ୍କର ସୌନ୍ଦର୍ଯ୍ୟ ବିଷୟରେ ଗର୍ବ ଅନୁଭବ କରୁଥିଲେ । ଉଭୟଙ୍କର ଅଧିକାଂଶ ସମୟ 'ନିଭୃତନିଳୟ'ରେ ଅତିବାହିତ ହେଉଥିଲା । ତଥାପି ଅନେକ ସମୟରେ ଦୁହେଁଯାକ କେନେକଟାଡ଼ି ଯାଇ ଜର୍ଜଙ୍କ ପିତାମାତାଙ୍କ ସହିତ ସାକ୍ଷାତ କରୁଥିଲେ । ପୁଅ ସହରକୁ ଆସିଲେ ମିଷ୍ଟର ୱେଷ୍ଟିଂହାଉସ ତାଙ୍କୁ କାରଖାନାକୁ ନେଇ ଗର୍ବ ସହକାରେ ସମସ୍ତଙ୍କ ସଙ୍ଗେ ପରିଚୟ କରାଇଦେଇ କହୁଥିଲେ "ଏଇ କାରଖାନାରେ ଜର୍ଜ ପ୍ରଥମେ କାମ ଶିଖିଥିଲା । ଅବଶ୍ୟ ମୁଁ ସେତେବେଳେ ତାକୁ କାମ କରିବାରେ ବାଧା ଦେଉଥିଲି ।"

ଜର୍ଜଙ୍କ ଭାଇମାନେ ମଧ୍ୟ ନିଜ ନିଜ କ୍ଷେତ୍ରରେ କୃତିତ୍ୱ ପ୍ରଦର୍ଶନ କରିଥିଲେ । ସର୍ବଶ୍ରେଷ୍ଠ ଜେ' ବ୍ୟବସାୟରେ ସୁନାମ ଅର୍ଜିଥିଲା । ଜନ୍

ସମାଜ ସେବାରେ ଆତ୍ମନିୟୋଗ କରିଥିଲା । ତିନି ଭଉଣୀଙ୍କ ବିବାହ କରି ପାରିବାରିକ ଜୀବନ ଯାପନ କରୁଥିଲେ । ସର୍ବକନିଷ୍ଠ ଭାଇ ହିରମାନ୍‌ର ସ୍କୁଲପଢ଼ା ଶେଷ ହୋଇ ନଥିଲା; କିନ୍ତୁ ଏହି ବୟସରୁ ତାହାର ଇଞ୍ଜିନିୟରିଙ୍ଗ ଦିଗରେ ଏପରି ଅନୁରକ୍ତି ଦେଖାଯାଇଥିଲା ଯେ ଜର୍ଜ ତାହାକୁ ପାଠପଢ଼ା ଶେଷରେ ଓ୍ୱେଷ୍ଟିଙ୍ଗହାଉସ କମ୍ପାନୀରେ ନିଯୁକ୍ତ କରିବେ ବୋଲି ଆଶା ଦେଇଥିଲେ ।

କମ୍ପାନୀର ଆଶାତୀତ ଉନ୍ନତି ହୋଇଥିଲେହେଁ ଜର୍ଜ ସନ୍ତୁଷ୍ଟ ହୋଇ ପାରି ନ ଥିଲେ । ସେ ଭାବୁ ଥିଲେ ଯେ ତାଙ୍କର ଉଦ୍ଭାବିତ ବ୍ରେକ ଉନ୍ନତିର ଚରମ ସୀମାରେ ପହଞ୍ଚି ପାରିନାହିଁ । ସ୍ୱୟଂକ୍ରିୟ ଏୟାରବ୍ରେକ ନିରାପତ୍ତା ସମସ୍ୟାର ସମାଧାନ କରି ପାରିଥିଲା ସତ୍ୟ, ତଥାପି ଏହାର କାର୍ଯ୍ୟକାରିତାରେ ଆହୁରି ଉନ୍ନତି କରାଯାଇପାରିବ ବୋଲି ତାଙ୍କର ଧାରଣା ଥିଲା । ଉଦାହରଣ ସ୍ୱରୂପ, ସବୁ ଯାତ୍ରୀଗାଡ଼ିରେ ଏହି ବ୍ରେକ ବ୍ୟବହୃତ ହେଉଥିଲା; କିନ୍ତୁ ମାଲଗାଡ଼ିରେ ଏହି ବ୍ରେକ ଲଗାଇବାକୁ ରେଲକମ୍ପାନୀ-ମାନେ ବିଶେଷ ଆଗ୍ରହୀ ନଥିଲେ । ୧୮୮୦ ମସିହା ପର୍ଯ୍ୟନ୍ତ ମାଲଗାଡ଼ି-ମାନଙ୍କରେ ପ୍ରାଚୀନ ଧରଣର ହସ୍ତଚାଳିତ ବ୍ରେକ ବ୍ୟବହୃତ ହେଉଥିଲା । ବ୍ରେକମାନଙ୍କୁ ମାଲଡବା ଉପରେ ବସି ଚକ ଘୂରାଇବାକୁ ହେଉଥିଲା । ଏଥିର କାରଣ ବାହାର କରିବା କଠିନ ନୁହେଁ । ଯାତ୍ରୀବାହୀ ଟ୍ରେନରେ କେବେ ହେଲେ ଛଅଟିରୁ ଅଧିକ ଡବା ଲାଗୁ ନ ଥିଲା । କିନ୍ତୁ ଏତେ ମାଲ ଯିବା ଆସିବା କରୁଥିଲା ଯେ ଗୋଟିଏ ଗୋଟିଏ ମାଲଗାଡ଼ିରେ ବହୁସଂଖ୍ୟକ ଡବା ଲାଗୁଥିଲା । କୋଡ଼ିଏ ପଚିଶ ଡବା ଲାଗିଥିବା ମାଲଗାଡ଼ିରେ ଗୋଟିଏ ଇଞ୍ଜିନ ଲାଗୁଥିଲା ଓ ତଦନୁପାତରେ କର୍ମଚାରୀ ରହୁଥିଲେ । ତାହା ନ କରି ପାଞ୍ଚ ଛଅଟି ଡବାପାଇଁ ଗୋଟିଏ ଇଞ୍ଜିନ ବ୍ୟବହାର କଲେ ପରିବହନର ବ୍ୟୟ ବହୁତ ବଢ଼ିଯିବ । ଖରଚ କମ ହେବ ବୋଲି ସ୍ଥଳବିଶେଷରେ ଗୋଟିଏ ଗୋଟିଏ ମାଲଗାଡ଼ିରେ ତିରିଶ ଚାଳିଶ ପର୍ଯ୍ୟନ୍ତ ଡବା ରହୁଥିଲା ।

ଅଳ୍ପ ଲମ୍ୱ ଯାତ୍ରୀବାହୀ ରେଲଗାଡ଼ିରେ ଓ୍ୱେଷ୍ଟିଙ୍ଗହାଉସ ଏୟାରବ୍ରେକ ସୁନ୍ଦର କାମ ଦେଉଥିଲା । କିନ୍ତୁ ଗୋଟାଏ ସୁଦୀର୍ଘ ମାଲ-ଗାଡ଼ିକୁ ହଠାତ୍ ବନ୍ଦ କରିବା ପାଇଁ ଏହାର ଯଥେଷ୍ଟ ସାମର୍ଥ୍ୟ ନ ଥିଲା ।

କାରଣ ସଙ୍କୋଚିତ ବାୟୁସ୍ରୋତ ଇଞ୍ଜିନଠାରୁ ଗାଡ଼ିର ଶେଷ ଡବା ପର୍ଯ୍ୟନ୍ତ ଏତେ ଶୀଘ୍ର ଯିବାର ଉପାୟ ନ ଥିଲା । ଦରକାରବେଳେ ଇଞ୍ଜିନଚାଳକ ଏୟାରବ୍ରେକ ପ୍ରୟୋଗ କଲେ ଇଞ୍ଜିନର ଠିକ ପଛରେ ଥିବା କେତୋଟି ଡବା ହଠାତ୍ ବନ୍ଦ ହୋଇଯିବ, କିନ୍ତୁ ସଙ୍କୋଚିତ ବାୟୁସ୍ରୋତର ଶକ୍ତି ଶେଷ ଡବାରେ ପହଞ୍ଚିବାପାଇଁ କେତେକ ସେକେଣ୍ଡ ସମୟ ଲାଗିବ । ଏହା ଫଳରେ ପଛ ଡବାଗୁଡ଼ିକ ଆଗରେ ଥିବା ଡବା ଉପରେ ଧକ୍କା ଦେବ । ଫଳତଃ ଗାଡିରେ ଥିବା ଜିନିଷ ଭାଙ୍ଗି ନଷ୍ଟ ହୋଇଯିବ; ଜୀବଜନ୍ତୁ ଥିଲେ ସେମାନଙ୍କର କ୍ଷତି ହେବ । ଆହୁରି ମଧ୍ୟ ଅନୁଭବରୁ ଦେଖାଯାଇଥିଲା ଯେ ହଠାତ୍ ବ୍ରେକ ଦବା ଫଳରେ ବେଳେବେଳେ ଇଞ୍ଜିନ ଚାଳକ ପଥର କାନ୍ଥରେ ଧକ୍କା ଲାଗିଲେ ଯେପରି ହୁଏ ସେହିପରି ଆଘାତ ପାଉଥିଲା ।

ଯେତେବେଳେ ଜର୍ଜ ସ୍ଥିରକଲେ ଯେ ମାଲଗାଡିର ବ୍ରେକସମସ୍ୟା ମଧ୍ୟ କୌଣସି ପ୍ରକାରେ ସମାଧାନ କରିବାକୁ ହେବ, ସେତେବେଳେ ତାଙ୍କର ସହକର୍ମୀମାନେ କହିଲେ, "ଯାତ୍ରୀବାହୀ ଟ୍ରେନର ବ୍ରେକରେ ଆମେ ସନ୍ତୁଷ୍ଟ ରହିବା ଉଚିତ । ପୃଥିବୀମଧ୍ୟରେ ଯାତ୍ରୀବାହୀ ଟ୍ରେନପାଇଁ ଆମର ଏୟାରବ୍ରେକ ସର୍ବଶ୍ରେଷ୍ଠ ବୋଲି ପ୍ରମାଣିତ ହୋଇ ସାରିଛି । ଏୟାରବ୍ରେକର କାର୍ଯ୍ୟକାରୀ ଶକ୍ତି ଏତେ ଦ୍ରୁତ, ଏତେ ନିର୍ଦ୍ଦୋଷ ଯେ ତାହା ମାଲ ଗାଡ଼ି ପକ୍ଷରେ ଅନୁପଯୁକ୍ତ ।"

ଏହି ପ୍ରତିବାଦସତ୍ତ୍ୱେ ଜର୍ଜ ମାଲଗାଡ଼ିପାଇଁ ଉପଯୋଗୀ ଏୟାରବ୍ରେକ ପରିକଳ୍ପନାରେ ଲାଗି ପଡ଼ିଲେ । ସ୍ୱାଧୀନତାପ୍ରାପ୍ତିର ଶତବାର୍ଷିକୀ ଉତ୍ସବ ଉପଲକ୍ଷେ ଆୟୋଜିତ ପ୍ରଦର୍ଶନୀରେ ଗ୍ରାହାମବେଲ୍ ଓ ଏଡିସନଙ୍କର ଉଦ୍ଭାବନଗୁଡ଼ିକ ଦେଖି ଜର୍ଜ ବୈଦ୍ୟୁତିକ ଶକ୍ତିର ବିରାଟ ସମ୍ଭାବନା ବିଷୟ ଚିନ୍ତା କରୁଥିଲେ । ତାଙ୍କ ମନରେ ବାରମ୍ବାର ଏହି ପ୍ରଶ୍ନ ଜାଗୁଥିଲା— ବୈଦ୍ୟୁତିକ ଶକ୍ତି ଚଳାଚଳରେ ପ୍ରୟୋଗ କରା ଯାଇ ନ ପାରିବ କାହିଁକି ? ଉଦ୍ଦାମ କଳ୍ପନା ସ୍ରୋତରେ ଭାସିଯାଇ ସେ ଭାବୁଥିଲେ—ଯଦି ବୈଦ୍ୟୁତିକ ତାର ସାହାଯ୍ୟରେ ଟେଲିଗ୍ରାଫ-ସଙ୍କେତ ଦୂରକୁ ପଠାଯାଇ ପାରୁଅଛି, ମନୁଷ୍ୟର କଣ୍ଠସ୍ୱର ପଠାଯାଇ ପାରୁଅଛି, ତେବେ ରେଲଗାଡିର ଏୟାର-ବ୍ରେକ ଚାଳନାରେ ବୈଦ୍ୟୁତିକ ଶକ୍ତି ବ୍ୟବହୃତ ହୋଇ ପାରିବ ନାହିଁ କାହିଁକି ? ଇଞ୍ଜିନଚାଳକର ନିୟନ୍ତ୍ରଣଦଣ୍ଡଠାରୁ ଡବାର ତଳେ ଥିବା

ଭଲ୍‌ଭ ପର୍ଯ୍ୟନ୍ତ ଯଦି ବୈଦ୍ୟୁତିକ ସାର୍କିଟ ଲଗାଯାଏ, ତେବେ ପଛ-ଗାଡ଼ିର ବ୍ରେକ-ଗୁଡ଼ିକ ଖୁବ୍ ଶୀଘ୍ର କାର୍ଯ୍ୟ କରିପାରିବ; ଦୀର୍ଘ ପାଇପ ଅତିକ୍ରମ କରି ଆସୁଥିବା ସଞ୍ଚାପିତ ବାୟୁସ୍ରୋତକୁ ଅପେକ୍ଷା କରିବାକୁ ପଡ଼ିବ ନାହିଁ । ପ୍ରତ୍ୟେକ ଭଲ୍‌ଭ ମୁହୂର୍ତ୍ତକ ମଧ୍ୟରେ ଇଞ୍ଜିନିୟରଙ୍କ ନିୟନ୍ତ୍ରଣଦଣ୍ଡ ସ୍ପର୍ଶ କଲାମାତ୍ରେ କାର୍ଯ୍ୟ କରିବେ । ଲମ୍ବା ଲମ୍ବା ମାଲଗାଡ଼ିର ସବୁପଛ ଡବାଗୁଡ଼ିକ ମଧ୍ୟ ଆଗ ଡବା ସଙ୍ଗେ ଏକ ସମୟରେ ବନ୍ଦ ହୋଇଯିବ । ବିଦ୍ୟୁତ୍‌ଦ୍ୱାରା ଏହି କାର୍ଯ୍ୟ ସାଧିତ ହୋଇ ପାରିବ । ସଞ୍ଚାପିତ ବାୟୁ ମଧ୍ୟ ରହିବ, କିନ୍ତୁ ଏହା କେବଳ କଷ୍ଟସାଧ୍ୟ କାର୍ଯ୍ୟରେ ବ୍ୟବହୃତ ହେବ ।

ଗୋଟିଏ ମଡେଲ ସର୍କିଟ ତିଆରି କରି ଜର୍ଜ ସେଇଟିକୁ ବ୍ରେକ ସହିତ ସଂଯୋଗ କଲେ । କିନ୍ତୁ ଏହା ସର୍ବଦା ସମାନ ଭାବରେ କାର୍ଯ୍ୟ କଲା ନାହିଁ । ବୈଦ୍ୟୁତିକ ତାର ଯେ ସହଜରେ ଛିଣ୍ଡି ଯାଇ ପାରେ, ରେଳଗାଡ଼ିର ବିଭିନ୍ନ ଅଂଶ ସହିତ ଘର୍ଷଣହେତୁ ବୈଦ୍ୟୁତିକ ସଂଯୋଗ ବିଚ୍ଛିନ୍ନ ହୋଇଯାଇପାରେ—ଏ ସବୁ କଥା ଜର୍ଜ ଏଥିପୂର୍ବରୁ ବିଚାରକୁ ନେଇ ନ ଥିଲେ । ଯେଉଁଠାରେ ନିରାପତ୍ତାର ପ୍ରଶ୍ନ ନିହିତ, ସେ କ୍ଷେତ୍ରରେ ଏୟାରବ୍ରେକକୁ ନିୟନ୍ତ୍ରଣ କରିବା ପାଇଁ ବୈଦ୍ୟୁତିକ ଶକ୍ତିର ଯଦୃଚ୍ଛା ପ୍ରକୃତି ଉପରେ ନିର୍ଭର କରାଯାଇ ନ ପାରେ । ଏହିପରି ଭାବି ଜର୍ଜ ସ୍ଥିର କଲେ ଯେ ଏଥିରେ କାର୍ଯ୍ୟ ଚଳିବ ନାହିଁ ।

ପୁଣି ମୂଳରୁ ପରୀକ୍ଷା ଆରମ୍ଭ କରାଗଲା । ସେ ସ୍ୱୟଂଚାଳିତ ଏୟାର-ବ୍ରେକର ପ୍ରତ୍ୟେକ ଅଂଶ ଖୋଲି ପୁଙ୍ଖାନୁପୁଙ୍ଖରୂପେ ପରୀକ୍ଷା କରିବାକୁ ଲାଗିଲେ । ଉନ୍ନତ ଧରଣର ଭଲ୍‌ଭ ଲଗାଗଲା । ସେ ପ୍ରତି ଡବାର ତଳେ ଗୋଟିଏ ଲେଖାଏଁ ଉନ୍ନତଗୁଣ ଶକ୍ତିସମ୍ପନ୍ନ ଭଲ୍‌ଭ ବସାଇଲେ । ଏ ସବୁ ପରିବର୍ତ୍ତନ ଦ୍ୱାରା କିଛି ସୁଫଳ ମିଳିଲା । ଶେଷରେ ଜର୍ଜ ଭାବିଲେ ଯେ ପାଇପର ବ୍ୟାସ ବଢ଼ାଇ ଦେଲେ ଶକ୍ତିର ଗତି ମଧ୍ୟ ଖୁବ୍ ବଢ଼ିଯିବ ।

ଏହିସବୁ ପରିବର୍ତ୍ତନ କରା ଯିବା ପରେ ଗୋଟିଏ ପଚାଶଡବା ବିଶିଷ୍ଟ ମାଲଗାଡ଼ି ପ୍ରସ୍ତୁତ ହେଲା । ଏଥିରେ ଖରଚ ପଡ଼ିଲା ଦୁଇଲକ୍ଷ ଡଲାର । ନୂତନ ବ୍ରେକ ଏହି ମାଲଗାଡିରେ ଲଗାଗଲା । ବ୍ରେକର

କାର୍ଯ୍ୟକାରିତା ପରୀକ୍ଷା କରାଯିବାର ସ୍ଥିର ହେଲା । ଜର୍ଜ କମ୍ପାନୀର ଅନ୍ୟାନ୍ୟ ଡିରେକ୍ଟରମାନଙ୍କୁ ଏହି ପରୀକ୍ଷାମୂଳକ ରେଲଯାତ୍ରା ପାଇଁ ଆହ୍ୱାନ କଲେ । ସମସ୍ତେ ମନେ କରୁଥିଲେ ଯେ ଏତେ ବିପୁଳ ବ୍ୟୟ କରି ଶେଷରେ ବିଫଳ ହେବାକୁ ପଡ଼ିବ; ଅର୍ଥଶ୍ରାଦ୍ଧହିଁ ସାର ହେବ । ରାଲ୍ଫ ବ୍ୟାଗଲେ ଏହି ଅର୍ଥର ଅପବ୍ୟୟରେ ସାବଧାନ ହୋଇ କହିଲେ, "ମୁଁ ଏହି ରେଲଯାତ୍ରାରେ ଯିବି, କାରଣ ରେଲ ଚଳାଚଳର ଇତିହାସରେ ବୋଧହୁଏ କୌଣସି ଟ୍ରେନରେ ଏତେ ବିପୁଳ ଅର୍ଥ ବ୍ୟୟ କରା ଯାଇନାହିଁ ।" ଯାହା ହେଉ ଡିରେକ୍ଟରମାନେ ଗାଡ଼ିରେ ଯିବା ପାଇଁ ଆସିଲେ ।

ଜର୍ଜ ସେମାନଙ୍କୁ ନେଇ ଶେଷ ଡବାରେ ବସାଇଲେ, କାରଣ ଶେଷ ଡବାରେ ସବୁଠାରୁ ବେଶି ଧକ୍କା ଲାଗିବାର କଥା । ଏହାପରେ ଗାଡ଼ି ଷ୍ଟେସନ ଛାଡ଼ିବା ପୂର୍ବରୁ ସେ ଗୋଟିଏ ଅଦ୍ଭୁତ କାମ କଲେ । ଗୋଟିଏ ଜଳପୂର୍ଣ୍ଣ ଗ୍ଲାସ ନେଇ ସେ ଡବାର ମେଝିଆ ଉପରେ ରଖିଦେଇ କହିଲେ, "ଆପଣମାନେ ଦୟାକରି ଏହି ଗ୍ଲାସ ଉପରେ ନଜର ରଖିଥିବେ ।" ରାଲ୍ଫ ବ୍ୟାଗଲେ ଓ ଅନ୍ୟମାନେ ଏଥିରେ ବିସ୍ମିତ ହୋଇଗଲେ । ଗାଡ଼ିର ବେଗ ବୃଦ୍ଧି ପାଇଲା । ସମସ୍ତେ ଗ୍ଲାସଟିକୁ ଏକ ଦୃଷ୍ଟିରେ ଚାହିଁ ରହିଥାନ୍ତି ।

ଜର୍ଜ ହାତରେ ଘଣ୍ଟାଟି ଧରି ଛିଡ଼ା ହୋଇଥିଲେ । ହଠାତ୍ ଡବା ମଧ୍ୟରେ ଥିବା ଜଣେ କର୍ମଚାରୀ କହିଲା, "ମିଷ୍ଟର ଓୟେଷ୍ଟିଂହାଉସ, ଇଞ୍ଜିନଚାଳକ ବ୍ରେକ ଦେଇଛି । ମୁଁ ଏଥିର ସଙ୍କେତ ପାଇଲି ।"

ଧୀରଭାବରେ ଅଥଚ ମୁହୂର୍ତ୍ତକ ମଧ୍ୟରେ ସେହି ବିରାଟ ଟ୍ରେନର ଗତି ପୂର୍ଣ୍ଣରୂପେ ବନ୍ଦ ହୋଇଗଲା ।

ଜର୍ଜ ବିଜୟ ଉଲ୍ଲାସରେ ଚିତ୍କାର କରି ଉଠିଲେ "ଅଢ଼େଇ ସେକେଣ୍ଡ । ଟ୍ରେନ ବନ୍ଦ ହେବାକୁ ଲାଗିଲା ମାତ୍ର ଅଢ଼େଇ ସେକେଣ୍ଡ ।"

ରାଲ୍ଫ ଗ୍ଲାସଟିକୁ ଦେଖାଇ ଉତ୍ତେଜିତ ସ୍ୱରରେ କହିଲେ, "କି ଆଶ୍ଚର୍ଯ୍ୟ । ଟ୍ରେନ ବନ୍ଦ ହୋଇଗଲା ବେଳେ ଗ୍ଲାସ ଆଦୌ ହଲିନାହିଁ । ଟୋପାଏ ସୁଦ୍ଧା ପାଣି ବାହାରି ପଡ଼ିନାହିଁ ।"

ସମସ୍ତେ ଟ୍ରେନରୁ ଓହ୍ଲାଇ ଲାଇନ ଧାରରେ ଛିଡ଼ା ହେଲେ । ଜର୍ଜ ଇଞ୍ଜିନଚାଳକକୁ ଆଉ ଥରେ ପରୀକ୍ଷା କରି ଦେଖିବାକୁ କହିଲେ । ଚାଳକ ଧୀରେ ଧୀରେ ଗାଡ଼ିକୁ ପଛେଇ ପ୍ଲାଟଫର୍ମକୁ ନେଲା । କେଉଁଠାରେ ବ୍ରେକ ଦିଆଯିବ ତାହା ଆଗରୁ ସ୍ଥିର କରାଯାଇଥିଲା । ପୁଣି ଗାଡ଼ିକୁ ଚଳାଇ ନିର୍ଦ୍ଦିଷ୍ଟ ସ୍ଥାନରେ ବ୍ରେକ ଦିଆଗଲା । ଗାଡ଼ି ପୂରା ବନ୍ଦ ହେବାରୁ ଜର୍ଜ ଜଣେ ସହକର୍ମୀକୁ ନିର୍ଦ୍ଦିଷ୍ଟ ସ୍ଥାନଠାରୁ ଗାଡ଼ି ବନ୍ଦ ହୋଇଯିବା ସ୍ଥାନର ଦୂରତା ମାପିବାକୁ କହିଲେ । ଏହି ଦୂରତା ହେଲା ଦୁଇ ଶହ ଫୁଟ ମାତ୍ର । ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ ଯେ ଗାଡ଼ିଟି ଘଣ୍ଟାରେ କୋଡ଼ିଏ ମାଇଲ ବେଗରେ ଗତି କରୁଥିବା ବେଳେ ବ୍ରେକ ଦେଲେହେଁ ଏହା ଦୁଇ ଶହ ଫୁଟ ମଧ୍ୟରେ ସମ୍ପୂର୍ଣ୍ଣରୂପେ ବନ୍ଦ ହୋଇ ପାରିଛି ।

ମିଷ୍ଟର କାର୍ଡ଼ ରେଲଚଳାଚଳ ବିଭାଗରେ ତିରିଶବର୍ଷକାଳ ସୁପରି-ଣ୍ଟେଣ୍ଡେଣ୍ଟ କାମ କରିଥିଲେ । ସେ ବିସ୍ମିତ ହୋଇ କହିଲେ, "ମୁଁ ସ୍ୱପ୍ନରେ ଭାବି ନଥିଲି ଯେ ମୋର ଜୀବନକାଳ ମଧ୍ୟରେ ଏପରି ଆଶ୍ଚର୍ଯ୍ୟ-ଜନକ ଉଦ୍ଭାବନ ଦେଖିବି ।" ତାଙ୍କ କଣ୍ଠସ୍ୱରରେ ଜର୍ଜଙ୍କ ପ୍ରତି ଶ୍ରଦ୍ଧାର ସୂଚନା ପ୍ରକାଶ ପାଉଥିଲା ।

ଓଏଷ୍ଟିଂହାଉସ କମ୍ପାନୀର ଏହି ଉନ୍ନତ ଧରଣର ବ୍ରେକ ରେଲ-ଚଳାଚଳରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଆଣିଥିଲା । ଅତି ନିରାପଦରେ ରେଲଗାଡ଼ି ଘଣ୍ଟାରେ ଚାଳିଶ ପଚାଶ ମାଇଲ ଏପରିକି ଷାଠିଏ ମାଇଲ ପର୍ଯ୍ୟନ୍ତ ଯାଇପାରିଲା । ପୂର୍ବେ କୌଣସି ସ୍ଥାନକୁ ଯିବାପାଇଁ ଯେତେ ସମୟ ଲାଗୁଥିଲା, ଏବେ ତାର ଅଧେ ମାତ୍ର ସମୟ ଲାଗିଲା । ୧୮୭୦ଠାରୁ ୧୮୮୦ମସିହା ଏହି ଦଶବର୍ଷ ମଧ୍ୟରେ ରେଲ ଦୁର୍ଘଟଣା ଏତେ କମିଗଲାଯେ ଆମେରିକାର ଲୋକସାଧାରଣଙ୍କ ମନରେ ରେଲଯାତ୍ରା କରିବାକୁ ଆଉ ଭୟ ରହିଲା ନାହିଁ । ମାଲଗାଡ଼ିରେ ମଧ୍ୟ ଏୟାରବ୍ରେକର ବ୍ୟବହାର ହେଉଥିବାରୁ ଆମେରିକାଯୁକ୍ତରାଷ୍ଟ୍ରରେ ମାଲ ପରିବହନରେ ଏକ ଯୁଗାନ୍ତର ସୃଷ୍ଟି ହେଲା । ରେଲଯାତ୍ରା ଲୋକପ୍ରିୟ ହେବାରୁ ଯାତ୍ରୀସଂଖ୍ୟା ଏତେ ବୃଦ୍ଧି ପାଇଲା ଯେ ରେଲକମ୍ପାନୀ ଅଧିକସଂଖ୍ୟକ ଟ୍ରେନ ଚଳାଇବାକୁ ବାଧ୍ୟ-ହେଲେ । ଯନ୍ତ୍ର ବିଶାରଦମାନଙ୍କ ପକ୍ଷରେ ଏବେ ଏକ ନୂତନ ସମସ୍ୟା ଦେଖା ଦେଲା—ଯାନବାହନର ନିୟନ୍ତ୍ରଣ କରିବା ।

ରେଲ କମ୍ପାନିମାନଙ୍କର ନିକଟ ସମ୍ପର୍କରେ ଥିବାରୁ ଏହି ବିଷମ ସମସ୍ୟାର ପ୍ରକୃତି ସମ୍ବନ୍ଧରେ ଜର୍ଜଙ୍କର ବିଶେଷ ପରିଚୟ ଥିଲା । ଯାନବାହନର ନିୟନ୍ତ୍ରଣ ତାଙ୍କର କାର୍ଯ୍ୟପରିସରର ଅନ୍ତର୍ଗତ ନୁହେଁ; ତେଣୁ ଏ ବିଷୟରେ ସେ ମସ୍ତିଷ୍କଚାଳନା କରିବାକୁ ପ୍ରଥମେ ଇଚ୍ଛା କରି ନ ଥିଲେ । କିନ୍ତୁ ସେ ବେଶି ଦିନଯାଏ ନିଜକୁ ଏହି ସମସ୍ୟାଠାରୁ ଦୂରରେ ରଖିପାରି ନଥିଲେ । ସେ ସ୍ୱଭାବତଃ କୌତୂହଳପ୍ରବଣ ଥିଲେ । ସେ ଭାବିଲେ—ଗୋଟାଏ ଟ୍ରେନ ପିଟସବର୍ଗଠାରୁ ନ୍ୟୁୟର୍କକୁ ଯେତିକି ସମୟରେ ଯିବାର କଥା, ସେଥିରୁ ପାଞ୍ଚ ଛଅ ଘଣ୍ଟା ଅଧିକ ଲାଗି ଯାଉଛି; କାରଣ ଯାନବାହନର ସଂଖ୍ୟାଧିକ୍ୟ ହେତୁରୁ ତାକୁ ଅନେକ ସ୍ଥଳରେ ବନ୍ଦ ହେବାକୁ ପଡ଼ୁଛି ଓ ଏହାଫଳରେ ଅଯଥା ସମୟ ନଷ୍ଟ ହେଉଅଛି । ରେଲଲାଇନରେ ଟ୍ରେନର ନିୟନ୍ତ୍ରଣ କରିବା, ଟ୍ରେନର ଯିବା ଆସିବା ସମୟ ସ୍ଥିର କରିବା—ଏସବୁ ପରିଚାଳନାଗତ ବ୍ୟାପାର । ତଥାପି ନିୟନ୍ତ୍ରଣ ବ୍ୟବସ୍ଥାକୁ ଉନ୍ନତ କଲେ ଏହି ବ୍ୟାପାର ସୁବିଧାରେ ସମାହିତ ହୋଇପାରିବ ବୋଲି ତାଙ୍କର ଧାରଣା ହେଲା । ୧୮୮୦ ମସିହା ବେଳକୁ ରେଲଚଳାଚଳରେ ନିୟନ୍ତ୍ରଣ ବ୍ୟବସ୍ଥା ନିତାନ୍ତ ବିଶୃଙ୍ଖଳ ଥିଲା । ଏହା ଫଳରେ ଗାଡ଼ିମାନଙ୍କ ମଧ୍ୟରେ ସଂଘର୍ଷ ଓ ଅନ୍ୟାନ୍ୟ ଦୁର୍ଘଟନାର ସମ୍ଭାବନା ପୁନରାୟ ବୃଦ୍ଧି ପାଇ ଆସୁଥିଲା ।

ସମସ୍ୟାଟିକୁ ଉତ୍ତମରୂପେ ଅଧ୍ୟୟନ କରି ଜର୍ଜ ଦେଖିଲେ ଯେ ଗୋଟିଏ ଗୁରୁତର ବିଷୟରେ ଆମେରିକା ଯୁକ୍ତରାଷ୍ଟ୍ର ଆଦିମ ଅବସ୍ଥାରେ ପଡ଼ି ରହିଛି । ଏହି ବିଷୟଟି ହେଉଛି, ପରିଯାନ ନିୟନ୍ତ୍ରଣ (Traffic-Signalling) । ଏ କ୍ଷେତ୍ରରେ ଇଂଲଣ୍ଡ ଅନେକ ଦୂର ଅଗ୍ରସର ହୋଇ ସାରିଥିଲା । ଇଂଲଣ୍ଡର ସିଗନାଲ ପଦ୍ଧତିର ନାମ ଥିଲା ବ୍ଲକ ସିଗନାଲିଙ୍ଗ । ଆମେରିକାର କେତେକ ପ୍ରସିଦ୍ଧ ରେଲକମ୍ପାନି ଏହି ପଦ୍ଧତିର ପ୍ରଚଳନ କରିଥିଲେ କିନ୍ତୁ ଏହା କେବଳ କେତୋଟି କର୍ମବହୁଳ ଷ୍ଟେସନ, ଜଙ୍କସନ୍ ଓ ସଂଯୋଗସ୍ଥଳ ମଧ୍ୟରେ ଆବଦ୍ଧ ଥିଲା । ଅଧିକାଂଶ ରେଲପଥରେ ପରିଯାନ ନିୟନ୍ତ୍ରଣର ସୁବ୍ୟବସ୍ଥା ନ ଥିଲା ।

ସିଗନାଲ ପଦ୍ଧତିର ଉଦ୍ଦେଶ୍ୟ ଦ୍ୱିବିଧ । ଗୋଟିଏ ହେଉଛି ଦୁର୍ଘଟଣା ନିବାରଣ କରିବା ଓ ଅନ୍ୟଟି ହେଉଛି ନିର୍ଦ୍ଦିଷ୍ଟ ଗତିରେ

ନିୟମିତ ଭାବରେ ଟ୍ରେନ ଚଳାଚଳରେ ସାହାଯ୍ୟ କରିବା । ବ୍ଲକ ସିଗନାଲ ପଦ୍ଧତିରେ ରେଲପଥଗୁଡ଼ିକୁ କେତେକ ବ୍ଲକ ବା ଅଂଶରେ ବିଭାଗ କରାଯାଇଥାଏ । ପ୍ରତ୍ୟେକ ବ୍ଲକର ଦୈର୍ଘ୍ୟ ଅଧମାଇଲଠାରୁ ଚାରି ମାଇଲ ପର୍ଯ୍ୟନ୍ତ । ଦୁଇବ୍ଲକର ସଂଯୋଗ ସ୍ଥଳରେ ଗୋଟିଏ ସିଗନାଲ ଷ୍ଟେସନ ଥାଏ । ତାହାର ଦାୟିତ୍ୱ ଜଣେ ଲୋକଉପରେ ନ୍ୟସ୍ତ ହୋଇଥାଏ । କୌଣସି ଟ୍ରେନ ସେଠାକୁ ଆସିବାର ଜଣାଗଲେ ସେ ଗୋଟିଏ ବିପଦସୂଚକ ସିଗନାଲ ଟେକ ଦିଏ । ପରବର୍ତ୍ତୀ ଷ୍ଟେସନରୁ ବ୍ଲକର 'ପଥ ପରିଷ୍କାର' ବୋଲି ଟେଲିଗ୍ରାଫ ବା ସଙ୍କେତ ନ ପାଇବା ପର୍ଯ୍ୟନ୍ତ ସେ ଉକ୍ତ ସିଗନାଲକୁ ଟେକ ରଖିଥାଏ । 'ପଥ ପରିଷ୍କାର' ସଙ୍କେତ ପାଇଲେ ସେ ଇଞ୍ଜିନଚାଳକକୁ ଅଗ୍ରସର ହେବାପାଇଁ ସଙ୍କେତ ଦିଏ । ଏହି ସିଗନାଲ ପଦ୍ଧତିରେ କେତେକ ତ୍ରୁଟି ଥିଲା । ସିଗନାଲର ଦାୟିତ୍ୱରେ ଥିବା ଲୋକଟି ଶୋଇ ପଡ଼ିପାରେ; ଅସୁସ୍ଥ ହୋଇପାରେ ଅଥବା ଭୁଲ ସଙ୍କେତ ଦେଇପାରେ ।

ଇଂଲଣ୍ଡରେ ପ୍ରଚଳିତ ବ୍ଲକ ସିଗନାଲ ପଦ୍ଧତିର ପର୍ଯ୍ୟାଲୋଚନା କରି ଜର୍ଜ ଏହାର ସୁବିଧା ଓ ଅସୁବିଧାମାନଙ୍କର ତାଲିକା ପ୍ରସ୍ତୁତ କଲେ । ସେତେବେଳେ ଇଂଲଣ୍ଡର ବିଶେଷଜ୍ଞମାନେ ଗୋଟିଏ ନୂତନ ପଦ୍ଧତିର ପରୀକ୍ଷା କରୁଥିଲେ । ତାହାର ନାମ ସଂଯୁକ୍ତ ପଦ୍ଧତି (Interlocking) । ଜର୍ଜ ଏହି ପଦ୍ଧତିଟିକୁ ମଧ୍ୟ ଉତ୍ତମରୂପେ ଆଲୋଚନା କଲେ । ଏହି ପଦ୍ଧତିରେ କୌଣସି ବ୍ଲକର ଟ୍ରେନ ସୁଇଚ ନିୟନ୍ତ୍ରଣକାରୀ ଦଣ୍ଡ ଓ ସିଗନାଲଗୁଡ଼ିକ ଗୋଟିଏ ବିରାଟ ଯନ୍ତ୍ର ମଧ୍ୟରେ ଏପରି ସଂଯୁକ୍ତ କରାଯାଉ-ଥିଲା ଯେ ଦୁଇଟି ବିପରୀତ ସିଗନାଲ କୌଣସିମତେ ଏକ ସଙ୍ଗରେ ଦିଆଯାଇ ପାରୁନଥିଲା । ପୂର୍ବ ବ୍ୟବସ୍ଥା ଅପେକ୍ଷା ଏହା ଯେ ଉନ୍ନତତର ଏଥିରେ ସନ୍ଦେହ ନାହିଁ । ସିଗନାଲ କର୍ମଚାରୀ ଆଖିବୁଜି ଯେ କୌଣସି ସିଗନାଲ ଦେଲେ ସୁଦ୍ଧା ଏହି ପଦ୍ଧତିରେ ହୁଏତ କିଛି ସମୟପାଇଁ ରେଲ ଚଳାଚଳ ବନ୍ଦ ହୋଇଯାଇପାରେ ବା କିଛି ଗୋଳମାଳ ଘଟିପାରେ; କିନ୍ତୁ ଦୁଇଟି ଟ୍ରେନ ମଧ୍ୟରେ ସଂଘର୍ଷ ଘଟିବାର କୌଣସି ସମ୍ଭାବନା ନ ଥିଲା ।

ଜର୍ଜ ଦେଖିଲେ ଯେ ବ୍ଲକ ସିଗନାଲ ପଦ୍ଧତି ଓ ସଂଯୁକ୍ତ ପଦ୍ଧତି ଉଭୟର ସମ୍ମିଳନ ହେଲେ ରେଲ ଚଳାଚଳ ଅଧିକ ନିରାପଦ ହେବ ।

କିନ୍ତୁ ସିଗନାଲର ସମସ୍ତ ଉପକାର ଏହାଦ୍ୱାରା ମିଳିପାରିବ ନାହିଁ । ସୁଇଚ ଓ ସିଗନାଲ ଦଣ୍ଡକୁ ହାତରେ ଚଳାଇବାପାଇଁ ଏତେ ଶାରୀରିକ ଶକ୍ତିର ପ୍ରୟୋଜନ ଯେ କେବଳ ବଳିଷ୍ଠ ଲୋକ ଏହି କାର୍ଯ୍ୟ କରି ପାରିବ । ଏ କ୍ଷେତ୍ରରେ ଯାନ୍ତ୍ରିକ ଶକ୍ତିର ପ୍ରୟୋଗ କରା ନଯିବ କାହିଁକି ? ଏହି ପ୍ରଶ୍ନ ଜର୍ଜଙ୍କ ମନରେ ଉଦିତ ହେଲା । ସଙ୍କୋଚିତ ବାୟୁର ଏତେ ଶକ୍ତି ଅଛି ଯେ ପୂର୍ଣ୍ଣ ବେଗରେ ଗତି କରୁଥିବା ପଚିଶଡବା ବିଶିଷ୍ଟ ଗୋଟିଏ ଟ୍ରେନକୁ ଏହା ମାତ୍ର କେତେକ ଶହ ଫୁଟ ମଧ୍ୟରେ ସମ୍ପୂର୍ଣ୍ଣରୂପେ ବନ୍ଦ କରିପାରୁଛି । ତେବେ ଯେଉଁ କାର୍ଯ୍ୟ ଜଣେ ଶକ୍ତିଶାଳୀ ଲୋକ କରିପାରୁଛି, ତାହା କରିପାରିବ ନାହିଁ କାହିଁକି ?

ଧୀରମନରେ ଓ ସୁଶୃଙ୍ଖଳଭାବରେ ସେ କେତେଗୁଡ଼ିଏ ସିଗନାଲର ନକ୍ସା ତିଆରି କଲେ । ସେ କଳ୍ପନା କଲେ ଯେ ସିଗନାଲ ବାୟୁର ଭଲ୍‌ଭ ଦ୍ୱାରା ଚାଳିତ ହେବ । ଏହାର ମୌଳିକସୂତ୍ର ଠିକ ଏୟାରବ୍ରେକର ମୌଳିକସୂତ୍ର ପରି । କେବଳ ବ୍ରେକ-ଶୁକୁ ଚକରେ ଲଗାଇବା ପରିବର୍ତ୍ତେ ଏହା ରେଲପଥର ସୁଇଚକୁ ଖୋଲିବା ବା ବନ୍ଦ କରିବା ଏବଂ ସିଗନାଲକୁ ଉଠାଇବା ବା ପକାଇବାପାଇଁ ବ୍ୟବହୃତ ହେବ ।

ଏହା ସଙ୍ଗେ ସଙ୍ଗେ ସେ ସଙ୍କୋଚିତ ବାୟୁ ଯନ୍ତ୍ରଟିର ନିୟନ୍ତ୍ରଣ ବ୍ୟବସ୍ଥା ପ୍ରତି ଦୃଷ୍ଟି ଦେଲେ । ପ୍ରଥମେ ସେ କଳ୍ପନା କରିଥିଲେ ଯେ ଏୟାରପମ୍ପ ଓ ସଙ୍କୋଚିତ ବାୟୁର ଆଧାର ସିଗନାଲ ଷ୍ଟେସନରେ ରହିବ ଏବଂ ମାଟି ତଳେ ତଳେ ପାଇପ ସାହାଯ୍ୟରେ ସୁଇଚ ଓ ସିଗନାଲକୁ ସଙ୍କୋଚିତ ବାୟୁ ଯିବ । ସିଗନାଲର ଦାୟିତ୍ୱରେ ଥିବା ଲୋକ ଏହି ସଙ୍କୋଚିତ ବାୟୁକୁ ନିୟନ୍ତ୍ରଣ କରିବ । ଯେପରି ଇଞ୍ଜିନ ଚାଳକ ବ୍ରେକ-ଦଣ୍ଡକୁ ଟାଣି ସୁଇଚ ବା ସିଗନାଲକୁ ଚଳାଇବାର ସଙ୍କେତ ଦିଏ ଠିକ ସେହିପରି ସିଗନାଲ ଚାଳକ ଗୋଟିଏ ଭଲ୍‌ଭ ଦଣ୍ଡକୁ ଟାଣିଲେ ହେବ । କିନ୍ତୁ ବିଶେଷ ଆଲୋଚନା ପରେ ଜର୍ଜ ଦେଖିଲେ ଯେ ଏପରି କଲେ ଚଳିବ ନାହିଁ । ମାଟି ତଳେ ତଳେ ଶତଶତ ଫୁଟ ଦୂର ପର୍ଯ୍ୟନ୍ତ ସଙ୍କୋଚିତ ବାୟୁର ପାଇପ ନେବାରେ ଖରଚ ଅତିରିକ୍ତ ମାତ୍ରାରେ ବୃଦ୍ଧି ପାଇବ । ଏହା ଛଡ଼ା କୌଣସିଠାରେ ପାଇପଲାଇନ ଫାଟିଗଲେ ବା ସେଥିରେ କୌଣସିଠାରେ ଛିଦ୍ର ହେଲେ ସମଗ୍ର ଲାଇନଟି ଖୋଲି ତାହାର

କରି ମରାମତି କରିବାକୁ ହେବ । ଏହି ନୂତନ ପଦ୍ଧତିଟି କେବଳ ସହଜ ହେଲେ ଚଳିବ ନାହିଁ । ତାହାକୁ ଲଗାଇବା ଓ ଚଳାଇବା ମଧ୍ୟ ସହଜ ହେବା ଉଚିତ । ଏହାକୁ ବସାଇବା ଓ ସ୍ଥିରରଖିବାରେ ଯେପରି ଅଧିକ ବ୍ୟୟ ନ ହୁଏ ତାହା ମଧ୍ୟ ଦେଖିବାକୁ ହେବ ।

ଜର୍ଜଙ୍କର ମନେ ପଡ଼ିଲା ଯେ ବିଦ୍ୟୁତିକ ସର୍କିଟ ଦ୍ୱାରା ଟ୍ରେନରେ ସଞ୍ଚାପିତ ବାୟୁର ଭଲ୍‌ଭ ନିୟନ୍ତ୍ରଣ କରିବା ଚେଷ୍ଟାରେ ସେ ସଫଳ ହୋଇ ପାରି ନ ଥିଲେ । ବ୍ରେକର ତୁଳନାରେ ବିଦ୍ୟୁତର ବ୍ୟବହାର ସମ୍ଭବପର ନୁହେଁ, କାରଣ ଘର୍ଷଣ ଓ ଉତ୍‌ଥାନପତନ ଜନିତ କ୍ଷୟ ସହ୍ୟ କରିବାର ଶକ୍ତି ବିଦ୍ୟୁତିକ ତାରର ନାହିଁ । କିନ୍ତୁ ସିଗନାଲର ନିୟନ୍ତ୍ରଣରେ ବୈଦ୍ୟୁତିକ ଶକ୍ତିର ବ୍ୟବହାର ସମ୍ଭବପର; କାରଣ ଏ କ୍ଷେତ୍ରରେ ଘର୍ଷଣ ବା ଉତ୍‌ଥାନ ପତନର ପ୍ରଶ୍ନ ନାହିଁ, ତାର ଛିଡ଼ିଯିବା କିମ୍ବା ସର୍କିଟ ବିଚ୍ଛିନ୍ନ ହୋଇଯିବାର ସମ୍ଭାବନା ମଧ୍ୟ ନାହିଁ । ସିଗନାଲ-ପ୍ରେରକର ନିକଟରେ ବାୟୁର ଆଧାର ଓ ପମ୍ପ ବସାଇ ଯଦି ସିଗନାଲ-ଷ୍ଟେସନ ଓ ଏଗୁଡ଼ିକ ମଧ୍ୟରେ ବୈଦ୍ୟୁତିକ ସର୍କିଟ ସ୍ଥାପନ କରାଯାଏ, ତେବେ ଦୂରରୁ ନିୟନ୍ତ୍ରଣର ବ୍ୟବସ୍ଥା ସମ୍ଭବ । ଗୋଟିଏ ସୁଇଚ ଟିପି ଦେଲମାତ୍ରେ ତାରଦ୍ୱାରା ବିଦ୍ୟୁତ୍‌ପ୍ରବାହ ସଞ୍ଚାଳିତ ହୋଇ ରେଲ୍‌ଲାଇନର ନିକଟବର୍ତ୍ତୀ ଭଲ୍‌ଭକୁ ସକ୍ରିୟ କରିବ । ସମସ୍ୟାର ଖୁବ୍ ସହଜ ସମାଧାନ । ଲମ୍ବାଲମ୍ବା ପାଇପର ଦରକାର ନାହିଁ କିମ୍ବା ମରାମତି ପାଇଁ ବିପୁଳ ବ୍ୟୟର ପ୍ରଶ୍ନ ନାହିଁ । ଯନ୍ତ୍ରରେ କୌଣସି ତ୍ରୁଟି ଦେଖାଗଲେ ସଙ୍ଗେ ସଙ୍ଗେ ତାହାର ପ୍ରତିକାର କରାଯାଇ ପାରିବ ।

ତାତ୍ତ୍ୱିକ ଦୃଷ୍ଟିରୁ ପଦ୍ଧତିଟି ସ୍ଥିର କଲାପରେ ନକ୍‌ସା ତିଆରି କରିବା ଜର୍ଜଙ୍କ ପକ୍ଷରେ କଷ୍ଟକର ନଥିଲା । କେବଳ ପ୍ରତ୍ୟେକ ଅଂଶକୁ ସାବଧାନତା ସହକାରେ ପରୀକ୍ଷାକରି ଯଥାସ୍ଥାନରେ ସ୍ଥାପନ କଲେ ହେଲା । ସେ ଏହି ପଦ୍ଧତିର ନାମ ଦେଇଥିଲେ 'ବିଦ୍ୟୁତ୍‌ବାୟୁବୀୟ ପଦ୍ଧତି' (Electro-pneumatic) । ନକ୍‌ସା ତିଆରି କଲାବେଳେ ଆହୁରି କେତେକ ନୂତନ ଚିନ୍ତାର ଉଦ୍ଭବ ହେଲା । ସେ ଦେଖିଲେ ଯେ ରେଲ୍‌ଲାଇନକୁ ବିଦ୍ୟୁତ୍‌ପ୍ରବାହର ମାଧ୍ୟମରୂପେ ବ୍ୟବହାର କରା-ଯାଇପାରେ । ଏହାଦ୍ୱାରା ଦୁଇଟି ସୁବିଧା ହେବ । ପ୍ରଥମତଃ ଏଥିରେ ତାର

ଲଗାଇବାର ଖରଚ ଉଣ୍ଡିଯିବ । ଦ୍ୱିତୀୟତଃ ଏହା ନିଜେ ନିଜେ ଦୁର୍ଘଟଣାର ଆଶଙ୍କା ଦୂର କରିପାରିବ । ଭୁଲକ୍ରମେ ସୁଇଚ ଦିଆଗଲେ ଅଥବା କୌଣସି ସ୍ଥଳରେ ରେଲଲାଇନ କ୍ଷତଗ୍ରସ୍ତ ହୋଇଥିଲେ ବିଦ୍ୟୁତ୍-ପ୍ରବାହ ସ୍ୱତଃ ବ୍ୟାହତ ହେବ । ଏହି କୌଶଳ ପ୍ରୟୋଗ କରି ଜର୍ଜ ଗୋଟିଏ 'ସ୍ୱୟଂକ୍ରିୟ ବିପଦସୂଚକ ସିଗନାଲ'ର ବ୍ୟବସ୍ଥା କଲେ । ଏହା ସଙ୍କୋଚିତ ବାୟୁର ସାହାଯ୍ୟରେ ଚାଳିତ ହେବ । ଯଦି କେବେ ବିପଦ-ସୂଚକ ସଙ୍କେତ ଇଞ୍ଜିନଚାଳକର ଦୃଷ୍ଟିରେ ନପଡ଼େ, ତେବେ ଗାଡ଼ିର ବ୍ରେକ ଆପେ ଆପେ ବନ୍ଦ ହେବାର ଗୋଟିଏ ଉପାୟ ମଧ୍ୟ ଜର୍ଜ ବାହାରିକଲେ ।

୧୮୮୦ ମସିହାର ଶରତଋତୁ ଶେଷ ହେଲା ବେଳକୁ ଜର୍ଜଙ୍କର ନକ୍ସା ଓ ମଡ଼େଲ ନିର୍ମାଣ ଶେଷ ହୋଇଗଲା । ସେ ବିଦ୍ୟୁତ୍-ବାୟୁବିୟ ପଦ୍ଧତିରେ ବାରଟି ସିଗନାଲ, ସୁଇଚ ଓ ପରିଯାନ ନିୟନ୍ତ୍ରଣର ଅନ୍ୟାନ୍ୟ ଉପକରଣ ପ୍ରସ୍ତୁତ କରିବାର କଳ୍ପନା କଲେ । ନକ୍ସା ଓ ମଡ଼େଲ ତିଆରି ହେବା ପରେ ସେ ରାଲ୍ଫ, କାର୍ଡ ଓ କମ୍ପାନୀର ଅନ୍ୟାନ୍ୟ ଅଂଶୀଦାରମାନଙ୍କୁ ସମସ୍ତ ବ୍ୟାପାର ବୁଝାଇଦେଇ ଏଥିରେ ଟଙ୍କା ଲଗାଇବା ସକାଶେ କହିବାକୁ ବିଚାର କଲେ । କିନ୍ତୁ ପରେ ସେ ସ୍ଥିର କଲେ ଯେ ଆଉ କିଛି ଦିନ ଅପେକ୍ଷା କରିବା ସମୀଚୀନ ହେବ । କମ୍ପାନୀର କେତେକ ପରିଚିତ କର୍ମକର୍ତ୍ତାଙ୍କ ସହିତ କଥାବାର୍ତ୍ତାରୁ ତାଙ୍କର ଧାରଣା ଜନ୍ମିଲା ଯେ ସେମାନେ କେହି କମ୍ପାନୀର ଟଙ୍କାକୁ ସ୍ୱୟଂକ୍ରିୟ ସିଗନାଲ ନିର୍ମାଣରେ ବ୍ୟୟ କରିବାକୁ ଇଚ୍ଛୁକ ନୁହନ୍ତି । ଜର୍ଜ ଅଂଶୀଦାରମାନଙ୍କୁ ଏହି ସିଗନାଲର ମଡ଼େଲ ଦେଖାଇଲେ ସୁଦ୍ଧା କେହି ସେଥିପ୍ରତି ଆଗ୍ରହ ପ୍ରକାଶ କଲେ ନାହିଁ । ଏବଂ କହିଲେ ଯେ ରେଲକମ୍ପାନୀ ଏପରି ଉନ୍ନତ ପଦ୍ଧତିର ପ୍ରଚଳନ ନିମିତ୍ତ ଅର୍ଥବ୍ୟୟ କରିପାରିବେ ନାହିଁ । ସେମାନେ ଜର୍ଜଙ୍କୁ ବୁଝାଇବାକୁ ଚେଷ୍ଟା କଲେ ଯେ ରେଲଶିଳ୍ପର ଉନ୍ନତି ହେଉଛି ଓ ସେମାନେ ଯଥେଷ୍ଟ ଲାଭ ପାଉଅଛନ୍ତି । ଭାଗ୍ୟଲକ୍ଷ୍ମୀ କରଗତ ହୋଇଥିବା ବେଳେ ତାଙ୍କୁ ଦୂରକୁ ଠେଲି ଦେବା କି ଦରକାର ?

ଅଂଶୀଦାରମାନଙ୍କର ଏପରି ସଙ୍କୀର୍ଣ୍ଣ ଦୃଷ୍ଟିକୋଣ ଦେଖି ସେ ବିସ୍ମିତ ହୋଇ ନଥିଲେ । ଅନ୍ୟମାନେ ଭବିଷ୍ୟତ ପ୍ରତି ଦୃଷ୍ଟି ଦେଇ

ଦୂରକୁ ଦେଖିପାରୁ ନାହାନ୍ତି । ଏହା ଫଳରେ ସେମାନେ ପରେ ଅନୁତାପ କରିପାରନ୍ତି । ଜର୍ଜ ସେମାନଙ୍କର ଏହି ମନୋବୃତ୍ତିର କାରଣ ଚିନ୍ତା କରିବାକୁ ଲାଗିଲେ । ମାତ୍ର ପରିସ୍ଥିତି ଲକ୍ଷ୍ୟ କରି ସେ ସ୍ଥିର କଲେ ଯେ ନିଜର ସହକର୍ମୀମାନଙ୍କୁ ଅର୍ଥ ବିନିଯୋଗ କରିବାକୁ ବର୍ତ୍ତମାନ କହିବା ବିଜ୍ଞତାର କାର୍ଯ୍ୟ ହେବନାହିଁ । ଗୋଟାଏ ଅନିଶ୍ଚିତ ଉଦ୍ୟମରେ ଟଙ୍କା ଖରଚ କରିବାକୁ ହେବ ଏବଂ ସେ ଖରଚ ସେ ନିଜେ ବହନ କରିବାହିଁ ଯୁକ୍ତିଯୁକ୍ତ ।

ଏହି ପରିସ୍ଥିତି ବିଷୟ ସେ ମାର୍ଗାରେଟଙ୍କୁ ବୁଝାଇ କହିଲେ । ସେ ସ୍ପଷ୍ଟ କହିଦେଲେ ଯେ ଏହି ଉଦ୍ୟମରେ ତାଙ୍କୁ ନିଜର ସମସ୍ତ ବ୍ୟକ୍ତିଗତ ସମ୍ପତ୍ତି ଖରଚ କରିବାକୁ ପଡ଼ିପାରେ । ହୁଏତ ପରିଣାମରେ ସବୁ ଅପବ୍ୟୟ ହୋଇପାରେ ।

ମାର୍ଗାରେଟ ପଚାରିଲେ, "ଏହି ଉଦ୍ୟମ କଅଣ ତୁମ ପକ୍ଷରେ ନିତାନ୍ତ ପ୍ରୟୋଜନ ?

ଜର୍ଜ—ହଁ, ଖୁବ୍ ପ୍ରୟୋଜନ ।

ମାର୍ଗାରେଟ – ତେବେ କଅଣ ଆମକୁ 'ନିଭୃତ ନିଳୟ' ମଧ୍ୟ ଛାଡ଼ିବାକୁ ପଡ଼ିବ ।

ଜର୍ଜ—ନା, 'ନିଭୃତ ନିଳୟ' ଛାଡ଼ିବା ଦରକାର ପଡ଼ିବ ବୋଲି ମନେ ହେଉ ନାହିଁ ।

୧୮୮୧ ମସିହାର ପ୍ରାରମ୍ଭରେ ଜର୍ଜ ଗୋଟିଏ ସ୍ୱତନ୍ତ୍ର କମ୍ପାନୀ ସ୍ଥାପନ କରିବେ ବୋଲି ଘୋଷଣା କଲେ । ତାହାର ନାମ ହେଲା, 'ୟୁନିୟନ ସୁଇଚ ଏଣ୍ଡ ସିଗନାଲ କମ୍ପାନୀ' । ଏହାର କାର୍ଯ୍ୟ ହେଲା ସ୍ୱୟଂକ୍ରିୟ ସିଗନାଲର ଯନ୍ତ୍ରପାତି ନିର୍ମାଣ । ପ୍ରଥମେ ପ୍ରଥମେ କମ୍ପାନୀର କାର୍ଯ୍ୟ ବଡ଼ ମନ୍ଥର ଗତିରେ ଚାଲିଲା । ଏହା ହେବ ବୋଲି ଜର୍ଜ ଆଗରୁ ଅନୁମାନ କରିଥିଲେ । ତଥାପି ସେ ପ୍ରାଣପଣେ ଚେଷ୍ଟା କରି ରେଲକମ୍ପାନୀମାନଙ୍କୁ ବୁଝାଇବାକୁ ଲାଗିଲେ ଯେ ଏହି ସ୍ୱୟଂକ୍ରିୟ ସିଗନାଲ ବିଶେଷ ସୁବିଧାଜନକ ହେବ ।

ସୁଖର ବିଷୟ ଏହି ଯେ ତାଙ୍କର ଏହି ଚେଷ୍ଟା ସମ୍ପୂର୍ଣ୍ଣ ବିଫଳ ହୋଇ ନ ଥିଲା । କେତେକ ରେଲକମ୍ପାନୀ ଏହି ପଦ୍ଧତିର ସିଗନାଲ ଯନ୍ତ୍ର କିଣି ବସାଇବା ପାଇଁ ଅର୍ଡ଼ର ଦେଲେ । ଏୟାରବ୍ରେକ ଉଦ୍ଭାବକ ହିସାବରେ ଜର୍ଜଙ୍କର ଯେଉଁ ସୁଖ୍ୟାତି ହୋଇଥିଲା, ସେହି ଖାତିରରେ ସେମାନେ ଏହି ଅର୍ଡ଼ର ଦେଇଥିଲେ । ଯନ୍ତ୍ର ଚାଲୁହେବାପରେ ଯେଉଁମାନେ କମ୍ପାନୀରେ ଟଙ୍କା ଲଗାଇଥିଲେ, ସେମାନେ ଉତ୍ସାହିତ ହେଲେ ସତ୍ୟ; କିନ୍ତୁ ସର୍ବସାଧାରଣ ଏଥିରେ ଆସ୍ଥା ସ୍ଥାପନ କରି ପାରି ନଥିଲେ । ଏୟାରବ୍ରେକ ଯେପରି ଲୋକ ସାଧାରଣ ଦ୍ୱାରା ଆଦରରେ ଗୃହୀତ ହୋଇଥିଲା, ସ୍ୱୟଂକ୍ରିୟ ସିଗନାଲ ସେହିପରି ଆଦୃତ ହେବାକୁ କେତେକ ବର୍ଷ ଚାଲି ଯାଇଥିଲା । ପ୍ରଥମେ ଯେଉଁ କମ୍ପାନୀମାନେ ସ୍ୱୟଂକ୍ରିୟ ସିଗନାଲ ପାଇଁ ଅର୍ଡ଼ର ଦେଇଥିଲେ, ସେମାନଙ୍କ ମଧ୍ୟରୁ ଗୋଟିଏ ହେଉଛି ପେନସିଲଭାନିଆ ରେଲରୋଡ଼ର ଏକ ଶ୍ରେଣ୍ଠ କମ୍ପାନୀ । ଏହି କମ୍ପାନୀର ସୁପରିଣ୍ଟେଣ୍ଡେଣ୍ଟଙ୍କ ପତ୍ରଟି ବିଶେଷ ଉତ୍ସାହପ୍ରଦ ଥିଲା । ସେ ଏଥିରେ ଲେଖିଥିଲେ—

"ରେଲକମ୍ପାନୀର କର୍ମୀମାନେ ଯଦି ଜଣେ ଧର୍ମଗୁରୁ ନିର୍ବାଚନ କରନ୍ତି ତେବେ ଜର୍ଜ ଓ୍ୱେଷ୍ଟିଂହାଉସଙ୍କ ନାମ ଅନୁସାରେ ତାଙ୍କର ନାମ ସେଣ୍ଟ ଜର୍ଜ ହେବା ଉଚିତ ।"

---

## ଦଶ

# ଭୂଗର୍ଭରୁ ଶକ୍ତି

୧୮୮୩ମସିହାର ଗ୍ରୀଷ୍ମକାଳରେ ମାର୍ଗାରେଟଙ୍କର ସନ୍ତାନ ସମ୍ଭାବନା ଦେଖାଗଲା ।

ସନ୍ତାନଲାଭର ଆଶାରେ ଜର୍ଜ ଅତ୍ୟନ୍ତ ଆନନ୍ଦିତ ହେଲେ । ମାତ୍ର ୩୭ବର୍ଷ ବୟସରେ ଜର୍ଜ ସମଗ୍ର ଦେଶରେ ଜଣେ ଶିଳ୍ପପତିରୂପେ ପ୍ରତିଷ୍ଠା ଲାଭ କରିଥିଲେ । ଧନ ଓ ଯଶର ଅଭାବ ନ ଥିଲା; ବିଶେଷତଃ ନିଜର ପ୍ରିୟତମ କାର୍ଯ୍ୟ ଉଦ୍ଭାବନରେ ସାଫଲ୍ୟ ଲାଭ ହେଲୁ ତାଙ୍କର ମନରେ ସନ୍ତୋଷ ଥିଲା । ସେ ଓ ମାର୍ଗାରେଟ, ଦୁହିଁଙ୍କର ପାରିବାରିକ ଜୀବନ ସୁଖମୟ ଥିଲା; କିନ୍ତୁ ଅଭାବ ନ ଥିଲା କହିଲେ ଚଳେ । ସେମାନେ ଜୀବନରେ ଯେଉଁ ସୁଖସୌଭାଗ୍ୟ ପାଇଥିଲେ ସେଥିପାଇଁ ନିଜକୁ କୃତାର୍ଥ ମନେ କରୁଥିଲେ । କିନ୍ତୁ ଗୋଟିଏ ବିଷୟରେ ବିଧାତା ସେମାନଙ୍କ ପ୍ରତି ପ୍ରସନ୍ନ ନ ଥିଲେ ବୋଲି ସେମାନେ ଭାବୁଥିଲେ । ଷୋଳ ବର୍ଷକାଳ ବୈବାହିକ ଜୀବନ ଯାପନ କରି ମଧ୍ୟ ସେମାନେ ନିଃସନ୍ତାନ ଥିଲେ; ସନ୍ତାନ ପ୍ରାପ୍ତିର ଆଶା ପ୍ରାୟ ଛାଡ଼ି ଦେଇଥିଲେ । ଏହି ସମୟରେ ତାଙ୍କ ପରିବାରର ଚିକିତ୍ସକ ଜଣାଇଲେ ଯେ ମାର୍ଗରେଟ ଗର୍ଭବତୀ ହୋଇ ଅଛନ୍ତି ।

ଏହି ସମ୍ବାଦରେ ଜର୍ଜ ହଠାତ୍ ଟିକିଏ ବିସ୍ମିତ ହୋଇଗଲେ । ସ୍ୱଭାବତଃ ସେ ସମ୍ପଦରେ ସ୍ଫୀତ ହେଉ ନ ଥିଲେ କି ଆପଦରେ ଅଧୀର ହୋଇ ପଡ଼ୁନଥିଲେ; କିନ୍ତୁ ଏହି ସମ୍ବାଦ ଶ୍ରବଣରେ ଅନ୍ୟ କୌଣସି ପିତାପରି ସେ ବଡ଼ ଉଦ୍‌ବିଗ୍ନ ହୋଇ ପଡ଼ିଲେ । ତାଙ୍କର ଏହି ଉଦ୍‌ବେଗ ଲକ୍ଷ୍ୟକରି ମାର୍ଗାରେଟ ଆଶ୍ୱାସନା ଦେଇ କହିଲେ, "ଏଥିରେ ଚିନ୍ତିତ

ହେବାର କିଛି କାରଣ ନାହିଁ; ଜଗତରେ ଚିରକାଳ ଧରି ସନ୍ତାନ ଜନ୍ମି ଆସୁଛନ୍ତି । ମୋର ସେହିପରି ସନ୍ତାନଟିଏ ଜନ୍ମିବ । ଏ ତ ଅତି ସ୍ୱାଭାବିକ କଥା ।"

କିନ୍ତୁ ଜର୍ଜଙ୍କର ଚିନ୍ତା ସହଜେ ଦୂର ହେଲ ନାହିଁ । ଏତେ ଦିନ ହେଲ ଯେତେବେଳେ ସନ୍ତାନ ହୋଇନାହିଁ, ସେତେବେଳେ ଜଣେ ବିଶେଷଜ୍ଞଙ୍କର ସାହାଯ୍ୟ ନେବା ଉଚିତ ବୋଲି ସେ ସ୍ଥିର କଲେ । ସେ କହିଲେ, "ଦେଖ ମାର୍ଗାରେଟ, ଭଗବାନଙ୍କର ଲୀଳା ବୁଝିବା ଆମ ପକ୍ଷରେ ଅସମ୍ଭବ । ଆମକୁ ଏତେ ଦିନ ପର୍ଯ୍ୟନ୍ତ ସନ୍ତାନ ମୁଖଦର୍ଶନରୁ ବଞ୍ଚିତ କରି ରଖିବାରେ ଭଗବାନଙ୍କର ନିଶ୍ଚୟ କିଛି ଉଦ୍ଦେଶ୍ୟ ଥିବ । ଭଗବାନ ଆମକୁ ଦୟା କରିବାକୁ ଆସୁଥିବାବେଳେ ଆମେ ସବୁ କଥା ଦୈବ ଉପରେ ଛାଡ଼ି ଦେଇ ବସିବା ଠିକ୍ ହେବ ନାହିଁ ।"

ଚିକିତ୍ସକଙ୍କୁ ନିଜର ଅଭିପ୍ରାୟ ଜଣାଇବାରୁ ସେ କହିଲେ, "ଗର୍ଭ ସାଧାରଣ ଭାବରେ ହୋଇଛି ; ସନ୍ତାନ ପ୍ରସବରେ ଅସୁବିଧା ହେବାର କୌଣସି କାରଣ ନାହିଁ । ତୁମ୍ଭର ଯଦି ଆଶଙ୍କା ହେଉଛି, ତେବେ ଉପଯୁକ୍ତ ସତର୍କତା ଅବଲମ୍ବନ କଲେ କ୍ଷତି ନାହିଁ । ଆମେ ଡାକ୍ତର ହୋଇଛୁ ବୋଲି ଯେ ସବୁ ଜାଣୁ ତା କୁହାଯାଇ ନ ପାରେ ।"

ପିଟସବର୍ଗରେ ସେପରି ବିଶେଷଜ୍ଞଙ୍କ ସଂଖ୍ୟା ବିରଳ ହୋଇଥିବାରୁ ନ୍ୟୁୟର୍କର ଜଣେ ପ୍ରସିଦ୍ଧ ବିଶେଷଜ୍ଞଙ୍କର ସାହାଯ୍ୟ ନେବାପାଇଁ ଡାକ୍ତର ପରାମର୍ଶ ଦେଲେ । ଶୀତଋତୁର ପ୍ରାରମ୍ଭରେ ଜର୍ଜ ମାର୍ଗାରେଟଙ୍କୁ ସଙ୍ଗରେ ନେଇ ନ୍ୟୁୟର୍କର ଗୋଟିଏ ଉତ୍ତମ ହୋଟେଲରେ ଘରଭଡ଼ା ନେଇ ରହିଲେ ।

ଜର୍ଜଙ୍କ ଅନୁରୋଧରେ ମାର୍ଗାରେଟ ନିୟମିତ ଭାବରେ ବିଶେଷଜ୍ଞଙ୍କ ନିକଟକୁ ଯିବାକୁ ଲାଗିଲେ । ନୂତନ ବର୍ଷ ଆରମ୍ଭର ପରେ ପରେ ମାର୍ଗାରେଟ ହାସପାତାଳରେ ପ୍ରବେଶ କଲେ । ସ୍ୱାଭାବିକତାରେ ପୁତ୍ର-ସନ୍ତାନଟିଏ ଜନ୍ମ ହେବାରୁ ଜର୍ଜଙ୍କର ଚିନ୍ତା ଦୂରହେଲ । ସେଦିନ ମାର୍ଗାରେଟ ପ୍ରସୂତି ଗୃହରେ ଥିଲ ବେଳେ ଜର୍ଜ ବାହାର ଘରେ ଅସ୍ଥିର ଭାବରେ ପାଦଚାରଣା କରୁଥିଲେ । ଏହି ସମୟରେ ଚିକିତ୍ସକ ଆସି

କହିଲେ, "ମିଷ୍ଟର ଓ୍ୱେଷ୍ଟିଂହାଉସ, ସୁଖର ବିଷୟ ଏହି ଯେ ତୁମ୍ଭେ ଗୋଟିଏ ସୁସ୍ଥ ସବଳ ପୁତ୍ରସନ୍ତାନ ଲାଭ କରିଅଛ ।" ଏହି ସୁସମ୍ବାଦରେ ଜର୍ଜଙ୍କର ଚକ୍ଷୁ ଆନନ୍ଦାଶ୍ରୁରେ ପୂରିଗଲା; କଣ୍ଠ ଗଦ୍‌ଗଦ୍ ହୋଇ ଆସିଲା । ସେ ଚିକିତ୍ସକଙ୍କୁ ଧନ୍ୟବାଦ ଜଣାଇବାକୁ ଇଚ୍ଛା କରିଥିଲେହେଁ ତାଙ୍କ ତୁଣ୍ଡରୁ କଥା ବାହାରିଲା ନାହିଁ ।"

ପିତାମାତା ସନ୍ତାନଟିର ନାମ ଦେଲେ 'ଜର୍ଜ' ।

ସେ ବର୍ଷ ନ୍ୟୁୟର୍କରେ ଖୁବ୍ ଶୀତ । ଉତ୍ତାପର ମାତ୍ରା ଶୂନ୍ୟର ତଳକୁ ଖସି ପଡ଼ିଥିଲା । ରାସ୍ତାଗୁଡ଼ିକ ପ୍ରାୟ ସର୍ବଦା ବରଫଦ୍ୱାରା ଆଚ୍ଛନ୍ନ ରହିଥିଲା । ତେଣୁ ଜର୍ଜ ଓ ମାର୍ଗାରେଟ ନ୍ୟୁୟର୍କ ତ୍ୟାଗ କରିବାକୁ ଇଚ୍ଛୁକ ଥିଲେ ମାତ୍ର ଚିକିତ୍ସକ ପରାମର୍ଶ ଦେଲେ ଯେ ଶିଶୁଟିକୁ ଅନ୍ତତଃ ମାସେ ହେବା ପର୍ଯ୍ୟନ୍ତ ସେମାନେ ନ୍ୟୁୟର୍କରେ ରହିବା ଉଚିତ । ଏଠାରେ ଜର୍ଜଙ୍କ ହାତରେ ଯଥେଷ୍ଟ ସମୟ ଥିଲା । ସେ କିଛି ନା କିଛି କାର୍ଯ୍ୟରେ ନିଯୁକ୍ତ ରହିବାକୁ ଚେଷ୍ଟା କରୁଥିଲେ । ମାର୍ଗାରେଟ ସମୟେ ସମୟେ ଶିଶୁଟିର ଯତ୍ନ ନେଉଥିଲେ; କେତେବେଳେ ଅବା ବଜାରକୁ ଯାଇ ଜିନିଷ ଖରିଦ କରୁଥିଲେ । ଏଣେ ଜର୍ଜ କମ୍ପାନୀର ପୂର୍ବାଞ୍ଚଳୀୟ ପ୍ରତିନିଧିମାନଙ୍କ ସଙ୍ଗେ ଆଲୋଚନା କରୁଥିଲେ ଏବଂ ବ୍ୟବସାୟ ସମ୍ବନ୍ଧୀୟ ଅନ୍ୟାନ୍ୟ କାର୍ଯ୍ୟ ଦେଖୁଥିଲେ । ଜର୍ଜଙ୍କର ପିତାମାତା ନାତିକୁ ଦେଖିବା ପାଇଁ ଶେନେକଟାଡିରୁ ଆସି ନ୍ୟୁୟର୍କରେ ଉପସ୍ଥିତ ହେଲେ । ସେମାନଙ୍କ ସଙ୍ଗରେ ହର୍‌ମାନ ମଧ୍ୟ ଆସିଥିଲା । ଜର୍ଜ ସ୍ଥିର କଲେ ଯେ ହର୍‌ମାନ ପିଟସବର୍ଗକୁ ଯାଇ ୟୁନିୟନ ସୁଇଚ ଏଣ୍ଡ ସିଗନାଲ କମ୍ପାନୀରେ କାମ କଲେ ଭଲ ହେବ । ତାହାହେଲେ ସେ ମୂଳରୁ ବ୍ୟବହାରିକ ଇଞ୍ଜିନିଅରିଂ ଶିକ୍ଷା କରିପାରିବ ।

ନିଜକୁ କାର୍ଯ୍ୟରେ ନିଯୁକ୍ତ ରଖିବାକୁ ଚେଷ୍ଟା କଲେ ମଧ୍ୟ ଜର୍ଜଙ୍କର ମନ ଅସ୍ଥିର ହେଉଥିଲା । ଶୀଘ୍ର ପିଟସବର୍ଗକୁ ଯାଇ ନିଜର ଉତ୍ପାଦନ କାର୍ଯ୍ୟରେ ଲାଗିବାକୁ ସେ ବିଶେଷ ଇଚ୍ଛୁକ ଥିଲେ । ସେ ଏହି ଅଭିପ୍ରାୟ ମାର୍ଗାରେଟଙ୍କ ନିକଟରେ ପ୍ରକାଶ କଲେ । ମାର୍ଗାରେଟ ଅନୁଯୋଗ କରି କହିଲେ, "ଆମକୁ ଆଉ କିଛିଦିନ ନ୍ୟୁୟର୍କରେ ରହିବାକୁ

ହେଉଅଛୁ । ଏ ତ ଏକ ଅପୂର୍ବ ସୁଯୋଗ । ମନେକର, ଆମେ ଗୋଟାଏ ଦୀର୍ଘ ଅବକାଶ ଉପଭୋଗ କରୁଥାଏଁ । ପ୍ରଥମେ ତୁମର ଇଚ୍ଛା ଅନୁସାରେ ଏଠାକୁ ଆସିବାକୁ ହୋଇଥିଲା । ଏବେ ଭାବନାଅ ଯେ ଆମର ଅବକାଶର ସମୟ ବୃଦ୍ଧି ପାଇଛି ।"

ଜର୍ଜ ମନେ ମନେ କହିଲେ, "ସ୍ତ୍ରୀମାନଙ୍କୁ ପୁରୁଷର କର୍ତ୍ତବ୍ୟ ବିଷୟ ବୁଝାଇ କହି ଲାଭ ନାହିଁ ।"

ଯଦି ଶିଶୁସନ୍ତାନଟିର ନିକଟରେ ତାଙ୍କର ସମୟ କଟୁଥାନ୍ତା, ତାହାହେଲେ ଜର୍ଜ ଏହି ଅବକାଶକୁ ଉପଭୋଗ କରି ପାରୁଥାନ୍ତେ; କିନ୍ତୁ ବର୍ଷୀୟସୀ ପରିଚାରିକାର କଠୋର ଆଦେଶ ଯେ ସେ କେବଳ ନିର୍ଦ୍ଦିଷ୍ଟ ସମୟ ଅନ୍ତରରେ ଅଳ୍ପକାଳ ପାଇଁ ପୁଅ ପାଖରେ ରହିବେ । ଏପରିକି ସେ ଏ ବିଷୟରେ ମାର୍ଗାରେଟଙ୍କୁ ମଧ୍ୟ ଉପଦେଶ ଦେଇଥିଲା ।

ସମୟ କଟାଇବା ପାଇଁ ଜର୍ଜ ପିଟସବର୍ଗର ଖବରକାଗଜ ମଗାଇ ପ୍ରତ୍ୟେକ ସ୍ଥାନୀୟ ସମ୍ବାଦଗୁଡ଼ିକ ତନ୍ନ ତନ୍ନ କରି ପଢ଼ୁଥିଲେ । ଏହି ସମ୍ବାଦ-ପତ୍ରରୁ ଦିନେ ସେ ଜାଣିବାକୁ ପାଇଲେ ଯେ ପିଟସବର୍ଗ ସହର ନିକଟ ଅଞ୍ଚଳର ମରିସଭିଲ ନାମକ ସ୍ଥାନରେ ଖଣିଜ ଗ୍ୟାସର ସନ୍ଧାନ ମିଳିଅଛି ଓ ବ୍ୟବସାୟ ଭିତ୍ତିରେ ଏହାର ବିକାଶସାଧନ କରି ଯାଉଅଛି ।

ଜର୍ଜ ଗଭୀର ଉତ୍ସାହ ସହକାରେ ଏହି ସମ୍ବାଦଟି ବାରମ୍ବାର ପାଠକଲେ । ଗତ କେତେ ବର୍ଷ ହେଲା ଗ୍ୟାସ ଉପରେ ଲୋକମାନଙ୍କର ଦୃଷ୍ଟି ବିଶେଷଭାବରେ ପଡ଼ିଥିଲା । ଜାଳିବା ଉଦ୍ଦେଶ୍ୟରେ ଗ୍ୟାସର ବ୍ୟବହାର ବହୁପୂର୍ବରୁ ଜଣା ଥିଲା । ବିଗତ ଦଶ ବର୍ଷ ମଧ୍ୟରେ ଗୃହକୁ ଆଲୋକିତ କରିବା ଉଦ୍ଦେଶ୍ୟରେ ଏହା ବହୁଳ ଭାବରେ ବ୍ୟବହୃତ ହେଉଥିଲା । କୋଇଲାରୁ ଗ୍ୟାସ ଉତ୍ପାଦନ କରାଯାଇ ବିଶେଷ ପ୍ରଣାଳୀରେ ନିର୍ମିତ ଟ୍ୟାଙ୍କଦ୍ୱାରା ଏହା ଏକ ସ୍ଥାନରୁ ସ୍ଥାନାନ୍ତରକୁ ନିଆ ଯାଉଥିଲା । ଏହାର ଆଲୋକ ପୂର୍ବ ଯୁଗର ତେଲବତୀର ଆଲୋକ ଅପେକ୍ଷା ଯଥେଷ୍ଟ ଉଜ୍ଜ୍ୱଳ ଓ ପରିଷ୍କୃତ ଥିଲା ।

ଗତବର୍ଷ ପୂର୍ବେ ୧୮୭୯ ମସିହାରେ ଟମାସ ଆଲଭା ଏଡସନ ନାମକ ଜଣେ ଅଳ୍ପ ବୟସ୍କ ବୈଜ୍ଞାନିକଙ୍କର ବିଜୁଳିବତି ଶତବାର୍ଷିକୀ ଉତ୍ସବରେ ବିଶେଷ ପ୍ରଶଂସା ଲାଭ କରିଥିଲା ଓ ଏହା ଗୋଟିଏ ଅଦ୍ଭୁତ ଆବିଷ୍କାର ବୋଲି ସ୍ୱୀକୃତ ହୋଇଥିଲା । ଏଡସନଙ୍କର ଏହି ଆବିଷ୍କାର ଫଳରେ ଗ୍ୟାସ ଆଲୋକ ଯୁଗର ଅବସାନ ହୋଇ ଆସିଥିଲା ଓ ଗ୍ୟାସ କମ୍ପାନୀଗୁଡ଼ିକ ଭାଙ୍ଗି ଯିବାର ଉପକ୍ରମ ହୋଇଥିଲା ।

କେତେକ ଦୂରଦର୍ଶୀ ଇଞ୍ଜିନିଅର ଭବିଷ୍ୟତ୍‌ବାଣୀ କରିଥିଲେ ଯେ ବିଜୁଳିବତି ଗ୍ୟାସ ଆଲୋକର ସ୍ଥାନ ଅଧିକାର କରିଥିଲେହେଁ ଗ୍ୟାସ-ବ୍ୟବହାରର ଅନ୍ୟାନ୍ୟ ସମ୍ଭାବନା ଅଛି । ସେମାନେ କହୁଥିଲେ ଯେ ରନ୍ଧନ କାର୍ଯ୍ୟରେ, ଗୃହକୁ ଉତ୍ତାପ ଦେବାରେ ଗ୍ୟାସ ବ୍ୟବହାର କରି-ଯାଇପାରିବ । ମାତ୍ର ସେମାନଙ୍କର ଏହି ଚିନ୍ତା କେବଳ କଳ୍ପନାରେ ପର୍ଯ୍ୟବସିତ ହୋଇ ରହିଥିଲା; କାରଣ ଏ ସବୁ ଉଦ୍ଦେଶ୍ୟରେ ଯେଉଁ ବହୁପରିମିତ ଗ୍ୟାସ ଆବଶ୍ୟକ, ତାହା କୋଇଲାରୁ ଉତ୍ପାଦନ କରି ବିଭିନ୍ନ ସ୍ଥାନକୁ ନେବା ସମ୍ପୂର୍ଣ୍ଣ ଅସମ୍ଭବ ବୋଲି ଲୋକେ ବିଚାରୁଥିଲେ । ଗ୍ୟାସବିଶାରଦମାନେ କହୁଥିଲେ ଯେ ଯଦି ଖଣିଜ ଗ୍ୟାସ କୌଣସି ସ୍ଥାନରେ ଶିଳ୍ପାଞ୍ଚଳର ନିକଟରେ ବା ବାସଗୃହ ନିକଟରେ କୂପ ଆକାରରେ ବାହାରେ ତେବେ ଏହା ଅକ୍ଳେଶରେ କୋଇଲା ଗ୍ୟାସ ପରିବର୍ତ୍ତେ ବ୍ୟବହୃତ ହୋଇପାରିବ । ଆହୁରି ମଧ୍ୟ କୋଇଲା ଗ୍ୟାସ ପରି ଏହା ବହୁ ବ୍ୟୟସାଧ ହେବ ନାହିଁ ।

ପିଟସବର୍ଗଠାରୁ ମାତ୍ର କୋଡ଼ିଏ ମାଇଲ ଦୂରରେ ଖଣିଜ ଗ୍ୟାସ ଆବିଷ୍କୃତ ହୋଇଥିବା ସମ୍ବାଦଟି ପଢ଼ିବା ବେଳେ ଜର୍ଜ ଏହି ସବୁ ବିଷୟ ଚିନ୍ତା କରୁଥିଲେ । ସେ ମନେ ମନେ ଏହି ଆବିଷ୍କାରର ଭବିଷ୍ୟତ ସମ୍ଭାବନା ସମ୍ବନ୍ଧରେ କଳ୍ପନା କରିବାକୁ ଲାଗିଲେ । ଯଦି ଇଞ୍ଜିନିଅର-ମାନଙ୍କ ଭବିଷ୍ୟତ୍ ବାଣୀ ସତ୍ୟ ହୁଏ ଏବଂ ପ୍ରଚୁର ପରିମାଣରେ ଖଣିଜ ଗ୍ୟାସ ମିଳେ, ତାହା ହେଲେ ଏହି ଗ୍ୟାସ ଲକ୍ଷ ଲକ୍ଷ ଗୃହରେ ଆଲୋକ ଦେଇପାରିବ, ସହସ୍ର ସହସ୍ର କାରଖାନାରେ ବ୍ୟବହୃତ ହୋଇପାରିବ । ସେମାନେ ଆଉ କୋଇଲା ଉପରେ ନିର୍ଭର କରିବା ଦରକାର ପଡ଼ିବ ନାହିଁ । ଜର୍ଜଙ୍କର ବିଶ୍ୱାସ ଜନ୍ମିଲା ଯେ ଖଣିଜ ଗ୍ୟାସର ସମ୍ଭାବନା ଅସୀମ ।

ଭୂତତ୍ତ୍ୱବିଦ୍ୟାରେ ତାଙ୍କର ଆଦୌ ପ୍ରବେଶ ନ ଥିଲା । ସେ ନ୍ୟୁୟର୍କ ଲାଇବ୍ରେରୀକୁ ଯାଇ ଏ ବିଷୟରେ ଯାହା କିଛି ବହି ପାଇଲେ, ସେସବୁ ପଢ଼ିଲେ । ଏଥିରୁ ସେ ଜାଣିପାରିଲେ ଯେ କୌଣସି ସ୍ଥାନରେ ଖଣିଜ ଗ୍ୟାସ ବା ତୈଳ ବାହାରିଲେ ବୁଝିବାକୁ ହେବ ଯେ ତାହାର ନିକଟବର୍ତ୍ତୀ ସ୍ଥାନମାନଙ୍କର ଭୌଗୋଳିକ ପ୍ରକୃତି ସମାନ ହୋଇଥିଲେ ସେ ଅଞ୍ଚଳରେ ଖଣିଜ ଗ୍ୟାସ ବା ତୈଳଥିବାର ସମ୍ଭାବନା ଅଛି । ଏହା ପଢ଼ିଲାକ୍ଷଣି ତାଙ୍କର କଳ୍ପନା ଆହୁରି ଦୂରକୁ ଉଡ଼ିଗଲା । ସେ ଭାବିଲେ ଯେ କେବଳ ଯେ ମରିସଭିଲରେ ଖଣିଜଗ୍ୟାସ ଅଛି, ତାହା ନୁହେଁ; ସମଗ୍ର ପିଟସବର୍ଗ ଅଞ୍ଚଳରେ ଏହା ମିଳି ପାରିବ । କେବଳ ଏତିକି ନୁହେଁ । ସେ କଳ୍ପନାରେ ଏତେ ଦୂର ଭାସିଗଲେ ଯେ ତାଙ୍କ 'ନିଭୃତ ନିଳୟ'ର ନିମ୍ନ ଦେଶରେ ମଧ୍ୟ ପ୍ରାକୃତିକ ଗ୍ୟାସର ଭଣ୍ଡାର ଅଛି ବୋଲି ତାଙ୍କର ବିଶ୍ୱାସ ହେଲା ।

ମାର୍ଚ୍ଚ ମାସରେ ମାର୍ଗାରେଟ ଓ ଶିଶୁପୁତ୍ରକୁ ନେଇ ଜର୍ଜ ପିଟସବର୍ଗକୁ ଫେରି ଆସିଲେ । ସେଠାରେ ପହଞ୍ଚିବାମାତ୍ରେ ସେ ମରିସଭିଲକୁ ଯାଇ ସେଠାରେ ଖଣିଜ ଗ୍ୟାସର କୂପଗୁଡ଼ିକୁ ଉତ୍ତମରୂପେ ପର୍ଯ୍ୟବେକ୍ଷଣ କଲେ ଏବଂ ସେଠାରେ କାର୍ଯ୍ୟ କରୁଥିବା ଇଞ୍ଜିନିଅରମାନଙ୍କଠାରୁ ଗ୍ୟାସ କୂପ ଖନନ ବିଷୟରେ ଯଥାସମ୍ଭବ ଜ୍ଞାନ ଆହରଣ କଲେ । ଶେଷରେ ଜଣେ ତରୁଣ ଇଞ୍ଜିନିଅରଙ୍କୁ ପ୍ରଚୁର ପାରିଶ୍ରମିକ ଦେଇ କୌଣସି ଛୁଟିଦିନ ତାଙ୍କ ନିଭୃତନିଳୟକୁ ଯାଇ ଏହାର ନିକଟସ୍ଥ ଭୂମି ପରୀକ୍ଷା କରିବାକୁ କହିଲେ ।

ପରବର୍ତ୍ତୀ ରବିବାର ଦିନ ଉକ୍ତ ଇଞ୍ଜିନିଅର ନିଭୃତନିଳୟରେ ଉପସ୍ଥିତ ହେଲେ । ସେ ଏହାର ଚତୁଃପାର୍ଶ୍ୱସ୍ଥ ଭୂମିରେ ଇତସ୍ତତଃ ଭ୍ରମଣ କରି କେତେକ ସ୍ଥାନର ମାଟିକୁ ସୁଙ୍ଘିଲେ, ଚାଖିଲେ ବା ହାତରେ ଗୁଣ୍ଡ କରି ପରୀକ୍ଷା କଲେ ।

ଶେଷରେ ସେ ବହୁତ ଭାବିଚିନ୍ତି କହିଲେ, "ଏଠାରେ ଖଣିଜଗ୍ୟାସ ଥାଇପାରେ । ଏ ସ୍ଥାନର ମାଟିର ଉପାଦାନ ଅନେକ ପରିମାଣରେ ମରିସଭିଲର ମାଟିର ଉପାଦାନ ପରି । ଆମ୍ଭେମାନେ ଜାଣି ପାରୁଛୁ ଯେ ଏ ସମଗ୍ର ଅଞ୍ଚଳର ଭୂତାତ୍ତ୍ୱିକ ଗଠନ ଏକାପରି । ତେଣୁ ମୁଁ କହି

ପାରେ ଯେ ଏଠାରେ ଖଣିଜଗ୍ୟାସ ଥିବାର ସମ୍ଭାବନା ଅଛି । ମାତ୍ର ଏହା ନିଶ୍ଚିତ ଅଛି ବୋଲି କୁହାଯାଇ ନ ପାରେ । ଏପରି ଖଣିଜଗ୍ୟାସ ଅଛି କି ନା ତାହା ନିଶ୍ଚିତରୂପେ ଜାଣିବାକୁ ହେଲେ ପରୀକ୍ଷାମୂଳକ ଭାବେ ଗୋଟିଏ କୂପ ଖନନ କରିବା ଆବଶ୍ୟକ ।"

ଏପରି ଏକ କୂପଖନନର ଆନୁମାନିକ ବ୍ୟୟ କେତେ ହେବ ବୋଲି ପଚାରିବାରୁ ଇଞ୍ଜିନିଅର ଟିକିଏ ଚିନ୍ତା କରି କହିଲେ, "ପ୍ରାୟ ପାଞ୍ଚ ହଜାର ଡଲାର ଲାଗିପାରେ ।"

ସେ ଦିନ ସନ୍ଧ୍ୟାବେଳେ ଜର୍ଜ ମାର୍ଗାରେଟଙ୍କ ସହିତ ଏ ବିଷୟରେ ପରାମର୍ଶ କଲେ । ଘର ପାଖରେ ଗୋଟାଏ ଯନ୍ତ୍ର ଦିନରାତି ଘର୍ଘର ଶବ୍ଦ କରୁଥିବ; ଏହା ଜାଣି ପ୍ରଥମେ ମାର୍ଗାରେଟ ଏ ପ୍ରସ୍ତାବରେ ବିଶେଷ ଉତ୍ସାହ ପ୍ରକାଶ କଲେ ନାହିଁ । ଶେଷରେ ସେ କହିଲେ ଯେ କୂପଖନନ ବିଷୟରେ ତାଙ୍କର ଆପତ୍ତି ନାହିଁ; କିନ୍ତୁ ସେଇଟି ଘରପାଖରୁ ଅନ୍ତତଃ ଶହେ ଗଜ ଦୂରରେ ହେବା ଆବଶ୍ୟକ ।

ପରବର୍ତ୍ତୀ ସପ୍ତାହ ମଧ୍ୟରେ ଜର୍ଜ କୂପଖନନ ଉଦ୍ଦେଶ୍ୟରେ ଦଳେ ଲୋକ ନିଯୁକ୍ତ କଲେ ଏବଂ ସେମାନଙ୍କ ପରାମର୍ଶ ଅନୁସାରେ ଏହି ଖନନ ପାଇଁ ଅସ୍ତାବଳର ପଶ୍ଚାଦ୍‌ଭାଗରେ ଗୋଟିଏ ସ୍ଥାନ ନିରୂପଣ କଲେ । ଏହାପରେ ତିନି ସପ୍ତାହ ପର୍ଯ୍ୟନ୍ତ ଦିବାରାତ୍ର ଖନନ କାର୍ଯ୍ୟ ଚାଲିଲା । ଖୋଦନ ଯନ୍ତ୍ର କ୍ରମଶଃ ଭୂମିଗର୍ଭକୁ ପ୍ରବେଶ କରୁଥାଏ । ତାହା ସଙ୍ଗେ ସଙ୍ଗେ ଯନ୍ତ୍ରର ଘର୍ଘର ଶବ୍ଦରେ 'ନିଭୃତ ନିଳୟ' ଅହରହ ଶବ୍ଦାୟମାନ ହେଉଥାଏ ।

ପ୍ରତିଦିନ ସନ୍ଧ୍ୟା ସମୟରେ ଜର୍ଜ ସହରରୁ ଫେରି କୌଣସିମତେ ଭୋଜନ ଶେଷକରି ଦେହରେ ନିଜର ପୁରୁଣା ପୋଷାକ ପିନ୍ଧି ଖୋଦନ-କାର୍ଯ୍ୟ ଦେଖିବାକୁ ଚାଲି ଯାଉଥିଲେ । ତାଙ୍କର କେତେକ ବନ୍ଧୁ ଓ ପ୍ରତିବେଶୀ ମଧ୍ୟ ତାଙ୍କ ସଙ୍ଗେ ଯୋଗ ଦେଉଥିଲେ । ପ୍ରତିଦିନ ରାତିରେ ଏହି କାର୍ଯ୍ୟ ଦେଖିବା ତାଙ୍କର ଏକ ନିୟମିତ ବ୍ୟାପାରରେ ପରିଣତ ହୋଇଥିଲା ।

ପନ୍ଦରଶହ ଫୁଟ ଗର୍ତ୍ତ ହେବା ପରେ ସାମାନ୍ୟ ଗ୍ୟାସର ଚିହ୍ନ ମାତ୍ର ମିଳିଲା । କ୍ରମେ ଜର୍ଜ ହତାଶ ହୋଇ ପଡ଼ିଲେ । ଦିନେ ଶୋଇବାକୁ ଗଲାବେଳେ ସେ ବିଚାର କଲେ—ଏତେ ପରିଶ୍ରମ ଓ ଅର୍ଥବ୍ୟୟ ବୃଥା ହେଲାଣି । ଏଥିରେ ଆଉରି ଅର୍ଥବ୍ୟୟ କରିବାରେ ଲାଭ ନାହିଁ । ଏଣିକରେ କାର୍ଯ୍ୟ ବନ୍ଦ କରାଇ ଦେବା ବରଂ ବୁଦ୍ଧିମାନର କାର୍ଯ୍ୟ ହେବ ।

ସେ ଦିନ ପ୍ରଭାତ ହେବାର ଠିକ୍ ପୂର୍ବରୁ ହଠାତ୍ ଗୋଟାଏ ଭୀଷଣ ଗର୍ଜନ ହେଲା । ଯେଉଁ ଶବ୍ଦରେ ଜର୍ଜ ଓ ମାର୍ଗାରେଟଙ୍କର ନିଦ୍ରାଭଙ୍ଗ ହୋଇଗଲା । ଜର୍ଜ ବିଛଣାରେ ବସି ପଡ଼ିଲେ ।

ମାର୍ଗାରେଟ ଚକିତ ହୋଇ ପଚାରିଲେ, "ଏ କି ଶବ୍ଦ ?"

ଜର୍ଜ ଉତ୍ତର କଲେ, "ମନେ ହୁଏ, ଏହା ଏକ ବିସ୍ଫୋରଣର ଶବ୍ଦ ଶୁଣି ପାରୁଛ ?"

"କଅଣ ?"

"ସେଇ ଲାଗି ରହିଥିବା ଗର୍ଜନର ଶବ୍ଦ !"

ମାର୍ଗାରେଟ ବିଛଣାରୁ ଉଠି ପଡ଼ି ଚିତ୍କାର କରିଉଠିଲେ, "ମୋ ପୁଅ ! ମୋ ପୁଅ ! ମୋ ପୁଅ କାହିଁ ?"

"ଭୟର କିଛି କାରଣ ନାହିଁ ।" ଜର୍ଜ ଏହା କହିଲେ ମଧ୍ୟ ଖୁବ୍ ବିଚଳିତ ହୋଇ ପଡ଼ିଥିଲେ । "ଶବ୍ଦଟା ଘରର ଖୁବ୍ ନିକଟରୁ ଆସିଲା ପରି ବୋଧ ହେଉନାହିଁ । ତୁଏତ ଅସ୍ତାବଲଆଡ଼ୁ ଆସୁଛି ।"

ଏହା କହୁ ନ କହୁଣୁ ସେ ହଠାତ୍ ନିଜ ବଳିଷ୍ଠ ହାତରେ ତାଳି ମାରି କହିଲେ –"ଗ୍ୟାସ କୂପ ! ହଁ; ଗ୍ୟାସ ବାହାରିଛି !"

କୌଣସିମତେ ପାଇଜାମା ଓ ଗୋଟିଏ ଜାକେଟ ଦେହରେ ଗଳାଇ ଦେଇ ଜର୍ଜ ଘରୁ ବାହାରି ପଡ଼ିଲେ । ପ୍ରତ୍ୟୁଷର ଗୋଲାପି ଆଲୁଅ ମଧ୍ୟରେ ସେ ଗୋଟିଏ ବିଚିତ୍ର ଦୃଶ୍ୟ ଦେଖିବାକୁ ପାଇଲେ । ଅସ୍ତାବଲର ପଶ୍ଚାଦ୍‌ଭାଗଟି ଗୋଟିଏ ଯୁଦ୍ଧଭୂମିରେ ପରିଣତ ହୋଇଥିଲା ପରି ବୋଧ

ହେଲା । ଗୋଡ଼, ମାଟି, କାଦୁଅ ଓ ମଇଳା ପାଣି ଚାରିଆଡ଼େ ଛିଟିକି ପଡ଼ୁଛି । ଖୋଦନ ଯନ୍ତ୍ରର ଉପର ଅଂଶଟା ଉତ୍କ୍ଷିପ୍ତ ହୋଇ କେଉଁଆଡ଼େ ଅଦୃଶ୍ୟ ହୋଇ ଯାଇଛି । ଅବଶିଷ୍ଟ ଅଂଶଟି ମଧ୍ୟ ଧ୍ୱଂସାବଶେଷ ଭିତରେ ପୋତିହୋଇ ପଡ଼ିଛି ।

ସଞ୍ଜବେଳା ଖୋଦନ କାର୍ଯ୍ୟରେ ଯେଉଁମାନେ ନିଯୁକ୍ତ ହୋଇଥିଲେ, ସେମାନେ ଆନନ୍ଦରେ ଚିତ୍କାର କରୁଥିଲେ । ଫୋରମାନ ଦଉଡ଼ି ଆସି ଜର୍ଜଙ୍କ ସହିତ କରମର୍ଦ୍ଦନ କରି କହିଲା, "ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ, ଗ୍ୟାସ କୂପ ଭିତରେ ଗୋଟିଏ ଶ୍ରେଷ୍ଠ କୂପ ହେଉଛି ଆପଣଙ୍କର । ମୁଁ କେତେ କୂପ ଖୋଳିଛି, କିନ୍ତୁ ଏପରି କୂପ କେଉଁଠାରେ ଦେଖିନାହିଁ । ଦେଖନ୍ତୁ, ଏହାର ଚାପ କି ପ୍ରଚଣ୍ଡ !"

ବାସ୍ତବରେ କୂପଟି ଗୋଟିଏ ଦର୍ଶନୀୟ ବସ୍ତୁ । ପ୍ରାକୃତିକ ଗ୍ୟାସର ଶକ୍ତିରେ ଉତ୍କ୍ଷିପ୍ତ ହୋଇ ପାଣି, କାଦୁଅ, ବାଲି ପ୍ରଭୃତି ପ୍ରାୟ ଶହେ ଫୁଟ ଉଚ୍ଚ ଗୋଟିଏ ଫୁଆରା ସୃଷ୍ଟି କରିଥିଲା ।

ଅଳ୍ପ ସମୟ ମଧ୍ୟରେ ଫୁଆରା ବନ୍ଦ ହୋଇଯାଇ କେବଳ ଗ୍ୟାସ ବାହାରିବାକୁ ଲାଗିଲା ।

ଜର୍ଜ ଫୋରମାନକୁ ପଚାରିଲେ, "ବର୍ତ୍ତମାନ ଏହି କୂପର ମୁଖକୁ ବନ୍ଦ କରି ରଖିବାର କି ଉପାୟ ସ୍ଥିର କରୁଛ ?"

ଲୋକଟି ମୁଣ୍ଡ କୁଣ୍ଡାଇ କୁଣ୍ଡାଇ କହିଲା, "ସେ କଥା ମୁଁ ଭାବି ପାରୁନାହିଁ । ଏଥି ପୂର୍ବରୁ ଏତେ ଚାପବିଶିଷ୍ଟ ଗ୍ୟାସକୂପ ମୁଁ ଦେଖିନାହିଁ ।"

ଯାହାହେଉ ଶ୍ରମିକମାନେ ଫୋରମାନର ଆଦେଶରେ ଗୋଟାଏ ବଡ଼ କାଠପଟା ଆଣି ଅସ୍ଥାୟୀଭାବରେ କୂପର ମୁହଁ ବନ୍ଦ କରିବାକୁ ଚେଷ୍ଟା କଲେ । ସେମାନେ ପଟାକୁ ଠିକ୍ କୂପର ମୁହଁ ଉପରେ ରଖିଲା ବେଳକୁ ଗ୍ୟାସର ଚାପରେ ତାହା ବତାସରେ କୁଟାଖଣ୍ଡେ ଉଡ଼ିଗଲା ପରି ଶୂନ୍ୟକୁ ଉଡ଼ିଗଲା । କାଠପଟାଟି ଉଡ଼ିଯାଇ ଗୋଟିଏ ଲୁହା ଧାରଣା ଉପରେ ଏତେ ଜୋରରେ ପିଟି ହୋଇଗଲା ଯେ ସଙ୍ଗେ ସଙ୍ଗେ ଚିକାଚିକି ହୋଇ ଗୁଣ୍ଡ ହୋଇଗଲା ।

କୂପର ମୁଖ ବନ୍ଦ କରିବାର ଆଶା ତ୍ୟାଗ କରି ସମସ୍ତେ ଗୃହକୁ ଫେରିଗଲେ । ଜର୍ଜ ଘରେ ପହଞ୍ଚିଲାମାତ୍ରେ ମାର୍ଗାରେଟଙ୍କୁ ଏହି ସୁସମ୍ବାଦଟି ଦେଲେ ।

ଏହାର ପରଦିନ ସହରରୁ ସ୍ୱତନ୍ତ୍ର ଯନ୍ତ୍ରପାତି ମଗାଇ କୂପର ମୁହଁ ବନ୍ଦ କରାଗଲା । ବର୍ତ୍ତମାନ ପ୍ରଶ୍ନ ହେଲା—ଗ୍ୟାସର ଏହି ବିଶାଳ ସ୍ତୂପକୁ କିପରି ନିୟନ୍ତ୍ରିତ କରିବାକୁ ହେବ । ଜର୍ଜ ଏ ବିଷୟରେ ଫୋରମାନ ସହିତ ପରାମର୍ଶ କଲେ; କିନ୍ତୁ ସେ କହିଲା, "ଗ୍ୟାସ ନିୟନ୍ତ୍ରଣର କୌଣସି ସନ୍ତୋଷଜନକ ଉପାୟ ନାହିଁ । ଏହାହିଁ ହେଉଛି ଖଣିଜ ଗ୍ୟାସର ପ୍ରଧାନ ବିପଦ । ଏହାକୁ ଇଚ୍ଛାନୁସାରେ ନିୟନ୍ତ୍ରଣ କରିବା କଠିନ ବ୍ୟାପାର । ଏହାର ଗତିବିଧି ବୁଝିବା ଅସମ୍ଭବ । ସେଥିପାଇଁ ଲୋକେ ଖଣିଜ ଗ୍ୟାସ ନେଇ କାର୍ଯ୍ୟ କରିବାକୁ ଭୟ କରନ୍ତି । ପୁଣି ଏହାର ସ୍ତୂପ ଏତେ ବିପଜ୍ଜନକ ଯେ ଏହାକୁ ପାଇପଦ୍ୱାରା ଅନ୍ୟତ୍ର ନେବା ନିରାପଦ ନୁହେଁ ।

ଜର୍ଜ ସବୁ ଶୁଣିସାରି କହିଲେ, "ଚିନ୍ତାର କାରଣ ନାହିଁ । ଗୋଟାଏ କିଛି ଉପାୟ ବାହାର କରିବାକୁ ହେବ ।"

ଜର୍ଜ ତତ୍‌କ୍ଷଣାତ୍ ନକ୍‌ସା ଆଙ୍କିବାରେ ଲାଗି ପଡିଲେ । ସେହିଦିନ ସନ୍ଧ୍ୟାରେ ସେ ଫୋରମାନଙ୍କୁ ନକ୍‌ସାଗୁଡ଼ିକ ଦେଖାଇ କହିଲେ, "ମୁଁ ବିଚାରୁଛି ଯେ ପାଣି କଳରେ ଯେପରି ଇଚ୍ଛାନୁସାରେ ଖୋଲିବାକୁ ଓ ବନ୍ଦ କରିବାକୁ ଯନ୍ତ୍ର ଲାଗିଥାଏ, ଗ୍ୟାସ କୂପର ମୁହଁରେ ସେହିପରି ଗୋଟିଏ ଯନ୍ତ୍ର ଲଗାଇବା । ପାଣି କଳରୁ ପାଣି ବାହାରିବା ଯେପରି ଯନ୍ତ୍ରଦ୍ୱାରା ନିୟନ୍ତ୍ରିତ ହୁଏ, ଗ୍ୟାସ ବାହାରିବା ମଧ୍ୟ ସେହିପରି ନିୟନ୍ତ୍ରିତ ହୋଇ ପାରିବ । ତୁମେ ଏଇପରି ଯନ୍ତ୍ରଟିଏ ଶୀଘ୍ର ତିଆରି କରି ଦେଇ ପାରିବ ?"

ଫୋରମାନ ଭଲ କରି ନକ୍‌ସାଗୁଡ଼ିକୁ ଦେଖି କହିଲା, "ହଁ, କରି ଦେଇ ପାରିବ । ଏ ତ ବଡ ସହଜ କାମ । ଆହୁରି ମଧ୍ୟ ଏଥିରେ କାର୍ଯ୍ୟ ନ ହେଲା ଭଳି ମୁଁ କିଛି ଦେଖି ପାରୁନାହିଁ । କିନ୍ତୁ ପ୍ରଧାନ ସମସ୍ୟା ହେଉଛି, ଗ୍ୟାସକୁ କିପରି ପାଇପ ସାହାଯ୍ୟରେ ସ୍ଥାନାନ୍ତରକୁ ନିଆଯାଇ ପାରିବ ?"

ଜର୍ଜ ଉତ୍ତର କଲେ, "ସେ କଥା ମଧ୍ୟ ମୁଁ ଚିନ୍ତା କରିଛି । ଗୋଟାଏ ଦୁଇଟା ମଧ୍ୟ ଉପାୟ ମନେ ମନେ ସ୍ଥିର କରିଛି । କିନ୍ତୁ ବର୍ତ୍ତମାନ ଆଗ କୂପ ମୁହଁରେ ଗ୍ୟାସର ଗୃପ ନିୟନ୍ତ୍ରଣ କରିଯାଉ । ପରେ ସେ କଥା ଦେଖାଯିବ ।"

ସପ୍ତାହକ ମଧ୍ୟରେ ଫୋରମାନ ଯନ୍ତ୍ରଟି ତିଆରି କରିଦେଲା । କୂପ ମୁହଁରେ ତାହାକୁ ବସାଇବାରୁ ଇଚ୍ଛାନୁସାରେ ଗ୍ୟାସ ବାହାର କରିହେଲା; ଇଚ୍ଛାନୁସାରେ ବନ୍ଦ କରି ହେଲା । ଏହା ଛଡ଼ା ଷାଠିଏ ଫୁଟ ଲମ୍ବ ଗୋଟିଏ ପାଇପ ସିଧାଭାବରେ କୂପ ମୁହଁରେ ଲଗାଗଲା ଯେପରିକି କଳ ଖୋଲି-ଦେଲେ ଏହି ପାଇପ ବାଟେ ଗ୍ୟାସ ବାହାରିବ ଓ ସେଥିରେ ଏହାରି ଆଲୋକ ଓ ଉତ୍ତାପ ଦେବାର ଶକ୍ତି ପରୀକ୍ଷା କରାଯାଇ ପାରିବ ।

ଦିନେ ଜର୍ଜ ନିଜର ପରିଚିତ ଭଦ୍ରବ୍ୟକ୍ତି ଓ ବନ୍ଧୁବାନ୍ଧବମାନଙ୍କୁ ଗ୍ୟାସ କୂପ ଦେଖିବାକୁ ନିମନ୍ତ୍ରଣ କରି ଆଣିଲେ । ଶଗଡ଼ ଭଳି ଗୋଟିଏ ଯନ୍ତ୍ରର ଏକ ପାର୍ଶ୍ୱରେ କିଛି ତେଲଭିଜା କନା ବନ୍ଧା ହୋଇଥିଲା । ଜର୍ଜଙ୍କର ସଙ୍କେତ ପାଇ ଜଣେ ଶ୍ରମିକ ସେହି କନାରେ ଅଗ୍ନିସଂଯୋଗ କରି ଶଗଡଦ୍ୱାରା ଏହାକୁ ଉପରକୁ ଉଠାଇ ଦେଲା । ଆଉ ଜଣେ ଶ୍ରମିକ ଗ୍ୟାସର କଳ ଖୋଲି ଦେଲା ମାତ୍ରକେ ପାଇପର ଅଗ୍ରଭାଗରେ ଗୋଟାଏ ଆଲୋକ ସ୍ତମ୍ଭର ସୃଷ୍ଟି ହେଲା । ଏହାର ଉଚ୍ଚତା ପ୍ରାୟ ଶହେ ଫୁଟ ଥିଲା । ବିରାଟ ମଶାଲ ସ୍ୱରୂପ ଏହି ଅଗ୍ନି ସ୍ତମ୍ଭର ଆଲୋକ ଏତେ ପ୍ରଖର ଥିଲା ଯେ ସେଠାରୁ ଏକ ମାଇଲ ଦୂରରେ ମଧ୍ୟ ଏହି ଆଲୋକଦ୍ୱାରା ଖବରକାଗଜ ପଢ଼ିବା ସମ୍ଭବପର ହୋଇ ପାରିଥିଲା ।

ଗ୍ୟାସର ସନ୍ଧାନ ମିଳିଗଲା । ଏବେ ଜର୍ଜ ଚିନ୍ତା କରିବାକୁ ଲାଗିଲେ;—ଏହି ଗ୍ୟାସକୁ କିପରି ବ୍ୟବହାରରେ ଲଗାଯାଇ ପାରିବ । ପିଟସବର୍ଗରେ ଗ୍ୟାସର ଉତ୍ସ ଅଛି କି ନା ତାହାହିଁ ଜାଣିବା ଜର୍ଜଙ୍କର ପ୍ରଥମ ଉଦ୍ଦେଶ୍ୟ ଥିଲା । ମାର୍ଗାରେଟଙ୍କୁ ସେତେବେଳେ ସେ କହିଥିଲେ ଯେ ଯଦି ଖଣିଜ ଗ୍ୟାସ ବାହାରିବ ତେବେ ସେ ତାହାକୁ ପାଇପରେ ନେଇ ନିଜର ଘରକାର୍ଯ୍ୟରେ ଲଗାଇବେ ଓ ଯଦି ଅଧିକ ପରିମାଣରେ ବାହାରେ, ତେବେ ଆଖପାଖର ବନ୍ଧୁମାନଙ୍କ ଘରକୁ ମଧ୍ୟ ବ୍ୟବହାର ପାଇଁ ଦେବେ ।

ଏବେ ଯେତେ ପରିମାଣରେ ଗ୍ୟାସ ଏହି କୂପଟିରୁ ବାହାରିଲା, ସେଥିରୁ ଜର୍ଜ ଅନୁମାନ କଲେ ଯେ ଏହିପରି କେତୋଟି କୂପ ଖୋଳିଲେ ସେ ସମଗ୍ର ପିଟସବର୍ଗ ସହର ଓ ତାର ଆଖପାଖ ଅଞ୍ଚଳକୁ ଗ୍ୟାସ ଯୋଗାଇ ଦେଇ ପାରିବେ ।

ସେ ସନ୍ଧାନ ପାଇଲେ ଯେ ପିଟସବର୍ଗ ସହରର ଗୋଟିଏ ବଡ଼ ଶିଳ୍ପ କାରଖାନା ଖଣିଜ ଗ୍ୟାସଦ୍ୱାରା ଚାଳିତ ହେଉଅଛି; କିନ୍ତୁ ଏଥିରେ ବହୁତ ଖରଚ ପଡ଼ୁଅଛି; କାରଣ କୋଡ଼ିଏ ମାଇଲ ଦୂରସ୍ଥିତ ମାରିସଭିଲରୁ ପାଇପଯୋଗେ ଗ୍ୟାସ ଆଣିବାକୁ ହେଉଅଛି । ତାଙ୍କର ବିଶ୍ୱାସ ଯେ ପାଖରେ ପ୍ରଚୁର ଗ୍ୟାସ ଥିବାରୁ ଏହି ବ୍ୟୟ ଯଥେଷ୍ଟ କମ କରାଯାଇପାରିବ । ତାହାହେଲେ ପିଟସବର୍ଗର ଲୋକେ ଗୃହ କର୍ମରେ ଓ କାରଖାନାରେ କୋଇଲାଗ୍ୟାସ ବ୍ୟବହାର ନ କରି ଖଣିଜ ଗ୍ୟାସ ବ୍ୟବହାର କରିବେ ।

ପ୍ରଥମ ପ୍ରଶ୍ନ ହେଲା—ଗ୍ୟାସର ସରବରାହ ପାଇଁ ଗୋଟିଏ କମ୍ପାନୀ ଗଠନ କରିବାକୁ ହେବ । ଏହାର ପରବର୍ତ୍ତୀ ପ୍ରଶ୍ନ ହେଲା – କିପରି ଗ୍ୟାସ ସରବରାହ କରାଯାଇ ପାରିବ । ଦ୍ୱିତୀୟ ପ୍ରଶ୍ନଟି ଆଦୌ ସହଜ ନ ଥିଲା । ଲୋକମାନେ ଆଗରୁ ସତର୍କ କରି ଦେଇଥିଲେ ଯେ ଖଣିଜ ଗ୍ୟାସର ଚାପ ଅଧିକ ହୋଇଥିଲେ ଏହାକୁ ପାଇପଦ୍ୱାରା ଅନ୍ୟତ୍ର ନେବା ଘୋର ବିପଜ୍ଜନକ ।

ଯଦି ସେ ପାଣିଯୋଗାଣ ଭଳି ଭୂମି ତଳେ ପାଇପ ବସାଇ ସହରର ଲୋକମାନଙ୍କ ଘରକୁ ଓ କାରଖାନାମାନଙ୍କୁ ଗ୍ୟାସ ଯୋଗାନ୍ତି ତେବେ ତାଙ୍କୁ ପିଟସବର୍ଗର ସିଟିକାଉନ୍‌ସିଲର ଅନୁମତି ନେବାକୁ ପଡ଼ିବ । ପୁଣି ଏ ପଦ୍ଧତି ସମ୍ପୂର୍ଣ୍ଣ ନିରାପଦ ପ୍ରମାଣିତ ନ ହେଲେ ସିଟି କାଉନ୍‌ସିଲ ଅନୁମତି ଦେବା ଅସମ୍ଭବ । ଚାପର ଆଧିକ୍ୟ ହେତୁ ପାଇପରେ ସାମାନ୍ୟ ଛିଦ୍ର ହେଲେ ସେବାଟେ ପ୍ରଚୁର ଗ୍ୟାସ ବାହାରି ଯିବାକୁ ଚେଷ୍ଟା କରିବ ଓ ଫଳରେ ସର୍ବଦା ଦୁର୍ଘଟଣା ଘଟିବାର ଆଶଙ୍କା ରହିବ । ଏପରି ବାହାରିବା ଗ୍ୟାସ ମାଟିଦ୍ୱାରା ଶୋଷି ହୋଇ ପାଖରେ ଥିବା ଘର ବା କୌଣସି ଆବଦ୍ଧ ଜାଗାରେ ଜମିଲେ ଘୋର ଦୁର୍ଘଟଣା ଘଟିପାରେ ।

ନିକଟରେ ଏପରି ଗୋଟିଏ ଦୁର୍ଘଟଣା ଘଟିଥିବାରୁ ଘୋର ବିଶୃଙ୍ଖଳା ସୃଷ୍ଟି ହୋଇଥିଲା ଓ ପ୍ରାକୃତିକ ଗ୍ୟାସର ବ୍ୟବହାର ଏକାବେଳକେ ନିଷିଦ୍ଧ କରିବାକୁ ଉଦ୍ୟମ ହୋଇଥିଲା । ଦିନେ ସନ୍ଧ୍ୟାବେଳେ ଜଣେ ସହିସ ଅସ୍ତାବଲକୁ ଯାଇ ଲଣ୍ଠନ ଲଗାଇବା ପାଇଁ ଗୋଟିଏ ଡିଆସିଲି କାଠି ଜାଳିଲା । ତତ୍‌କ୍ଷଣାତ୍ ଗୋଟାଏ ପ୍ରଚଣ୍ଡ ବିସ୍ଫୋରଣ ହେଲା ଓ ସମଗ୍ର ଘରଟି ଧ୍ୱଂସସାତ୍ ହୋଇଗଲା । ଏଥିରେ ଗୋଟିଏ ଘୋଡ଼ାର ମୃତ୍ୟୁ ଘଟିଲା ଓ ସହିସଟି ତିରିଶ ଫୁଟ ଦୂରରେ ଛିଟିକି ପଡ଼ିଲା । ଲୋକଟିର ପ୍ରାଣହାନି ଘଟି ନ ଥିଲେ ସୁଦ୍ଧା ଏହି ଘଟଣାଦ୍ୱାରା ପ୍ରାକୃତିକ ଗ୍ୟାସର ବିପଦ ପ୍ରମାଣିତ ହୋଇଗଲା । ପରେ ଅନୁସନ୍ଧାନରୁ ଜଣା ପଡ଼ିଥିଲା ଯେ ମାଟିରେ ଗ୍ୟାସ ଶୋଷି ହୋଇ ନିକଟରେ ଜମି ରହିଥିଲା ।

ବିଷୟଟିର ଗୁରୁତ୍ୱ ବୁଝିପାରି ଜର୍ଜ ଏହାକୁ ବିଶ୍ଳେଷଣ କରିବାକୁ ଲାଗିଲେ । ଏଥିପୂର୍ବରୁ ଗୁରୁଚାପବିଶିଷ୍ଟ ଷ୍ଟୀମ ଓ ସଙ୍କୋଚିତ ବାୟୁ ବିଷୟରେ ସେ ଯେଉଁ ଅଭିଜ୍ଞତା ଅର୍ଜନ କରିଥିଲେ, ତାହା ଏବେ ତାଙ୍କୁ ବହୁ-ପରିମାଣରେ ସାହାଯ୍ୟ କଲା ।

ପିଲାଦିନେ ବାପାଙ୍କ କାରଖାନାରେ କାର୍ଯ୍ୟ କରୁଥିଲାବେଳେ ଜର୍ଜ ଦେଖିଥିଲେ ଯେ ପ୍ରତ୍ୟେକ ଷ୍ଟୀମ ଇଞ୍ଜିନରେ ଅତ୍ୟଧିକ ଚାପ ନିବାରଣ ନିମନ୍ତେ ଗୋଟିଏ ଗୋଟିଏ ନିରାପତ୍ତା ଭଲ୍‌ଭ ଥାଏ । ଷ୍ଟୀମର ଚାପ ଅଧିକ ହେଲେ ଏହି ଭଲ୍‌ଭ ବାଟେ ଅତିରିକ୍ତ ଚାପ ବାହାରିଯାଏ । ପରେ ଏୟାରବ୍ରେକ ତିଆରି କଲାବେଳେ ଅତିରିକ୍ତ ବାୟୁଚାପ ବାହାର କରିଦେବା ପାଇଁ ସେ ଏହି ପଦ୍ଧତି ଅନୁସରଣ କରି ନିରାପତ୍ତା ଭଲ୍‌ଭର ବ୍ୟବସ୍ଥା କରିଥିଲେ । ତେଣୁ ଖଣିଜଗ୍ୟାସର ଚାପକୁ ନିୟନ୍ତ୍ରଣ କରିବାରେ ସେ ଏହି ଉପାୟ ଅବଲମ୍ବନ କରିବାକୁ ସ୍ଥିର କଲେ ।

ପାଇପଲାଇନର କେତେକ ସ୍ଥାନରେ ଯଦି ଏହିପରି ନିରାପତ୍ତା ଭଲ୍‌ଭ ସ୍ଥାପନ କରାଯାଏ ତାହା ହେଲେ ଚାପ ନିର୍ଦ୍ଦିଷ୍ଟ ସୀମା ଅତିକ୍ରମ କଲାମାତ୍ରେ ସେହି ସେହି ସ୍ଥାନର ଭଲ୍‌ଭ ଖୋଲିଯିବ । ଏୟାରବ୍ରେକରେ ସେ ଏହିପରି ନିରାପତ୍ତାଭଲ୍‌ଭ ବସାଇଥିଲେ । ବର୍ତ୍ତମାନ ସମସ୍ୟାର ସମାଧାନ ଠିକ୍ ସେହି ଉପାୟରେ କରାଯାଇ ପାରିବ ବୋଲି ତାଙ୍କର

ବିଶ୍ୱାସ ହେଲା । ଏହା ଫଳରେ ଗ୍ୟାସ ସର୍ବଦା ଆସ୍ତରରେ ରହିବ ଏବଂ ଯଦି ଅତିରିକ୍ତ ଚାପର ସୃଷ୍ଟି ହୁଏ, ତେବେ କେତେକ ନିର୍ଦ୍ଦିଷ୍ଟ ସ୍ଥାନରେ ଗ୍ୟାସ ବାହାରିଯିବ । ତାହାହେଲେ ଉପୂର କାରଣ ରହିବ ନାହିଁ କିମ୍ବା ଭୂମିତଳେ ଗ୍ୟାସ ଶୋଷି ହୋଇ ଜମିବ ନାହିଁ ।

ଏ ପଦ୍ଧତିରେ କ ତ୍ରୁଟି ବା ଦୋଷ ରହିପାରେ ତାହା ମଧ୍ୟ ସେ ଚିନ୍ତା କରିବାକୁ ଲାଗିଲେ । ପ୍ରଥମ କଥା, ଭଲ୍‌ଭ ଠିକ୍‌ରୂପେ କାର୍ଯ୍ୟ କରି ନ ପାରେ । ଯେଉଁ ଖଣିଜଗ୍ୟାସର ଚାପ ଇସ୍ପାତର ଯନ୍ତ୍ରକୁ ଫାଟି ଉଡ଼ାଇ ଦେଇପାରେ, ତାହା ଯେ ନିରାପତ୍ତା ଭଲ୍‌ଭ ଭଳି ସୂକ୍ଷ୍ମ ପତଳା ଯନ୍ତ୍ରକୁ ଚୂର୍ଣ୍ଣ କରି ନ ଦେବ ତାହାର କ ସ୍ଥିରତା ଅଛି ? ସମଗ୍ର ବ୍ୟବସ୍ଥାଟି ଯେତେ ଦୃଢ଼ ହୋଇଥିଲେହେଁ ଏହି ଭଲ୍‌ଭ ବିଷୟଟିକୁ ଉତ୍ତମରୂପେ ବିଚାର କରିବାକୁ ହେବ ।

ଜର୍ଜ ମନେ କଲେ ଯେ ନିରାପତ୍ତା ବ୍ୟବସ୍ଥାକୁ ଦ୍ୱିଗୁଣିତ କରିବା ଉଚିତ । ତାହାହେଲେ ଯଦି ଯନ୍ତ୍ରଟି କୌଣସି ସ୍ଥାନରେ ବିଗିଡ଼ି ଯାଏ, ତେବେ ଗୁରୁତର ବିପଦର ସମ୍ଭାବନା ରହିବ ନାହିଁ ଏବଂ ଏଥିମଧ୍ୟରେ ମରାମତି କାର୍ଯ୍ୟ କରାଯାଇପାରିବ । ଏହି ସମୟରେ ସେ ନିଜ କାରଖାନାରେ ବିଭିନ୍ନ ବ୍ୟାସବିଶିଷ୍ଟ ଦୁଇ ଖଣ୍ଡ ପାଇପ ଦେଖି ପାରିଲେ । ସଙ୍ଗେ ସଙ୍ଗେ ତାଙ୍କ ମୁଣ୍ଡରେ ଗୋଟାଏ ବୁଦ୍ଧି ଖେଳିଗଲା । ସେ ଚିନ୍ତାକଲେ—ମନେ କର, ସରୁ ପାଇପଟି ମୋଟା ପାଇପ ଭିତରେ ରହିବ ଓ ସରୁ ପାଇପବାଟେ ଗ୍ୟାସ ଯିବ । ଏହି ସରୁ ପାଇପରେ ସାମାନ୍ୟ ଛିଦ୍ର ହେଲେ ଗ୍ୟାସ ସେହିବାଟେ ବାହାରିବ; କିନ୍ତୁ ତାହା ଦୁଇ ପାଇପ ମଧ୍ୟରେ ଥିବା ଶୂନ୍ୟ ସ୍ଥାନରେ ଆବଦ୍ଧହୋଇ ରହିବ । ସେ ଗୋଟିଏ ସରୁ ପାଇପକୁ ଗୋଟିଏ ମୋଟା ପାଇପ ଭିତରେ ପୂରାଇ ଉତ୍ତମରୂପେ ଚିନ୍ତାକଲେ । ଯଦି ସମସ୍ତ ପାଇପଲାଇନରେ ଏହିପରି ଡବଲ ପାଇପର ବ୍ୟବସ୍ଥା କରାଯାଏ ତାହାହେଲେ ଅତିରିକ୍ତ ଚାପ ହେତୁ କୌଣସି ସ୍ଥାନରେ ଛିଦ୍ରବାଟେ ଯେଉଁ ଗ୍ୟାସ ବାହାରି ପଡ଼ିବ, ତାହା ଦୁଇ ପାଇପର ମଧ୍ୟବର୍ତ୍ତୀ ଶୂନ୍ୟ ସ୍ଥାନରେ ଆବଦ୍ଧ ହୋଇ ରହିବ ଏବଂ ସରୁ ପାଇପରେ ଥିବା ଚାପର ତୁଳନାରେ ଏହାର ଚାପ ଅତି ସାମାନ୍ୟ ହେବ । ବିପଜ୍ଜନକ ଅବସ୍ଥାକୁ ଆସିବାକୁ ଏହି ଗ୍ୟାସକୁ ଦୀର୍ଘ ସମୟ ଲାଗିବ । ପୁଣି ବାହାର ପାଇପର କେତେକ

ନିର୍ଦ୍ଦିଷ୍ଟ ସ୍ଥାନରେ ନିରାପତ୍ତା ଭାଲ୍‌ଭ ଲଗାଇଦେଲେ ଖୁବ୍ କମ୍ ଚାପରେ ସେଗୁଡିକ ଖୋଲିଯିବ । ଫଳତଃ ଏହି ପଦ୍ଧତି ଗ୍ରହଣ କଲେ ଉତ୍ତମ ନିରାପତ୍ତାର ବ୍ୟବସ୍ଥା ହେବ । କହିବାକୁ ଗଲେ ଏହା ସମ୍ପୂର୍ଣ୍ଣ ନିରାପଦ ହେବ । ଯେତେ ଉଚ୍ଚ ଚାପ ହେଲେ ମଧ୍ୟ କୌଣସି ଦୁର୍ଘଟଣା ଘଟିବ ନାହିଁ ।

ସହର ମଧ୍ୟରେ ଗ୍ୟାସ ପାଇପ ବସାଇବାର ଅନୁମତି ପାଇବାକୁ ସେ ଦରଖାସ୍ତ ଦେଇସାରିଥିଲେ । ଗ୍ୟାସ-ନିୟନ୍ତ୍ରଣ ବ୍ୟବସ୍ଥାର ନକ୍‌ସା ସମ୍ପୂର୍ଣ୍ଣ ନ ହେଉଣୁ ଉକ୍ତ ଦରଖାସ୍ତର ବିଚାର ହେଲା । ସମ୍ବାଦଟି ପ୍ରଚାରିତ ହେଲା ମାତ୍ରେ ସହରର ଲୋକେ ଘୋର ବିରୋଧ କଲେ । ଅଳ୍ପକାଳ ପୂର୍ବେ ଯେଉଁ ବିସ୍ଫୋରଣ ଘଟିଥିଲା ତାହାର ବିବରଣ ସମ୍ବାଦ-ପତ୍ରରୁ ପାଠକରି ସହରର ଜନସାଧାରଣ ଉତ୍କ୍ରିପ୍ତ ହୋଇ ଉଠିଥିଲେ । ଜର୍ଜଙ୍କର ପ୍ରସ୍ତାବ ସହର ପକ୍ଷରେ ମାରାତ୍ମକ ବୋଲି ସେମାନେ ପ୍ରତିବାଦ କଲେ । କେହି କେହି ଆପତ୍ତି ଦର୍ଶାଇଲେ ଯେ ଖଣିଜ ଗ୍ୟାସର ସରବରାହରେ ଜର୍ଜଙ୍କୁ ଏକଚାଟିଆ ଅଧିକାର ଦେବା ଘୋର ଅନ୍ୟାୟ ହେବ । ଯେଉଁମାନେ କୋଇଲା ଓ ଅନ୍ୟାନ୍ୟ ଇନ୍ଧନର ବ୍ୟବସାୟ କରୁଥିଲେ ସେମାନେ ମଧ୍ୟ ଏହି ନୂତନ ପ୍ରତିଯୋଗୀଙ୍କର ବିରୋଧୀ ହୋଇ ଉଠିଲେ । ସେମାନେ ସମ୍ବାଦପତ୍ରରେ ବିଜ୍ଞାପନ ଦେଲେ – ଜର୍ଜଙ୍କର ପରିକଳ୍ପନା ଘୋର ବିପଦର କାରଣ ହେବ । ଲୋକ ସାଧାରଣ ପ୍ରାକୃତିକ ଗ୍ୟାସର ବିପଦ ଅନୁଭବ କରିଅଛନ୍ତି । ଜର୍ଜଙ୍କୁ ଗ୍ୟାସ ସରବରାହ ପାଇଁ ଅନୁମତି ଦେଲେ ହୁଏ ତ ଦିନେ ବିସ୍ଫୋରଣ ଫଳରେ ସମଗ୍ର ପିଟସବର୍ଗ ସହର ଧୂଳିସାତ୍ ହୋଇଯିବ ।

ଏହା ବିରୋଧରେ ଉତ୍ତର ସ୍ୱରୂପ ସେ ନିରାପତ୍ତାର ଯେଉଁ ସବୁ ବ୍ୟବସ୍ଥା କଳ୍ପନା କରିଥିଲେ, ତାହା ଖବରକାଗଜମାନଙ୍କରେ ବିବୃତି ଆକାରରେ ପ୍ରକାଶ କଲେ । ନିଜର ସଦୁଦ୍ଦେଶ୍ୟର ସୂଚନା ଦେଇ ସେ ଜଣାଇ ଦେଲେ ଯେ ସହରର ଦମକଳ ଓ ପୋଲିସଥାନାମାନଙ୍କୁ ସେ ବିନା ମୂଲ୍ୟରେ ଗ୍ୟାସ ଯୋଗାଇ ଦେବେ ।

ସେ ଏହି ସମ୍ପର୍କରେ ଲେଖିଥିଲେ, "ପ୍ରାକୃତିକ ଗ୍ୟାସରେ ଏକଚାଟିଆ କାରବାର କରିବାର ଅଭିଳାଷ ମୋର ଆଦୌ ନାହିଁ । ଏଥିରୁ

ଅତିରିକ୍ତ ଲାଭଉଠାଇବା କିମ୍ବା କୌଣସି ବ୍ୟବସାୟୀ ବା ଶିଳ୍ପ ପ୍ରତିଷ୍ଠାନକୁ ଇଚ୍ଛାନୁରୂପ ମୂଲ୍ୟରେ ଗ୍ୟାସ ବିକ୍ରୟ କରି ଲାଭବାନ୍ ହେବା ମୋର ଉଦ୍ଦେଶ୍ୟ ନୁହେଁ । ମୁଁ ଏତିକିମାତ୍ର ଚାହେଁ ଯେ ମୋର ଆବିଷ୍କାରର ସୁଫଳ ଜନସାଧାରଣ ଉପଭୋଗ କରନ୍ତୁ । ଏଥିପାଇଁ ଉପଯୁକ୍ତ ପାରିଶ୍ରମିକ ଛଡ଼ା ମୁଁ ଆଉ କିଛିମାତ୍ର ଚାହେଁ ନାହିଁ ।

ତିନି ସପ୍ତାହ ପର୍ଯ୍ୟନ୍ତ ତୁମୁଳ ବାଦାନୁବାଦ ଚାଲିଲା ପରେ ଜର୍ଜ ଆଉ ଗୋଟିଏ ନୂତନ ପ୍ରସ୍ତାବ ଦେଲେ ଯେ ଅନ୍ୟ ଉତ୍ପାଦନକାରୀ ମାନେ ମଧ୍ୟ ତାଙ୍କର ପାଇପ ଲାଇନ ବ୍ୟବହାର କରିବାରେ ତାଙ୍କର ଆପତ୍ତି ରହିବ ନାହିଁ । ସେଥିପାଇଁ ସେମାନେ ନାମମାତ୍ର ଭଡ଼ା ଦେବେ ଏବଂ ଏହି ଭଡ଼ାର ପରିମାଣ ଗୋଟିଏ ନିରପେକ୍ଷ କମିଟିଦ୍ୱାରା କିମ୍ବା ଉଭୟ ପକ୍ଷର ଆପୋଷ ମିମାଂସାଦ୍ୱାରା ସ୍ଥିରୀକୃତ ହେବ ।

ଏପରି ପ୍ରସ୍ତାବର ବିରୋଧରେ ଆଉ କିଛି କହିବାର ନ ଥିଲା । ତେଣୁ ପରିଶେଷରେ ଭୂମିତଳେ ପାଇପଲାଇନ ବସାଇବାପାଇଁ ସିଟି କାଉନ୍‌ସିଲ ଅନୁମତି ଦେଲେ ।

ଇତି ମଧ୍ୟରେ ଜର୍ଜ ଗ୍ୟାସ ସରବରାହ ଓ ନିରାପତ୍ତା ଭଲ୍‌ଭ ବ୍ୟବସ୍ଥାର ନକ୍‌ସାର ଉନ୍ନତି କରୁଥିଲେ । ଏହା ଛଡ଼ା ଗ୍ୟାସମିଟର ଓ କୂପଖୋଦନ ସମ୍ବନ୍ଧୀୟ ଯନ୍ତ୍ରର ଉନ୍ନତି ବିଧାନ କରିଥିଲେ । ଏତେବେଳକୁ କେବଳ ପ୍ରାକୃତିକ ଗ୍ୟାସ କ୍ଷେତ୍ରରେ ସେ ଅଠରଟି ପେଟେଣ୍ଟର ଅଧିକାରୀ ହୋଇ ପାରିଥିଲେ ।

ପିଟସବର୍ଗର ଅଧିବାସୀମାନଙ୍କୁ ଏବଂ ଶିଳ୍ପ କାରଖାନାମାନଙ୍କୁ ପ୍ରାକୃତିକ ଗ୍ୟାସ ସରବରାହ କରିବା ଉଦ୍ଦେଶ୍ୟରେ ଗୋଟିଏ କମ୍ପାନୀ ପ୍ରତିଷ୍ଠିତ ହେବ ବୋଲି ଗୋଟିଏ ବିଜ୍ଞାପନ ୧୮୮୪ ମସିହାର ଅଗଷ୍ଟ ୪ ତାରିଖରେ ସମ୍ବାଦପତ୍ରମାନଙ୍କରେ ବାହାରିଲା । ଏହି କମ୍ପାନୀର ନାମ ହେବ ଫିଲାଡେଲଫିଆ କମ୍ପାନୀ ଓ ଏହାର ପ୍ରେସିଡେଣ୍ଟ ରହିବେ ଜର୍ଜ ଓୟେଷ୍ଟିଂହାଉସ ।

ଅତି ଅଳ୍ପକାଳ ମଧ୍ୟରେ ଏହି କମ୍ପାନୀ ପିଟସବର୍ଗ ଓ ନିକଟବର୍ତ୍ତୀ ଅଞ୍ଚଳରେ ଗ୍ୟାସ ସରବରାହ ନିମନ୍ତେ ସର୍ବପ୍ରଧାନ କମ୍ପାନୀରୂପେ ପରିଗଣିତ ହେଲା । ପିଟସବର୍ଗରେ ସ୍ୱଳ୍ପ ମୂଲ୍ୟରେ ପ୍ରଚୁର ଗ୍ୟାସ ମିଳୁଥିବା ସମ୍ବାଦ ପ୍ରଚାରିତ ହୋଇଯିବାରୁ ପ୍ରଚୁର ପରିମାଣରେ ଇନ୍ଧନ ଆବଶ୍ୟକ କରୁଥିବା ଲୌହ ଶିଳ୍ପର ଉତ୍ପାଦନକାରୀମାନେ ଏହି ସହରରେ କାରଖାନା ବସାଇଲେ ସୁବିଧା ହେବ ବୋଲି ମନେ କଲେ ।

ସାମାନ୍ୟ କେତେକ ବର୍ଷ ମଧ୍ୟରେ ପିଟସବର୍ଗ ଆମେରିକା ଯୁକ୍ତରାଷ୍ଟ୍ରର ଲୌହ ଓ ଇସ୍ପାତ୍ ଶିଳ୍ପର କେନ୍ଦ୍ରରୂପେ ପରିଚିତ ହେଲା ।

## ଏଗାର

# ତାରର ଇନ୍ଦ୍ରଜାଲ

ଜର୍ଜ ଯେତେବେଳେ ଖଣିଜ ଗ୍ୟାସର ସରବରାହ ସମସ୍ୟା ନେଇ ବ୍ୟସ୍ତ ଥିଲେ ଠିକ୍ ସେତିକବେଳେ ବିଦ୍ୟୁତ୍ ଆଲୋକର ଆବିଷ୍କାରକ ଟମାସ ଆଲ୍‌ଭା ଏଡ଼ିସନ ଏକ ବିଷମ ବିପଦର ସମ୍ମୁଖୀନ ହୋଇଥିଲେ । ପ୍ରଥମେ ପ୍ରଥମେ ମନେ ହେଉଥିଲା ଯେ ଏହି ଆବିଷ୍କାର ଫଳରେ ଗ୍ୟାସ ବ୍ୟବସାୟ ଏକବାରେ ଲୋପ ପାଇଯିବ; ମାତ୍ର ତାହା ହେଲା ନାହିଁ । ତାଙ୍କ ବୈଦ୍ୟୁତିକ ଆଲୋକ ଆବିଷ୍କୃତ ହେବାର ପାଞ୍ଚବର୍ଷ ପରେ ମଧ୍ୟ ଏହା ଗ୍ୟାସ ବ୍ୟବସାୟ ଉପରେ ଆଶାନୁରୂପ କୌଣସି ପ୍ରଭାବ ପକାଇ ପାରି ନ ଥିଲା । ୧୮୭୯ ମସିହାରେ ଯେତେବେଳେ ପ୍ରଥମେ ଏଡ଼ିସିନ ବିଜୁଳିବତି ଆବିଷ୍କାର କଲେ, ସେତେବେଳେ ସମ୍ବାଦପତ୍ରର ସମ୍ପାଦକମାନେ ଭବିଷ୍ୟତ୍‌ବାଣୀ କରିଥିଲେ ଯେ କ୍ଷୁଦ୍ର ବୈଦ୍ୟୁତିକ ବଲ୍‌ବଟି ଦିନେ ଜଗତରେ ବିପ୍ଲବ ସୃଷ୍ଟି କରିବ; କିନ୍ତୁ ପାଞ୍ଚ ବର୍ଷ ପରେ ମଧ୍ୟ ଏହି ଭବିଷ୍ୟତ୍‌ବାଣୀ ସଫଳ ହେବାର କୌଣସି ଲକ୍ଷଣ ଦେଖା ଯାଇନଥିଲା । ବାସ୍ତବ କ୍ଷେତ୍ରରେ ଦେଖାଗଲା ଯେ ଅଧିକାଂଶ ଗୃହରେ ପୂର୍ବକାଳର ଗ୍ୟାସବତି ବ୍ୟବହୃତ ହେଉଅଛି । ଅତି ଅଳ୍ପ ସଂଖ୍ୟକ ଲୋକ କେବଳ ଗୋଟାଏ ନୂତନତ୍ୱର ମୋହରେ ବିଜୁଳିବତି ବ୍ୟବହାର କରୁଅଛନ୍ତି ।

ବିଜୁଳିବତିର ଯେ କୌଣସି ଦୋଷ ଥିଲା, ତାହା ନୁହେଁ । ପ୍ରକୃତ ସମସ୍ୟା ଥିଲା, ବିଦ୍ୟୁତ୍-ପ୍ରବାହକୁ ବିଜୁଳିବତି ପର୍ଯ୍ୟନ୍ତ ପ୍ରେରଣ କରି ତାହାକୁ ଶକ୍ତିରେ ପରିଣତ କରିବା । ବିଦ୍ୟୁତ୍‌ଶକ୍ତି ଯୋଗାଇବାପାଇଁ ପ୍ରତି ହଜାର ବା ଦେଢ଼ହଜାର ଫୁଟ ଅନ୍ତରରେ ଗୋଟିଏ ଲେଖାଏ

ଶକ୍ତିକେନ୍ଦ୍ର (Power Station) ପ୍ରତିଷ୍ଠା କରିବାକୁ ହେଉଥିଲା । ବୈଦ୍ୟୁତିକ ପ୍ରବାହର ପ୍ରେରଣ ନିମନ୍ତେ ମୋଟା ତମ୍ବାତାର ଆବଶ୍ୟକ ହେଉଥିବାରୁ ଅତିରିକ୍ତ ବ୍ୟୟ ପଡ଼ୁଥିଲା । ତେଣୁ ଲୋକସାଧାରଣଙ୍କ ପକ୍ଷରେ ଏତେ ବହୁଳ ବ୍ୟୟ କରି ବିଜୁଳିବତୀକୁ ବ୍ୟାବହାରିକ ପ୍ରୟୋଜନରେ ଲଗାଇବା ସମ୍ଭବପର ହୋଇ ପାରୁନଥିଲା । ଅତଏବ ଏହାର ଉନ୍ନତି ପରାହତ ହେଉଥିଲା ।

ଜର୍ଜଙ୍କର ଏଡ଼ିସନଙ୍କ ସହିତ କେବେ ପ୍ରତ୍ୟକ୍ଷ ପରିଚୟ ହୋଇ ନ ଥିଲା । କିନ୍ତୁ ଆବିଷ୍କାରକ ଭାବରେ ଉଭୟେ ସମାନଧର୍ମୀ ଥିବାରୁ ଜର୍ଜ ଏଡ଼ିସନଙ୍କର ଅସମ୍ଭବ ଉନ୍ନତି ପ୍ରତି ଲକ୍ଷ୍ୟ ରଖିଥିଲେ । ଏଡ଼ିସନଙ୍କୁ କିପରି ଅପୂର୍ବଧାର ସମ୍ମୁଖୀନ ହେବାକୁ ପଡ଼ୁଥିଲା, ତାହା ଜର୍ଜ ଜାଣି ପାରିଥିଲେ ଏବଂ ସେଥିପାଇଁ ତାଙ୍କ ପ୍ରତି ସହାନୁଭୂତି ପ୍ରକାଶ କରୁଥିଲେ । ବିଶେଷତଃ ବୈଦ୍ୟୁତିକ ସୁଇଚ ଓ ସିଗନାଲ୍ ସମ୍ବନ୍ଧୀୟ ଗବେଷଣା ହେତୁ ବିଦ୍ୟୁତ ବିଷୟରେ ତାଙ୍କର ଆଗ୍ରହ ବୃଦ୍ଧି ପାଇଥିଲା । ଶକ୍ତିର ଏକ ନୂତନ ଆଧାର ଏହି ବିଦ୍ୟୁତ୍ ସମ୍ବନ୍ଧରେ ସେ ଯେତେ ବହି ପାଇଲେ ତାହା ପଢ଼ିବାକୁ ଲାଗିଲେ ।

ଖଣିଜ ଗ୍ୟାସର ନିୟନ୍ତ୍ରଣ ବ୍ୟବସ୍ଥାରେ ସମ୍ପୂର୍ଣ୍ଣ କୃତକାର୍ଯ୍ୟ ହେବାର କିଛିଦିନ ପରେ ଜର୍ଜ ଦିନେ ଇଂଲଣ୍ଡରୁ ଖଣ୍ଡିଏ ପୁସ୍ତିକା ପାଇଲେ । ଏହି ପୁସ୍ତିକାଟିରେ ଗଲାର୍ଡ ନାମକ ଜଣେ ଫରାସୀ ଓ ଗିବ୍ସ ନାମକ ଜଣେ ଇଂରେଜଙ୍କ ଦ୍ୱାରା ଉଦ୍ଭାବିତ ଏକ ଅପୂର୍ବ ଯନ୍ତ୍ରର ବିବରଣ ପ୍ରଦତ୍ତ ହୋଇଥିଲା । ଏହି ଯନ୍ତ୍ରଟିର ନାମ ଦିଆଯାଇଥିଲା 'ଗୌଣ ଉତ୍ପାଦକ' ବା ଟ୍ରାନ୍ସଫର୍ମର । ବହିଟି ପଢ଼ି ଜର୍ଜ ମନେ କଲେ ଯେ ଏହି ଯାନ୍ତ୍ରିକ କୌଶଳ ପ୍ରୟୋଗ କରି ସେ ଦିନେ ବିଦ୍ୟୁତ୍‌ଜଗତରେ ଏକ ଯୁଗାନ୍ତର ଆଣି ପାରିବେ ।

ପ୍ରାଥମିକ ଅବସ୍ଥାରେ ବିଦ୍ୟୁତ୍ କେବଳ ବ୍ୟାଟେରୀଦ୍ୱାରା ଉତ୍ପାଦିତ ହେଉଥିଲା । ବ୍ୟାଟେରୀ ଗୋଟିଏ କ୍ଷୁଦ୍ର ଅନବଚ୍ଛିନ୍ନ ପ୍ରବାହ ସୃଷ୍ଟି କରୁଥିଲା ଓ ସେହି ପ୍ରବାହ କେବଳ ଗୋଟିଏ ଦିଗରେ ଗତି କରୁଥିଲା । ଏହାକୁ ସମପ୍ରବାହ ( Direct Current ) କୁହାଯାଉଥିଲା । ପ୍ରଥମେ ସମସ୍ତ

ମୋଟରରେ ଓ ଅନ୍ୟାନ୍ୟ ବୈଦ୍ୟୁତିକ ଯନ୍ତ୍ର ଏହି ସମପ୍ରବାହଦ୍ୱାରା ଚାଳିତ ହେଉଥିଲା ।

ଷ୍ଟିମ ବା ଜଳଶକ୍ତିଦ୍ୱାରା ଚାଳିତ ଡାଇନାମୋର ଉନ୍ନତି ସାଧିତ ହେବାରୁ ବହୁ ପରିମାଣରେ ବିଦ୍ୟୁତ୍‌ଶକ୍ତି ଉତ୍ପାଦିତ ହୋଇପାରିଲା ଓ ଗୋଟିଏ ନୂତନ ବୈଦ୍ୟୁତିକ ପ୍ରବାହର ଉତ୍ପତ୍ତି ହେଲା । ବ୍ୟାଟେରୀରେ ରାସାୟନିକ ପ୍ରକ୍ରିୟାରେ ଏହା ଉତ୍ପନ୍ନ ହେଉଥିଲା, କିନ୍ତୁ ଏଥିରେ ସେପରି ହେଉ ନ ଥିଲା । ଡାଇନାମୋରେ କେତେକ ତାରର କୁଣ୍ଡଳୀ ଥାଏ ଓ ଏହି କୁଣ୍ଡଳୀ ଏକ ଚୌମ୍ବକ କ୍ଷେତ୍ର (Magnetic field) ମଧ୍ୟରେ ତୀବ୍ରବେଗରେ ଘୂରୁଥାଏ । ଏହିପରି ଚୌମ୍ବକ ପ୍ରକ୍ରିୟାରେ ବୈଦ୍ୟୁତିକ ପ୍ରବାହର ଉତ୍ପତ୍ତି ହେଲା । ଏହି ପ୍ରବାହର ନାମ ଦିଆଗଲା ପରିବର୍ତ୍ତୀ ପ୍ରବାହ (Alternating Current) ।

ସମପ୍ରବାହଦ୍ୱାରା ଚାଳିତ ମୋଟରରେ ଓ ଅନ୍ୟାନ୍ୟ ଯନ୍ତ୍ରରେ ପରିବର୍ତ୍ତୀ ପ୍ରବାହ ବ୍ୟବହାର କରିବା ଉଦ୍ଦେଶ୍ୟରେ ଗୋଟିଏ ଉପାୟ ବାହାରିଲା । ଏହି ଉପାୟଟି ହେଲା କମ୍ୟୁଟେଟର (Commutator) । ଏହାଦ୍ୱାରା ଡାଇନାମୋର ପରିବର୍ତ୍ତୀ ପ୍ରବାହକୁ ସମପ୍ରବାହରେ ପରିଣତ କରାଯାଇ ପାରିଲା ।

ସମପ୍ରବାହର କେତେକ ଅସୁବିଧା ଥିଲା । ଏହି ପ୍ରବାହର ମାନ ଉଚ୍ଚ (High Current) ହେଲେହେଁ ଏହା ନିମ୍ନ ବିଭବରେ (Low-Voltage) ଗତି କରୁଥିଲା । 'ବିଭବ' (Voltage)ର ଅର୍ଥ ହେଉଛି ଏକ ପ୍ରକାର ଚାପ (Pressure) ଯାହାକି ବିଦ୍ୟୁତ୍‌କୁ ପରିବାହକ (Conductor) ମଧ୍ୟରେ ପ୍ରବାହିତ କରେ । ପଦାର୍ଥ ବିଜ୍ଞାନୀମାନେ ଗବେଷଣାଗାରର ପରୀକ୍ଷାରୁ ଦେଖିଥିଲେ ଯେ ନିମ୍ନବିଭବ (Low-Voltage) ଦ୍ୱାରା ଗୋଟିଏ ତାରରେ ଉଚ୍ଚ ପ୍ରବାହ (High Current) ଯେତେ ସୁନ୍ଦର ଭାବେ ଚାଳିତ ହୁଏ ଉଚ୍ଚ ବିଭବ (High Voltage) ଦ୍ୱାରା ନିମ୍ନ ପ୍ରବାହ (Low Current) ତଦପେକ୍ଷା ଅଧିକ କାର୍ଯ୍ୟକାରୀ ଭାବରେ ଚାଳିତ ହୋଇଥାଏ । ନିମ୍ନ ବିଭବ (Low Voltage) ଦ୍ୱାରା ଉଚ୍ଚ ପ୍ରବାହ ଚାଳିତ କରିବାପାଇଁ ମୂଲ୍ୟବାନ୍ ସ୍ଥୂଳ ତମ୍ବାତାର ଆବଶ୍ୟକ ହେଉଥିଲା । ଏଥିରେ ବହୁ ପରିମିତ ବୈଦ୍ୟୁତିକ ଶକ୍ତି ଉତ୍ତାପରେ

ପରିଣତ ହୋଇ ନଷ୍ଟ ହୋଇ ଯାଉଥିଲା । ସାମାନ୍ୟ କେତେ ଶହ ଗଜରୁ ଅଧିକ ଦୂରକୁ ବୈଦ୍ୟୁତିକ ଶକ୍ତି ପ୍ରେରଣ କରିବାପାଇଁ ଏହାଦ୍ୱାରା ଅତ୍ୟଧିକ ବ୍ୟୟ ହେଉଥିଲା ଓ ଶକ୍ତି ଯୋଗାଇବାପାଇଁ ଖୁବ୍ ପାଖାପାଖି ଶକ୍ତିକେନ୍ଦ୍ର ସ୍ଥାପନ କରିବାକୁ ପଡ଼ୁଥିଲା ।

ସମପ୍ରବାହର ଉନ୍ନତି ପଥରେ ଏହାର ବ୍ୟୟ ବାହୁଲ୍ୟ ପ୍ରଧାନ ପ୍ରତିବନ୍ଧକ ହୋଇ ରହିଥିଲା ।

ଯେ କୌଣସି ବିଷୟରେ ମସ୍ତକ ଚାଳନା କରିବା ଜର୍ଜଙ୍କର ପ୍ରକୃତି । ତେଣୁ ଗଲାର୍ଡ ଓ ଗିବ୍‌ସଙ୍କର ଟ୍ରାନ୍‌ସଫର୍ମର ଯନ୍ତ୍ର ବିଷୟ ପାଠ କରି ସେ ଆତ୍ମବିସ୍ମୃତ ହୋଇଯିବା ଆଶ୍ଚର୍ଯ୍ୟର କଥା ନୁହେଁ । ପୁସ୍ତିକାଟିରେ ଲେଖା ଥିଲା ଯେ ଟ୍ରାନ୍‌ସଫର୍ମର ଯନ୍ତ୍ରଟି ଅତି ସରଳ । ଏଥିରେ ଦୁଇଟି ସ୍ୱତନ୍ତ୍ର ତାର କୁଣ୍ଡଳୀ ( Coils) ଥାଏ । ଗୋଟିଏ କୁଣ୍ଡଳୀ ମଧ୍ୟରେ ପରିବର୍ତ୍ତୀ ପ୍ରବାହ ପ୍ରେରିତ ହେଲେ ଏହାର ଅପର କୁଣ୍ଡଳୀରେ ପ୍ରବାହ ଆବିଷ୍ଟ ହୁଏ (is induced) । ପ୍ରତ୍ୟେକ କୁଣ୍ଡଳୀର ତାରର ବେଢ଼ସଂଖ୍ୟା ଅନୁସାରେ ବିଭବ (Voltage) ବୃଦ୍ଧି ପାଇପାରେ ବା ଊଣା ହୋଇପାରେ । ଏହାହିଁ ଥିଲା ଟ୍ରାନ୍‌ସଫର୍ମର୍‌ ଯନ୍ତ୍ରର ବିଶେଷତ୍ୱ । ଯଦି କୌଣସି ଟ୍ରାନ୍‌ସଫର୍ମର ମୁଖ୍ୟ କୁଣ୍ଡଳୀରେ ଦଶବେଢ଼ (Ten turns) ତାର ଥାଏ, ଏବଂ ଗୌଣ କୁଣ୍ଡଳୀରେ ଶହେ ବେଢ଼ ତାର ଥାଏ, ତାହାହେଲେ ଗୌଣ କୁଣ୍ଡଳୀରେ ମୁଖ୍ୟ କୁଣ୍ଡଳୀର ଦଶ ଗୁଣ ବିଭବ ( Voltage ) ଆବିଷ୍ଟ ହେବ । ତାହା ସଙ୍ଗେ ସଙ୍ଗେ ବିଦ୍ୟୁତ୍ ପ୍ରବାହର ପରିମାଣ କମିଯାଇ ଏକ ଦଶମାଂଶ ହୋଇଯିବ । ଠିକ୍ ସେହିପରି ମୁଖ୍ୟ ଓ ଗୌଣକୁଣ୍ଡଳୀ ଦ୍ୱୟକୁ ପରସ୍ପର ପରିବର୍ତ୍ତିତ କରି ଉଚ୍ଚତ ବିଭବ କମାଇ ଦିଆଯାଇ ତଡ଼ିତ ପ୍ରବାହ ବୃଦ୍ଧି କରାଯାଇ ପାରିବ ।

ପୁସ୍ତିକାଟିରେ ଗଲାର୍ଡ-ଗିବ୍‌ସ ଟ୍ରାନ୍‌ସଫର୍ମରର ଯେଉଁ ବିବରଣ ଦିଆ ଯାଇଥିଲା, ସେଥିରୁ ଜର୍ଜ ବୁଝିପାରିଲେ ଯେ ଏହା ଏବେ ପରୀକ୍ଷାମୂଳକ ଆବସ୍ଥାରେ ଅଛି । ମାତ୍ର ଏତିକରୁ ତାଙ୍କର କଳ୍ପନା ଉଦ୍ଦୀପିତ ହୋଇ ଉଠିଲା । ତାଙ୍କର ବିଶ୍ୱାସ ଜନ୍ମିଲା ଯେ ଏହା ଆବିଷ୍କାରଟି ହେଉଛି ବୈଦ୍ୟୁତିକଶକ୍ତିର ପ୍ରସାର କ୍ଷେତ୍ରରେ ଶ୍ରେଷ୍ଠ ଅବଦାନ; କାରଣ ଯଦି

ଚାପକୁ (Voltage) ଶତଗୁଣ ବା ଏପରିକ ସହସ୍ର ଗୁଣକୁ ବୃଦ୍ଧି କରାଯାଏ, ତାହାହେଲେ ସ୍ୱଳ୍ପମୂଲ୍ୟର ସୂକ୍ଷ୍ମ ତାରଦ୍ୱାରା ବହୁ ଦୂରକୁ ବୈଦ୍ୟୁତିକ ଶକ୍ତି ପ୍ରେରଣ କରାଯାଇ ପାରିବ । ଏହି ଉପାୟରେ ବୈଦ୍ୟୁତିକ ଶକ୍ତିର ମୂଲ୍ୟ ହ୍ରାସ କରିଗଲେ ସର୍ବସାଧାରଣ ଲୋକସାଧାରଣ ଏହାଦ୍ୱାରା ଉପକୃତ ହୋଇପାରିବେ ।

ଏଥିରେ ଅବଶ୍ୟ ଅନେକ ସମସ୍ୟା ଜଡ଼ିତ ଥିଲା । ଗୋଟିଏ ପ୍ରଧାନ ସମସ୍ୟା ହେଲା କପରି ଉଚ୍ଚ ଚାପର ପ୍ରବାହକୁ ନିରାପଦ ଭାବରେ ବ୍ୟବହାର କରାଯାଇ ପାରିବ । ଏହି ପ୍ରବାହ ଦ୍ୱାରା ଯେ ଭୟାବହ ଦୁର୍ଘଟଣା ଏପରିକ ମୃତ୍ୟୁ ପର୍ଯ୍ୟନ୍ତ ଘଟିପାରେ, ତାହା ସମସ୍ତଙ୍କୁ ଜଣାଥିଲା । ତେଣୁ ଜର୍ଜଙ୍କର ପରିକଳ୍ପନାରେ ନିରାପତ୍ତାର ବ୍ୟବସ୍ଥା ପ୍ରଥମ ସ୍ଥାନ ଅଧିକାର କଲା । ଏହାର ସମାଧାନ ନିମନ୍ତେ ସେ ସ୍ଥିରକଲେ ଯେ ଶକ୍ତିର ଉତ୍ପାଦନ ସ୍ଥଳରେ ଗୋଟିଏ ଆରୋହୀ ଟ୍ରାନ୍ସଫର୍ମର ବସାଯିବ । ଏହା ଚାପ ବୃଦ୍ଧିକରି ସ୍ୱଳ୍ପବ୍ୟୟରେ ତାରଦ୍ୱାରା ପ୍ରବାହକୁ ନେଇଯିବ । ତାରଗୁଡ଼ିକ ଉତ୍ତମରୂପେ ଅନ୍ତରିତ (Insulated) ହେବ । ଶକ୍ତି ଯଥା-ସ୍ଥାନରେ ପହଞ୍ଚିଲେ ପ୍ରୟୋଗ କ୍ଷେତ୍ରରେ ପୁଣି ଅବରୋହୀ ଟ୍ରାନ୍ସଫର୍ମର ସାହାଯ୍ୟରେ ଚାପକୁ ଆବଶ୍ୟକ ମତେ କମାଇ ନିରାପଦ ସ୍ତରକୁ ଆଣି ହେବ ଓ ସେତେବେଳେ ଏହା ଗୃହରେ ତଥା ଶିଳ୍ପ କାରଖାନାରେ ବ୍ୟବହୃତ ହୋଇପାରିବ ।

ଏହା ପରେ ଗୋଟିଏ ଦ୍ୱିତୀୟ ସମସ୍ୟା ଉପସ୍ଥିତ । ଟ୍ରାନ୍ସଫର୍ମର କେବଳ ପରିବର୍ତ୍ତୀ ପ୍ରବାହରେ ଚଳେ; କିନ୍ତୁ ବୈଦ୍ୟୁତିକ ମୋଟରଗୁଡ଼ିକ ସମପ୍ରବାହଦ୍ୱାରା ଚାଳିତ ହେବା ଲକ୍ଷ୍ୟରେ ନିର୍ମିତ । ସେହି ହେତୁରୁ ତଡ଼ିତଉତ୍ପାଦନକାରୀ ଡାଇନାମୋର ନିକଟରେ କମ୍ୟୁଟେଟରର ସ୍ଥାପନ କରାଯାଉଥିଲା । ଏହା ପରିବର୍ତ୍ତୀ ପ୍ରବାହକୁ ସମପ୍ରବାହରେ ରୂପାନ୍ତରିତ କରୁଥିଲା । ଏହି ପ୍ରକ୍ରିୟାଟିର ବିଶ୍ଳେଷଣ କରି ଜର୍ଜ ଗୋଟିଏ ସହଜ ସମାଧାନ ବାହାର କଲେ । ଶକ୍ତିର ଉତ୍ପାଦନ ସ୍ଥଳ ହେଉଛି ଡାଇନାମୋ । ସେଥିରୁ କମ୍ୟୁଟେଟରକୁ ବାହାର କରି ନେଇ ସେ ତାହାକୁ ମୋଟରରେ ଲଗାଇବାକୁ ସ୍ଥିର କଲେ । ଏହାଦ୍ୱାରା ଶକ୍ତିକେନ୍ଦ୍ରରେ(Power Station) ଉତ୍ପାଦିତ ପରିବର୍ତ୍ତୀ ପ୍ରବାହର ଚାପ ବୃଦ୍ଧିପାଇ ତାରଦ୍ୱାରା ପ୍ରେରିତ

ହେବ ଓ ପୁଣି ଯେଉଁ କେନ୍ଦ୍ରରେ ପହଞ୍ଚିବ (Receiving Station ) ସେଠାରେ ମୋଟରକୁ ଯିବାପରେ ତାହାର ହ୍ରଭବ କମାଇ ଦିଆଯାଇ ସମପ୍ରବାହରେ ପରିଚାଳିତ କରାଯାଇପାରିବ ।

ଏତେବେଳକୁ ବର୍ତ୍ତମାନ ଓ୍ୱେଷ୍ଟିଙ୍ଗହାଉସ କମ୍ପାନୀଗୁଡ଼ିକ ସହିତ ବିଶେଷଭାବରେ ସମ୍ପୃକ୍ତ ହୋଇ ସାରିଥିଲା । ଜର୍ଜ ତାହାକୁ ନିଜର ଏହି ପରିକଳ୍ପନା ବିଷୟ ଜଣାଇବାରୁ ସେ କହିଲା ଯେ ବହୁଳ ପରିମାଣରେ ପରିବର୍ତ୍ତୀ ପ୍ରବାହ ଉତ୍ପାଦନ କରିବାପାଇଁ ସେ ପ୍ରସ୍ତୁତ । ଜର୍ଜ କହିଲେ, "ତାହାହେଲେ ତୁ ଏହି ଉଦ୍ୟମର ସୁପରିଚାଳନା ଭାର ଗ୍ରହଣ କର । ଅବିଳମ୍ବେ ଜଣେ ଲୋକକୁ ଇଂଲଣ୍ଡକୁ ପଠାଇ ଦେ । ସେ ଗଲାର୍ଡ-ଗିବ୍ସ ଯନ୍ତ୍ରଟିର ଆମେରିକାନ ପେଟେଣ୍ଟ ଅଧିକାର ଖରିଦ କରି ଆଣୁ । ଦେଖି ଯେପରି କାର୍ଯ୍ୟସିଦ୍ଧି ନକରି ସେ ଫେରି ନ ଆସେ ।"

ଗିଡ୍ଡୋ ପାଣ୍ଟାଲଓନି ନାମକ ଜଣେ ତରୁଣ ଇଞ୍ଜିନିଅରଙ୍କୁ ଏହି କାର୍ଯ୍ୟର ଭାର ଦିଆଗଲା । ମାସକ ମଧ୍ୟରେ ସେ ଇଂଲଣ୍ଡରୁ ତାରବାର୍ତ୍ତା ପଠାଇଲେ ଯେ ଆବିଷ୍କାରକ ଦୁହିଁଙ୍କର ସନ୍ଧାନ ମିଳିଛି ଓ ସେମାନଙ୍କଠାରୁ ପଚିଶ ହଜାର ଡଲାର ମୂଲ୍ୟରେ ପେଟେଣ୍ଟ ଅଧିକାର କ୍ରୟ କରାଯାଇଅଛି ।

ସ୍ୱାକ୍ଷରିତ ଚୁକ୍ତିପତ୍ର ଓ କେତୋଟି ଟ୍ରାନ୍ସଫର୍ମର ସହିତ ପାଣ୍ଟାଲଓନି ଆମେରିକାକୁ ଫେରି ଆସିଲେ । ଟ୍ରାନ୍ସଫର୍ମରଗୁଡ଼ିକର ଚେହେରା ଦେଖି ଜର୍ଜ ସ୍ତମ୍ଭିତ ହୋଇଗଲେ । ଅସୁନ୍ଦର ତମ୍ବା ଚକତିରେ ଯନ୍ତ୍ରଗୁଡ଼ିକ ତିଆରି । ଯୋଡ଼ ଜାଗାର ଝାଳେଇଗୁଡ଼ିକ ସ୍ପଷ୍ଟ ଜଣା ପଡ଼ୁଥାଉଛି । ସେ କହିଲେ, "ଏ କଅଣ, ଏତ ପିଲାଙ୍କ ଖେଳନା ଯନ୍ତ୍ର ଭଳି । ସେଥିରେ ପୁଣି ଅତି କଦର୍ଯ୍ୟ ଭାବରେ ତିଆରି । ବ୍ୟବସାୟ କ୍ଷେତ୍ରକୁ ଆଣିବାକୁ ହେଲେ ଏହାର ଅନେକ ଉନ୍ନତି କରିବା ଦରକାର ପଡ଼ିବ ।"

ଏତେ ତରବରରେ କିଛି ନ ଦେଖି ବହୁମୂଲ୍ୟରେ ଟ୍ରାନ୍ସଫର୍ମରର ପେଟେଣ୍ଟ ଅଧିକାର କିଣି ନେଇବାଟାହା ଭୁଲ ହେଲା ବୋଲି ହାର୍ମନର ସନ୍ଦେହ ହେଲା । ଜର୍ଜ କହିଲେ, "ଆଚ୍ଛା, ଦେଖାଯାଉ ! ଚେହେରା ତ ଦେଖାଗଲା । କାମ କିପରି ଦେଉଛି, ପରୀକ୍ଷା କରାଯାଉ ।" ଗୋଟିଏ ବୈଦ୍ୟୁତିକ 'ସର୍କିଟ' ସଙ୍ଗେ ଯନ୍ତ୍ରଟିକୁ ଲଗାଇ ପରୀକ୍ଷା କରିବାପାଇଁ ସେ

ଜଣେ ଇଞ୍ଜିନିଅରକୁ କହିଲେ । ଏହାର ଫଳାଫଳ ଦେଖିବା ପାଇଁ ଦୁହେଁ ଧାଇ ଉତ୍କଣ୍ଠିତ ଭାବରେ ଚାହିଁ ରହିଲେ ।

ଯନ୍ତ୍ରଟି ଦେଖିବାକୁ ଏତେ କଦର୍ଯ୍ୟ ହେଲେହେଁ କାମ ଦେଲା । ବ୍ୟବସାୟିକ ଦୃଷ୍ଟିରୁ ଏ ପ୍ରକାର ଟ୍ରାନ୍ସଫର୍ମର ଆଦୌ ଲାଭଜନକ ହେବ ନାହିଁ ବୋଲି ଜର୍ଜ ବୁଝିପାରିଲେ । ହାତରେ ଝଲେଇ କରି ତମ୍ବା-ଚକତିକୁ ଯଥାସ୍ଥାନରେ ବସାଇବାରେ ଯେଉଁ ପରିଶ୍ରମ ଓ ଅର୍ଥବ୍ୟୟ ହେବ ସେ ଦୃଷ୍ଟିରୁ ଏହାର ବ୍ୟାବହାରିକ ପ୍ରୟୋଗ ଅସମ୍ଭବ ।

ଏହାର ପରବର୍ତ୍ତୀ କେତେ ଦିନ ଜର୍ଜ ଏହି ଯନ୍ତ୍ରର ଉନ୍ନତିସାଧନ ବିଷୟ ଚିନ୍ତା କରି କରି କଟାଇ ଦେଲେ । କେତେକ ସାମାନ୍ୟ ପରିବର୍ତ୍ତନ କରିସାରି ସେ ଦେଖିଲେ ଯେ ଏହାର ମୌଳିକ ଧାରଣା ହେଉଛି ଭ୍ରମ-ପୂର୍ଣ୍ଣ । ବୈଜ୍ଞାନିକ ଦୃଷ୍ଟିରୁ ଟ୍ରାନ୍ସଫର୍ମରର ତଥ୍ୟ ଠିକ୍, କିନ୍ତୁ ଯାନ୍ତ୍ରିକ ଦୃଷ୍ଟିରୁ ଏହା ସମ୍ପୂର୍ଣ୍ଣ ଭୁଲ । ସେ ଏକ ସାହସିକ ପଦକ୍ଷେପ ଗ୍ରହଣ କଲେ । ଗଲର୍ଡ-ଗିବ୍‌ସ ଯନ୍ତ୍ରକୁ ଏକବାରେ ପରିତ୍ୟାଗ କରି ସେହି ତଥ୍ୟ ଅନୁସାରେ ଗୋଟାଏ ନୂଆ ଯନ୍ତ୍ର ତିଆରି କରିବା ଉଦ୍ଦେଶ୍ୟରେ ସେ ନକ୍ସା ଆଙ୍କିବାକୁ ବସିଲେ ।

ତାଙ୍କର ପ୍ରଧାନ ସମସ୍ୟା ହେଲା କପରି ମୁଖ୍ୟ ଓ ଗୌଣ କୁଣ୍ଡଳୀ ଦୁଇଟିକୁ ବେଗରେ ଓ ଅଳ୍ପ ବ୍ୟୟରେ ଗୁଡ଼ାଯାଇପାରିବ । ଏହାର ସମାଧାନ ମିଳିଲା ଜର୍ଜଙ୍କ ଆବାଲ୍ୟ ପରିଚିତ ଲେଦ ଯନ୍ତ୍ରରେ । ସେ ଭାବିଲେ ଯେ ଜଟିଳ ତମ୍ବାଚକତି ଓ ଝଲେଇ ପରିବର୍ତ୍ତେ ସାଧାରଣ ଅନ୍ତରିତ ତମ୍ବା ତାର Insulated wire) ଦ୍ଵାରା ଭିତର ଟିକୁ (Core) ଗୁଡ଼ାଇଲେ ସବୁ ଗୋଳ ମାଳ ତୁଟିଯିବ । ସେ ଗୋଟିଏ ପିଟାଲୁହାର ପଟି ନେଇ ଲେଦର ମୁହଁରେ ଧରିଇଦେଲେ ଓ କେତେ ଘେର ତାର ଗୁଡ଼ାଇ ଦେଲେ । ଲେଦ ଯନ୍ତ୍ରକୁ ଚଳାଇବାମାତ୍ରେ ତାର ଲୁହାପଟି ଦେହରେ ଗୁଡ଼େଇ ହୋଇ କୁଣ୍ଡଳୀଟିଏ ହୋଇଗଲା । ପିଲାଦିନେ ବାପାଙ୍କ କାରଖାନାରେ ଲେଦ ଯନ୍ତ୍ର ସାହାଯ୍ୟରେ ପାଇପ କାଟିବା କଥା ମନେ ପକାଇ ସେ ହସି ଉଠିଲେ । କୁଣ୍ଡଳୀର ତାର ଗୁଡ଼ାଇବା କାମ ତାହାଠାରୁ କିଛି ଭିନ୍ନ ନ ଥିଲା ।

ଟ୍ରାନ୍ସଫର୍ମରର ମୁଖ୍ୟ ଓ ଗୌଣ କୁଣ୍ଡଳୀରେ ତାରର ଘେର ସଂଖ୍ୟା ସଙ୍ଗେ ସମାନ ଅନୁପାତ ରଖି ବିଭବ (Voltage) ବୃଦ୍ଧି ପାଉଥିଲା । ତେଣୁ ଲେଦ ସାହାଯ୍ୟରେ କାର୍ଯ୍ୟଟି ଅତି ସହଜରେ ହୋଇଗଲା । ତାରର ହଜାରେ ବା ଦୁଇ ହଜାର ଘେର ଗୁଡ଼ାଇବା ଗୋଟାଏ କାମ ବୋଲି ମନେ ହେଲା ନାହିଁ । ତିନି ସପ୍ତାହ ମଧ୍ୟରେ ଜର୍ଜ ଗୋଟିଏ ସମ୍ପୂର୍ଣ୍ଣ ନୂତନ ଧରଣର ଟ୍ରାନ୍ସଫର୍ମର ତିଆରି କରିଦେଲେ । ଏହା ସଙ୍ଗେ ଗଲାର୍ଡ-ଗିବ୍ସ ଯନ୍ତ୍ରର ଲବମାତ୍ର ସାଦୃଶ୍ୟ ନ ଥିଲା । ଇଞ୍ଜିନିଅରମାନଙ୍କ ପରାମର୍ଶରେ ଜର୍ଜ ନକ୍ସାଟିରେ ସାମାନ୍ୟ ପରିବର୍ତ୍ତନ କରି ଦେଇଥିଲେ ।

ଜର୍ଜ, ହର୍ମାନ ଓ କେତେକ ସହକର୍ମୀ ମିଳି ୧୮୭୫ ମସିହାର ଡ଼ିସେମ୍ବର ୨୩ ତାରିଖ ଦିନ ଗୋଟିଏ କର୍ପୋରେସନ ପ୍ରତିଷ୍ଠା କରିବା ପାଇଁ ଅନୁମତି ପାଇବାକୁ ଆବେଦନ କଲେ । ଏହି କର୍ପୋରେସନର ଉଦ୍ଦେଶ୍ୟ ହେଲା ବୈଦ୍ୟୁତିକ ଶକ୍ତିର ଉନ୍ନୟନ ଏବଂ ଏହାର ନାମ ହେଲା ଓ୍ୱେଷ୍ଟିଂହାଉସ ଇଲେକ୍ଟ୍ରିକ କମ୍ପାନୀ ।

ଅବଲମ୍ବେ ଅନୁମତି ମିଳିଗଲା । କାର୍ଯ୍ୟ ଆରମ୍ଭ କରିବାରେ ମଧ୍ୟ ଜର୍ଜଙ୍କର ବିଳମ୍ବ ହେଲାନାହିଁ । ଏହାର କିଛି ଦିନ ପୂର୍ବରୁ ସେ ୟୁନିଅନ ସିଗନାଲ ଏଣ୍ଡ ସୁଇଚ କମ୍ପାନୀକୁ ସ୍ଥାନାନ୍ତରିତ କରି ପିଟସବର୍ଗର ସହର-ତଳି ଅଞ୍ଚଳକୁ ନେଇ ଯାଇଥିଲେ । ପୁରୁଣା କାରଖାନା ଘରଟି ଖାଲି ପଡ଼ିଥିଲା । ବୈଦ୍ୟୁତିକ ସରଞ୍ଜାମ ତିଆରି କରିବା ଉଦ୍ଦେଶ୍ୟରେ ସେହି ଘରଟି ବ୍ୟବହାର କରାଗଲା ।

ୱିଲିଅମ୍ ଷ୍ଟାନଲି ନାମକ ଜଣେ ତରୁଣ ଇଞ୍ଜିନିଅର ଜର୍ଜଙ୍କର ଦକ୍ଷିଣ ହସ୍ତ ସ୍ୱରୂପ କାମ କରୁଥିଲେ । ନୂତନ ଟ୍ରାନ୍ସଫର୍ମରର ଉନ୍ନତି ସାଧନ ଦିଗରେ ସେ ବହୁ ମୂଲ୍ୟବାନ ପରାମର୍ଶ ଦେଇଥିଲେ । ନୂତନକମ୍ପାନୀ ବ୍ୟାବସାୟିକ ଦୃଷ୍ଟିରୁ ଯନ୍ତ୍ର ଉତ୍ପାଦନ ଆରମ୍ଭ କଲା ବେଳକୁ ଷ୍ଟାନଲି ଫୁସ୍‌ଫୁସ୍ ପୀଡ଼ାରେ ଆକ୍ରାନ୍ତ ହେବାରୁ ନିଜ ଘରକୁ ଯାଇ ପିତାମାତାଙ୍କ ନିକଟରେ ରହିବାର ଇଚ୍ଛା ପ୍ରକାଶ କଲେ । ତାଙ୍କର ଘର ମାସାଚୁସେଟର ଗ୍ରେଟ ବାରିଙ୍ଗଟନରେ ।

ସେ ଦୁଃଖ ପ୍ରକାଶ କରି ଜର୍ଜଙ୍କୁ କହିଲେ, "ମୁଁ ଆପଣଙ୍କୁ ଛାଡ଼ି ଚାଲି ଯାଉଛି ବୋଲି ଆପଣ କ୍ଷୁବ୍ଧ ହୋଇ ପାରନ୍ତି, କିନ୍ତୁ ମୋର ଅନ୍ୟ ଉପାୟ ନାହିଁ ।"

ଜର୍ଜ ଉତ୍ତର କଲେ, "ମୁଁ ଆଦୌ କ୍ଷୁବ୍ଧ ନୁହେଁ । ତୁମେ କଅଣ ଭାବିଛ ଯେ ମୁଁ ତୁମକୁ ଏତେ ସହଜରେ ଛାଡ଼ିଦେବି ? ଆମର ଓଏଷ୍ଟିଙ୍ଗହାଉସ କମ୍ପାନୀରେ ଗୁଣର ଆଦର ଅଛି । ଗ୍ରେଟ ବାରିଙ୍ଗଟନରେ ଗୋଟିଏ ସ୍ୱତନ୍ତ୍ର ଗବେଷଣାଗାର ପ୍ରତିଷ୍ଠା କରିବାର ସମସ୍ତ ବ୍ୟୟ ବହନ କରିବାକୁ ମୁଁ ପ୍ରସ୍ତୁତ ଅଛି । ସେଠାରେ ତୁମେ ଆମ ଟ୍ରାନ୍ସଫର୍ମର ସାହାଯ୍ୟରେ ପରିବର୍ତ୍ତୀ ପ୍ରବାହ ପ୍ରେରଣ କରିବାର ଗୋଟିଏ ବ୍ୟାବହାରିକ ପ୍ରଦର୍ଶନୀ ରଖିବ । ବେଲ୍‌ଫିଲ୍‌ଡ ନାମକ ଜଣେ ଇଞ୍ଜିନିଅରଙ୍କୁ ମୁଁ ଅନୁରୋଧ କରୁଛି ଯେ ସେ ମାସାଚୁସେଟସ ଯାଇ ଏହି କାର୍ଯ୍ୟରେ ତୁମ୍ଭଙ୍କୁ ସାହାଯ୍ୟ କରିବେ ।"

ଏହା ପରେ ଷ୍ଟାନଲି ଓ ବେଲ୍‌ଫିଲ୍‌ଡ ଦୁହେଁ ମିଳି ଗବେଷଣାଗାର ପ୍ରତିଷ୍ଠା କାର୍ଯ୍ୟରେ ଲାଗିପଡ଼ିଲେ । ସେମାନେ ଯେତେବେଳେ ଯେଉଁ ଯନ୍ତ୍ର ଚାହିଁବେ, ତାହା ସଙ୍ଗେ ସଙ୍ଗେ ପିଟସବର୍ଗରୁ ପଠାଇଦେବା ପାଇଁ ଜର୍ଜଙ୍କର ଆଦେଶ ଥିଲା । ଥରେ ଷ୍ଟାନଲି ଗୋଟିଏ ବିଶିଷ୍ଟ ଧରଣର ଡାଇନାମୋ ପ୍ରେରଣ କରିବାପାଇଁ ଜରୁରୀ ସମ୍ବାଦ ପଠାଇଲେ । ଓଏଷ୍ଟିଙ୍ଗହାଉସ ଇଲେକ୍‌ଟ୍ରିକ କମ୍ପାନୀର ଯୋଗାଣବିଭାଗର ଜଣେ କର୍ମଚାରୀ ଷ୍ଟାନଲିଙ୍କ ଚିଠି ଧରି ଜର୍ଜଙ୍କ ପାଖକୁ ଦୌଡ଼ିଆସି କହିଲା, "ଷ୍ଟାନଲି ଚିଠି ଲେଖିଅଛନ୍ତି । ତାଙ୍କ ପାଖକୁ ଗୋଟାଏ ନୂଆ ଧରଣର ଡାଇନାମୋ ପଠାଇବାକୁ ହେବ ।"

ଜର୍ଜ ଟେବୁଲ ଉପରେ ନଇଁ ପଡି ଗୋଟାଏ ନକ୍ସା ତିଆରି କରୁଥିଲେ । ସେ ମୁହଁ ନ ଟେକି କହିଲେ, "ତେବେ ପଠାଇ ଦିଅ ।"

କର୍ମଚାରୀ ଜଣଙ୍କ ପ୍ରତିବାଦ କଲା ଭଳି ସ୍ୱରରେ କହିଲା, "କିନ୍ତୁ ଷ୍ଟାନଲିଙ୍କ ପାଇଁ ବଜେଟରେ ଯେତିକି ଟଙ୍କାର ବ୍ୟବସ୍ଥାଥିଲା, ଏ ଡାଇନାମୋ କିଣିଲେ ତାହିଁରୁ ବଳି ପଡ଼ିବ ।"

ଜର୍ଜ ନକ୍ସାଟିକୁ ଠେକ ପ୍ରଶଂସା କରୁକରୁ କହିଲେ, "ସେପରି ହେଉ ପଠାଇଦିଅ ।"

କର୍ମଚାରୀଟି ପୁଣି କହିଲା, "ମହାଶୟ, ଆପଣ ବୋଧହୁଏ ସବୁ କଥା ବୁଝି ପାରିନାହାନ୍ତି । ସେ ଯେଉଁ ଡାଇନାମୋ ଚାହିଁଛନ୍ତି, ତାହା କେବଳ ଇଂଲଣ୍ଡରେ ମିଳି ପାରିବ । ତେଣୁ ବହୁତ ଖରଚ ପଡ଼ିବ ।"

ଜର୍ଜ ନକ୍ସାଟି ଟେବୁଲ ଉପରେ ରଖି ଦେଇ କର୍ମଚାରୀ ଆଡ଼କୁ ଟିକିଏ ବକ୍ର ଦୃଷ୍ଟିରେ ଚାହିଁ କହିଲେ, "ସାଣ୍ଡର୍ସ, ସଙ୍ଗେ ସଙ୍ଗେ ଡାଇନାମୋ ପାଇଁ ଇଂଲଣ୍ଡକୁ ଅର୍ଡ଼ର ପଠାଇ ଦିଅ । ଏ କଥାଟା ତୁମ ଆମ ଛଡ଼ା ଆଉ କେହି ଯେପରି ନ ଜାଣନ୍ତି । ଷ୍ଟାନଲିଙ୍କ ଖରଚର ହିସାବ କଥା ତୁମେ କାହାରିକୁ କହିବ ନାହିଁ । ମୁଁ ମଧ୍ୟ କାହାକୁ କହିବି ନାହିଁ ।

ସାଣ୍ଡାର୍ସ ବିସ୍ମିତ ହୋଇ ବିଦାୟ ନେଲା ।

୧୮୮୬ ମସିହାର ମାର୍ଚ୍ଚ ମାସର ମଧ୍ୟ ଭାଗରେ ଜର୍ଜ ଷ୍ଟାନଲିଙ୍କ ପାଖରୁ ଏକ ତାର ବାର୍ତ୍ତା ପାଇଲେ । ଏଥିରେ ଥିଲା, "ସବୁ ପ୍ରସ୍ତୁତ । ଶୀଘ୍ର ଆସନ୍ତୁ ।"

ସବୁ କାର୍ଯ୍ୟ ଛାଡ଼ି ଦେଇ ହର୍‌ମାନଙ୍କୁ ସଙ୍ଗରେ ଘେନି ମାସାଚୁସେଟ୍‌କୁ ଯିବାପାଇଁ ଜର୍ଜ ଗାଡ଼ିରେ ବସିଲେ । ସେତେବେଳକୁ ହର୍‌ମାନ ଓ୍ୱେଷ୍ଟିଂହାଉସ ଇଲେକ୍‌ଟ୍ରିକ କମ୍ପାନୀର ଭାଇସ ପ୍ରେସିଡେଣ୍ଟ । ଗ୍ରେଟ ବାରିଙ୍ଗଟନ ଷ୍ଟେସନରେ ଷ୍ଟେଲ୍‌ଫିଲ୍‌ଡ଼ ଅପେକ୍ଷା କରି ରହିଥିଲେ । ସେ ଏମାନଙ୍କୁ ଗବେଷଣାଗାରକୁ ନେଇଗଲେ ।

ଷ୍ଟାନଲିଙ୍କର ଦେହଟା ରୁଗ୍‌ଣ ଓ ଜୀର୍ଣ୍ଣଶୀର୍ଣ୍ଣ ହୋଇ ଯାଇଥିଲା । ସେ ଜର୍ଜ ଓ ହର୍‌ମାନଙ୍କୁ ସଙ୍ଗରେ ନେଇ ଗବେଷଣାଗାରର ବିଭିନ୍ନ ଅଂଶ ବୁଲାଇ ଦେଖାଇଲେ । ଅଳ୍ପ ସମୟ ମଧ୍ୟରେ ଇଞ୍ଜିନିଅର ଦୁହେଁ ଯାହା କରିଥିଲେ, ତାହା ଦେଖି ଦୁଇ ଭାଇ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ଇଂଲଣ୍ଡରୁ ଅଣାଯାଇଥିବା ଡାଇନାମୋ ସାହାଯ୍ୟରେ ଗୋଟିଏ ପୂର୍ଣ୍ଣାବୟବ

ବିଦ୍ୟୁତ୍ ଉତ୍ପାଦକ କେନ୍ଦ୍ର ସ୍ଥାପନ କରାଯାଇଅଛି । ଡାଇନାମୋ-ଠାରୁ ଚାରିମାଇଲ ଦୂରବର୍ତ୍ତୀ ଲରେନ୍‌ସଭିଲ ସହରର ଗୋଟିଏ ଘର ପର୍ଯ୍ୟନ୍ତ ତାର ଲଗାଯାଇଛି । ଡାଇନାମୋରେ ଟ୍ରାନ୍‌ସଫର୍ମର ସଂଯୋଗ କରି ସେମାନେ ଏହାର ବିଭବକୁ (Voltage) ତିନି ହଜାର ପର୍ଯ୍ୟନ୍ତ ବୃଦ୍ଧି କରିଅଛନ୍ତି । ଏଠାରୁ ତାର ମାଧ୍ୟମରେ ବିଦ୍ୟୁତ୍ ପ୍ରବାହ ପ୍ରେରଣ କରାଯାଉଅଛି ।

ଜଣେ କାରିଗରକୁ ଡାଇନାମୋ ଚଳାଇବାକୁ ଆଦେଶ ଦେଇ ଜର୍ଜ, ହର୍‌ମାନ, ଷ୍ଟାନଲି ଓ ବେଲ୍‌ଫିଲ୍ଡ଼ ଚାରିଜଣଯାକ ଗୋଟିଏ ଗାଡ଼ିରେ ବସି ଲରେନ୍‌ଭିଲକୁ ଗଲେ । ସେଠାରେ ପହଞ୍ଚିବାରୁ ଷ୍ଟାନଲି ଅନ୍ୟମାନଙ୍କୁ ଗୋଟିଏ ପୁରୁଣା ଘରକୁ ନେଇଗଲେ । ସେଠାରେ ଏକ ଉନ୍ନତ ଓ୍ୱେଷ୍ଟିଂହାଉସ ଟ୍ରାନ୍‌ସଫର୍ମର ତାରଦ୍ୱାରା ଆସିଥିବା ବିଦ୍ୟୁତ୍ ଶକ୍ତିକୁ ପାଞ୍ଚଶହ ବିଭବରେ (Volts) ପରିଣତ କରୁଥିଲା । ଏହି ବିଦ୍ୟୁତ୍ ପ୍ରବାହ ଚାରି ଶହ ବିଜୁଳିବତୀକୁ ଶକ୍ତି ଯୋଗାଉ ଥିଲା । ବତୀଗୁଡ଼ିକ ଘରଟିର ଚାରିପାଖେ ଖଞ୍ଜା ଯାଇଥିଲା ।

ଜର୍ଜ ଯନ୍ତ୍ରଗୁଡ଼ିକର ସମସ୍ତ ଅଂଶ ଉତ୍ତମରୂପେ ପରୀକ୍ଷା କରି ପଚାରିଲେ, "ବତୀଗୁଡ଼ିକ ଜାଳି ଦେଖିଛ ?"

ଷ୍ଟାନଲି ଟିକିଏ ହସି କହିଲେ, "ନା, ପ୍ରଥମେ ସୁଇଚ ଟିପିବାର ଗୌରବ ଆପଣଙ୍କର ହେଉ ।"

କୃତ୍ରିମ କୋପ ପ୍ରକାଶ କରି ଜର୍ଜ କହିଲେ, "ତୁମେ କିପରି ଜାଣିଲ ଯେ ସୁଇଚ ଟିପି ଦେଲେ ବତୀଗୁଡ଼ିକ ନିଶ୍ଚୟ ଜଳିବ ? ମୋତେ ଏତେ ଦୂରରୁ ଟାଣି ଆଣି ଶେଷରେ ଅପ୍ରସ୍ତୁତ କରିବ ସିନା !"

ଷ୍ଟାନଲି ଉତ୍ତର ଦେଲେ, "ମୁଁ ସ୍ୱୀକାର କରୁଛି ଯେ ଆମେ ଆପଣଙ୍କୁ ଟିକିଏ ଠକିଛୁ । କେତେକ ସପ୍ତାହ ପୂର୍ବେ ଆମେ ବାରିଙ୍ଗ-ଟନରେ ଏହିପରି ଯନ୍ତ୍ର ବସାଇଥିଲୁ । ଦୁଇଟା ଦୋକାନ ପର୍ଯ୍ୟନ୍ତ ତାର ଲଗାଇ ଦେଖିଥିଲୁ । ଅବଶ୍ୟ ବିଜୁଳିବତୀଗୁଡ଼ିକ ଡାଇନାମୋର ଖୁବ୍ ନିକଟରେ ଥିଲା ।"

"ବତ୍ତିଗୁଡ଼ିକ ଜଳଥିଲ ତ ?"

"ବେଶ୍ ସୁନ୍ଦର ଜଳଥିଲ ।"

ଜର୍ଜ କହିଲେ, "ଆଚ୍ଛା, ତାହା ହେଲେ ଆମର ପ୍ରଦର୍ଶନୀଟା ଆରମ୍ଭ କରାଯାଉ ।"

ଅନ୍ୟ କିଛି ଅବତାରଣା ନ କରି ସେ ଯାଇ ପ୍ରଧାନ ସୁଇଚଟି ଟିପି ଦେଲେ । ସଙ୍ଗେ ସଙ୍ଗେ ଗୃହଶହ ବିଜୁଳିବତ୍ତି ଜଳି ଉଠି ଆଖି ଝଲସାଇ ଦେଲ ।

ଦର୍ଶକମାନେ ବିସ୍ମିତ ହୋଇ କହି ଉଠିଲ, "ବାଃ, କି ଚମତ୍କାର !"

ତାପରେ ଜର୍ଜ ଗମ୍ଭୀର ଭାବରେ ଘୋଷଣା କଲେ, "ଭଦ୍ର-ମହୋଦୟଗଣ, ଆଜି ଆମ୍ଭେମାନେ ବିଦ୍ୟୁତ୍ ଯୁଗର ପ୍ରଥମ ପ୍ରଭାତ ଦେଖିବାକୁ ପାଇଛୁ ।"

---

# ବାର

## ବିଦ୍ୟୁତ୍ ଆଲୋକର ଦିଗ୍‌ବିଜୟ

ଏହାପରେ ଦୁଇ ସପ୍ତାହ ଧରି ଲରେନ୍‌ସଭିଲର ବିଜୁଳିବତୀ-ଗୁଡ଼ିକ ଜଳିବାରେ ଲାଗିଲା । ଏକାଦିକ୍ରମେ ବହୁକାଳ ପର୍ଯ୍ୟନ୍ତ ଜଳିଲେ ଫଳାଫଳ କଅଣ ହେବ, ତାହା ପରୀକ୍ଷା କରି ଦେଖିବାପାଇଁ ଜର୍ଜ ମାସାଚୁସେଟସରେ ରହିଲେ । ପ୍ରତିଦିନ ସେ ଷ୍ଟାନଲିଙ୍କ ସହିତ ଲରେନ୍‌ସଭିଲର ସେହି ଘରକୁ ଯାଇ ଦେଖୁଥିଲେ ପରିବର୍ତ୍ତୀ ତଡ଼ିତ୍ ପ୍ରବାହ ଦୀର୍ଘକାଳ ଧରି ବ୍ୟବହାର କରିବାର ଉପଯୋଗୀ କି ନା ?

ଏଥିରେ ସେମାନେ ନିରାଶ ହୋଇନଥିଲେ । ଓ୍ୱେଷ୍ଟିଂହାଉସ କମ୍ପାନୀର କେତେକ ଇଞ୍ଜିନିଅର କହୁଥିଲେ ଯେ ପରିବର୍ତ୍ତୀ ପ୍ରବାହରେ ସରୁ ତମ୍ବାତାରସବୁ ପୋଡି ପାଉଁଶ ହୋଇଯିବ; କିନ୍ତୁ ଏତେ ସମୟ ଜଳିଲା ପରେ ମଧ୍ୟ ସେପରି କିଛି ହେଲା ନାହିଁ । ଟ୍ରାନ୍‌ସଫର୍ମର ଓ ଅନ୍ୟାନ୍ୟ ଯନ୍ତ୍ରଗୁଡ଼ିକ ସୁନ୍ଦରରୂପେ କାର୍ଯ୍ୟ କଲେ । ଆହୁରି ମଧ୍ୟ ଖୁବ୍ ଉଚ୍ଚ ବିପଜ୍ଜନକ ବିଭବ (Voltage) ବ୍ୟବହୃତ ହୋଇଥିଲେହେଁ କେହି ଜଣେ ହେଲେ ଶ୍ରମିକ ଆହତ ହୋଇ ନଥିଲେ । ଏହାର କାରଣ ଏହି ଯେ ଷ୍ଟାନଲି ଅତି ସାବଧାନରେ ସମଗ୍ର ଲାଇନକୁ ଅନ୍ତରିତ (Insulated) କରିଥିଲେ ।

ଦୁଇ ସପ୍ତାହ ପରେ ଜର୍ଜ ପ୍ରଧାନ ସୁଇଚଟି ଟାଣି ବତୀଗୁଡ଼ିକ ଲିଭାଇ ଦେଇ ଷ୍ଟାନଲିଙ୍କୁ କହିଲେ, "ଦେଖ, ଉଇଲ୍, ଏବେ ମୁଁ ନିଶ୍ଚିନ୍ତ । ଏଥର ଲୋକସାଧାରଣଙ୍କ ସମକ୍ଷରେ ଏହା ପ୍ରଦର୍ଶନ କରାଯାଇପାରେ ।"

ବର୍ତ୍ତମାନ ଏଥି ପୂର୍ବରୁ ପିଟସବର୍ଗକୁ ଚାଲି ଯାଇଥିଲେ । ଜର୍ଜ ତାହାଙ୍କ ନିକଟକୁ ତାର କରି ଜଣାଇଲେ ଯେ ଓ୍ୱେଷ୍ଟିଂହାଉସ କମ୍ପାନୀର ପରିବର୍ତ୍ତୀ ପ୍ରବାହର ସବୁ ପ୍ରକାର ଯନ୍ତ୍ର ଏଣିକି ବଜାରରେ ମିଳି ପାରିବ ବୋଲି ସେ ବିଜ୍ଞାପନ ଦେବେ । ଏହାପରେ ମାର୍ଗାରେଟ ଓ ପୁଅ ଜର୍ଜକୁ ଦେଖିବାପାଇଁ ସେ ବ୍ୟାକୁଳ ହୋଇ ପିଟସବର୍ଗ ଯିବାକୁ ଗାଡ଼ିରେ ବସିଲେ ।

ଓ୍ୱେଷ୍ଟିଂହାଉସ ଇଲେକ୍‌ଟ୍ରିକ କମ୍ପାନୀ ସୁଲଭ ମୂଲ୍ୟରେ ବହୁଦୂରକୁ ବିଦ୍ୟୁତ୍‌ପ୍ରବାହ ପ୍ରେରଣ କରିବାର ଗୋଟିଏ ଉପାୟ ବାହାର କରିଅଛନ୍ତି, ଏହି ସମ୍ବାଦରେ ସମଗ୍ର ଦେଶରେ ଗୋଟାଏ ବିରାଟ ଚାଞ୍ଚଲ୍ୟ ଖେଳିଗଲା । ପୂର୍ବାଞ୍ଚଳର ନାନା ସ୍ଥାନରୁ ଶିଳ୍ପ ପ୍ରତିନିଧି ଓ ବଡ଼ ବଡ଼ କର୍ମଚାରୀମାନେ ପରିବର୍ତ୍ତୀ ପ୍ରବାହର କାର୍ଯ୍ୟକାରିତା ସ୍ୱଚକ୍ଷୁରେ ଦେଖିବା ପାଇଁ ଗ୍ରେଟ ବାରିଙ୍ଗଟନଠାରେ ଉପସ୍ଥିତ ହେଲେ ।

ଦିନେ ଜର୍ଜ ଷ୍ଟାନଲିଙ୍କ ପାଖରୁ ଗୋଟିଏ ଜରୁରୀ ଚିଠି ପାଇଲେ ଯେ ଗୋଟିଏ କମ୍ପାନୀ ଗ୍ରେଟବାରିଙ୍ଗଟନର ଯାବତୀୟ ବୈଦ୍ୟୁତିକ ଯନ୍ତ୍ରପାତି ଖରିଦ କରିନେବାକୁ ଚାହୁଁଛନ୍ତି । ସେ ଲେଖିଥିଲେ, "ଉକ୍ତ କମ୍ପାନୀ ନ ବିଭିନ୍ନ ସରଞ୍ଜାମ ଗ୍ରେଟବାରିଙ୍ଗଟନରୁ ବଫାଲୋ ସହରକୁ ନେବାକୁ ଚାହାନ୍ତି । ସେଠାରେ ସାଧାରଣଙ୍କ ବ୍ୟବହାର ଲାଗି ଏକ ଶକ୍ତି ଉତ୍ପାଦକ କେନ୍ଦ୍ର ପ୍ରତିଷ୍ଠା କରିବା ସେମାନଙ୍କର ଇଚ୍ଛା । ଆମେ ବିକ୍ରି କରିବାକୁ ରାଜି ହେବା କି ?"

ଏହାର ଉତ୍ତରରେ ଜର୍ଜ ତାରବାର୍ତ୍ତାରେ ଜଣାଇଲେ, "ନିଶ୍ଚୟ ବିକ୍ରି କରିଦେବା । ଦର ସକାଶେ କିଛି ଚିନ୍ତା କରିବ ନାହିଁ । ଥରେ ଆମର ଯନ୍ତ୍ର କୌଣସି ସ୍ଥାନରେ ବ୍ୟାବହାରିକ ଉଦ୍ଦେଶ୍ୟରେ ଚାଲୁ ହେଲେ ତାହା ଶହେ ଜଣ ବିକ୍ରେତାଙ୍କର କାର୍ଯ୍ୟ କରିବ ।"

ନ୍ୟୁୟର୍କର ବଫାଲୋ ସହର ସମଗ୍ର ପୃଥିବୀରେ ଓ୍ୱେଷ୍ଟିଂହାଉସ ପଦ୍ଧତିରେ ସର୍ବ ପ୍ରଥମେ ବୈଦ୍ୟୁତିକ ଆଲୋକ ବ୍ୟବହାର କରିବାର ଗୌରବ ଅର୍ଜନ କଲା । ଏହି ଦିନଟି ହେଉଛି ଥାଙ୍କସଗିଭିଂ ଦିବସ,

ଅର୍ଥାତ୍ ନଭେମ୍ବର ମାସର ଶେଷ ଗୁରୁବାର । ଏ ଦିନଟି ଖ୍ରୀଷ୍ଟିୟାନ-ମାନଙ୍କର ଏକ ପର୍ବଦିବସ ।

ଜର୍ଜ ଯାହା ଭାବିଥିଲେ ତାହାହିଁ ହେଲା । ବିଫାଲୋ ସହର ପରିବର୍ତ୍ତୀ ପ୍ରବାହର ଗୋଟିଏ ପ୍ରଦର୍ଶନୀରୂପେ କାର୍ଯ୍ୟ କଲା । ଦେଶର ସମସ୍ତ ଅଞ୍ଚଳରୁ ପରିବର୍ତ୍ତୀ ପ୍ରବାହର ଯନ୍ତ୍ରପାତି ନିମନ୍ତେ ଅର୍ଡ଼ର ଆସି ପହଞ୍ଚିଲା । ଅନେକ ସହରରେ ଏହି ପଦ୍ଧତିର ଶକ୍ତିକେନ୍ଦ୍ର ପ୍ରତିଷ୍ଠିତ ହେଲା । ପେନସିଲଭାନିଆର ଗ୍ରୀନସବର୍ଗ ନାମକ ଗୋଟିଏ ଶିଳ୍ପସମୃଦ୍ଧ ନଗରରେ ସମସ୍ତ ନଗରବାସୀଙ୍କର ବ୍ୟବହାର ନିମନ୍ତେ ମ୍ୟୁନିସିପାଲିଟି ପକ୍ଷରୁ ଗୋଟିଏ ବିଶାଳ ବିଦ୍ୟୁତ୍-ଉତ୍ପାଦନ କେନ୍ଦ୍ର ସ୍ଥାପିତ ହେଲା । ଏବେ ଯଥାର୍ଥରେ ବିଦ୍ୟୁତ୍‌ର ଯୁଗ ଆରମ୍ଭ ହେଲା ।

୧୮୮୬ ଠାରୁ ୧୮୮୮ ମସିହା, ଏହି ଦୁଇ ବର୍ଷ ମଧ୍ୟରେ ପରିବର୍ତ୍ତୀ ପ୍ରବାହର ଯନ୍ତ୍ରପାତିର ଚାହିଦା ଏତେ ଶୀଘ୍ର ଓ ଏତେ ପରିମାଣରେ ବୃଦ୍ଧି ପାଇଲା ଯେ ଓ୍ୱେଷ୍ଟିଂହାଉସ ଇଲେକଟ୍ରିକ କମ୍ପାନୀର ସମ୍ପ୍ରସାରଣ ଅପରିହାର୍ଯ୍ୟ ହୋଇ ପଡ଼ିଲା । ଶ୍ରମିକ ସଂଖ୍ୟା ମାତ୍ର ଦୁଇ ଶହରୁ ତିନି ହଜାରକୁ ବୃଦ୍ଧି ପାଇଲା । ଏହି ଅଭୂତପୂର୍ବ ଉନ୍ନତି ଦେଖି ଜର୍ଜ ବିଶେଷ ସନ୍ତୁଷ୍ଟ ହେଲେ; କିନ୍ତୁ ଏହି ସନ୍ତୋଷ ସଙ୍ଗେ ସାମାନ୍ୟ ଆଶଙ୍କା ମଧ୍ୟ ରହିଥିଲା ।

ଶିଳ୍ପୋନ୍ନୟନ ଓ ମାନବସମାଜର ପ୍ରଗତି ପରସ୍ପର ଅଙ୍ଗାଙ୍ଗୀଭାବେ ଜଡ଼ିତ—ଏହି ଧାରଣାରେ ଜର୍ଜ ସାରାଜୀବନ ବିଶ୍ୱାସ କରୁଥିଲେ । ତାଙ୍କ ମତରେ ଶିଳ୍ପର ଉନ୍ନତି ହେଲେ ମନୁଷ୍ୟ ସର୍ବଦା ସୁଖକର ଜୀବନଯାପନ କରିପାରିବ । ସଂକ୍ଷେପରେ ପ୍ରଗତି ଓ ବନ୍ଧତା (Stagnation) ଚିରକାଳ ପରସ୍ପର ବିରୋଧୀ ବୋଲି ତାଙ୍କର ଧାରଣା ଥିଲା । ଦିନେ ବନ୍ଧତାକୁ ପ୍ରତିହତ କରି ପ୍ରଗତି ଯେ ବିଜୟୀ ହେବ ଏ ବିଷୟରେ ତାଙ୍କର ଲବମାତ୍ର ସଂଶୟ ନ ଥିଲା । ଏବେ ବୟାଳିଶ ବର୍ଷରେ ପଦାର୍ପଣ କରି ଜର୍ଜ ପ୍ରଥମେ ଅନୁଭବ କଲେ ଯେ ପ୍ରଗତି ସହିତ ଅନ୍ୟ ଗୋଟିଏ କଳଙ୍କମୟ ପ୍ରଶ୍ନ ଜଡ଼ିତ ଅଛି । ତାହା ହେଉଛି, ଅତିଦ୍ରୁତ ଶିଳ୍ପୋନ୍ନତି ଫଳରେ ସାମାଜିକ ଅବସ୍ଥାରେ ଘଟୁଥିବା ବିପର୍ଯ୍ୟୟ ।

ସର୍ବପ୍ରଥମେ ସେ ଏହି ସମସ୍ୟା ସହିତ ପିଟସବର୍ଗରେ ପରିଚିତ ହେଲେ । କେତେକ ବର୍ଷ ପୂର୍ବେ ଏହା ଗୋଟିଏ କ୍ଷୁଦ୍ର ପ୍ରାଦେଶିକ ସହର ଥିଲି; କିନ୍ତୁ ବର୍ତ୍ତମାନ ଏହା ଗୋଟିଏ ବିରାଟ ଶିଳ୍ପ କେନ୍ଦ୍ରରେ ପରିଣତ ହୋଇଅଛି । ଏହା ଏବେ କଳକାରଖାନାରେ ପରିପୂର୍ଣ୍ଣ; ଏହାର ଗଳିକନ୍ଦି ଅପରିଷ୍କୃତ, ଧୂଆଁ ଓ ମଇଳାରେ ଆଚ୍ଛନ୍ନ । ନଗରର କେନ୍ଦ୍ର ସ୍ଥଳ ଯେଉଁଠାରେ ସୁନ୍ଦର ଜନବସତି ଥିଲା, ତାହା ଶିଳ୍ପାଞ୍ଚଳର ଶ୍ରମିକ ବସତିରେ ପରିଣତ ହୋଇଅଛି । ସେ ସ୍ଥାନ ଯେପରି ଶ୍ରୀହୀନ ହୋଇଅଛି, ଲୋକମାନେ ମଧ୍ୟ ସେହିପରି ଶ୍ରୀହୀନ ହୋଇଯାଇଅଛନ୍ତି । କାରଖାନା-ମାନଙ୍କ ଚତୁଃପାର୍ଶ୍ୱରେ କଦର୍ଯ୍ୟ, ଜନବହୁଳ ପରିବେଶ ମଧ୍ୟରେ ଚୋରି ଡକାଏତି ଆଦି ଅପରାଧ, ରୋଗ, ମଦ୍ୟ ପାନ ପ୍ରଭୃତି ବୃଦ୍ଧି ପାଉଥିଲା । ଲୋକମାନେ ଦୈନ୍ୟରେ ଜୀବନଯାପନ କରୁଥିଲେ । ଅଧିକାଂଶ ଅଧିବାସୀ ବିଦେଶରୁ ଆସିଥିଲେ । ସେମାନେ ନୂତନ ଜଗତରେ ଅର୍ଥ ଉପାର୍ଜ୍ଜନର ପନ୍ଥା ଖୋଜିବାକୁ ଆୟର୍ଲାଣ୍ଡ, ଜର୍ମାନୀ, ପୋଲାଣ୍ଡ, ଇଟାଲି ପ୍ରଭୃତି ଦେଶରୁ ଆସିଥିଲେ । ଆଉ କେତେକ ଥିଲେ ଆମେରିକାର ଅଧିବାସୀ । ସେମାନେ ନିଜର କୃଷିଜୀବିକା ତ୍ୟାଗ କରି ଅଧିକ ସୁଖରେ ରହିବା ଆଶାରେ ସହରକୁ ଆସିଥିଲେ । କେତେକ ଶିଳ୍ପକର୍ମରେ ଅଧିକ ଲାଭ ପାଇବା ଲକ୍ଷ୍ୟରେ ଅନ୍ୟ ସହରରୁ ଏଠାକୁ ଚାଲି ଆସିଥିଲେ । ସେମାନଙ୍କୁ କାରଖାନାମାନଙ୍କରେ ଦୀର୍ଘସମୟ ଧରି କାର୍ଯ୍ୟ କରିବାକୁ ହେଉଥିଲା । ରାତିରେ ଶ୍ରାନ୍ତକ୍ଲାନ୍ତ ହୋଇ ସେମାନେ ଏହି ବସ୍ତି ଅଞ୍ଚଳର ଭଙ୍ଗା କୁଡ଼ିଆକୁ ଫେରି ଆସୁଥିଲେ । ସେଠାରେ ଏତେ ଲୋକଙ୍କ ପାଇଁ ସ୍ଥାନାଭାବ; ସୁଖ ସ୍ୱାଚ୍ଛନ୍ଦ୍ୟର ସୀମା ନାହିଁ । ସେମାନଙ୍କ ସନ୍ତାନ ସନ୍ତତିମାନେ ରୁଗ୍ଣ ଶୀର୍ଣ୍ଣ ଶରୀରରେ ମଇଳାଗଦା ମଧ୍ୟରେ ଖେଳି ବୁଲୁଥିଲେ । ପିତାମାତାମାନେ ସନ୍ତାନମାନଙ୍କର ଏପରି ଦୁର୍ଦ୍ଦଶା ଦେଖି ହତାଶ ହେଉଥିଲେ; କିନ୍ତୁ କିଛି ପ୍ରତିକାର କରି ପାରୁନଥିଲେ । ପିଲାମାନେ ସ୍କୁଲକୁ ଯିବା ଦେଖାଯାଉ ନ ଥିଲା । ରୋଗ ଓ ଅପରାଧ ପ୍ରବଣତା (delinquency) ଯେପରି ପ୍ରବଳ ଥିଲା, ନିରକ୍ଷରତା ମଧ୍ୟ ସେହିପରି ପ୍ରବଳ ଥିଲା ।

ହେନେରୀ ହେନ ଜର୍ଜ ଏହି ଦୁରବସ୍ଥା ଅନ୍ୟକରୁ ଅଧିକତର ହୃଦୟଙ୍ଗମ କରି ପାରିଥିଲେ । ସେ ନିଜକୁ ପ୍ରଶ୍ନ କଲେ—ଏହି ଲୋକମାନଙ୍କର ଏ

ପ୍ରକାର ଦୁରବସ୍ଥା ପ୍ରତି କେହି ଦୃଷ୍ଟି ପକାଉ ନାହାନ୍ତି କାହିଁକି ? ଦୋଷ କେଉଁଠାରେ ତାହା ବୁଝିବା କଷ୍ଟକର ବ୍ୟାପାର ନ ଥିଲା । ଶିଳ୍ପପତିମାନେ କାରଖାନା ବସାଇବାବେଳେ ପାର୍ଶ୍ୱବର୍ତ୍ତୀ ସ୍ଥାନର ଲୋକମାନଙ୍କ ଜୀବନ ଉପରେ ଏହାର କି ପ୍ରକାର ପ୍ରଭାବ ପଡିବ ତାହା ଆଦୌ ବିଚାର କରୁ ନ ଥିଲେ । ଉଚ୍ଚ କର୍ମଚାରୀମାନେ କେବଳ ଧନିକ ଓ ବଜମାନ୍ତ କ୍ଷେତ୍ରରେ ପ୍ରତିପତ୍ତିଶାଳୀ ଲୋକଙ୍କ ସୁଖସୁବିଧା ପ୍ରତି ଦୃଷ୍ଟି ଦେଉଥିଲେ । ସାଧାରଣ ନାଗରିକ ଅନ୍ୟମାନଙ୍କ ବିଷୟରେ ସମ୍ପୂର୍ଣ୍ଣ ଉଦାସୀନ ରହୁଥିଲା । ସେ କେବଳ ନିଜ ବିଷୟ ଚିନ୍ତା କରୁଥିଲା; ନିଜର ସୁଖସୁବିଧାରେ ବାଧା ନ ପଡ଼ିବା ପର୍ଯ୍ୟନ୍ତ ସେ ନିଶ୍ଚିନ୍ତ । ଜର୍ଜ ଦେଖିଲେ ଯେ ଦୋଷ, ତ୍ରୁଟି, ବିଚ୍ୟୁତି ସବୁଆଡ଼େ ପୂରି ରହିଛି । କିନ୍ତୁ ବଡ଼ ପ୍ରଶ୍ନ ହେଉଛି—ଏହାର ସଂଶୋଧନ ପାଇଁ କଅଣ କରାଯାଇ ପାରେ ? ଜଣେ ବ୍ୟକ୍ତିବିଶେଷ ଭାବରେ ସେ ନିଜେ ଏ ଦିଗରେ କଅଣ କରି ପାରିବେ ?

ଜର୍ଜ କେଉଁଠାରେ ପଢ଼ିଥିଲେ ଯେ ଇଉରୋପର କେତେକ ରାଜ୍ୟରେ ବିଶେଷତଃ ଡେନମାର୍କ ଓ ସ୍ୱିଡେନରେ ଆଦର୍ଶ ବାସଗୃହଯୋଜନା ଦିଗରେ ଉଦ୍ୟମ କରି ଯାଉଥିଲା । ବସ୍ତିଗୁଡ଼ିକୁ ସଫା କରାଯାଇ ତାହା ସ୍ଥାନରେ ସୁନ୍ଦର ବାସଗୃହ, ପାଠଶାଳା, ଡାକ୍ତରଖାନା, ସ୍ୱାସ୍ଥ୍ୟକେନ୍ଦ୍ର ପ୍ରଭୃତି ପ୍ରତିଷ୍ଠା ହେଉଥିଲା । ସେହି ଦେଶମାନଙ୍କର ସରକାରୀ କର୍ମଚାରୀ ତଥା ଶିଳ୍ପପତିମାନେ ଦୂରଦର୍ଶୀ ଥିଲେ । ଯେଉଁଠାରେ ଇଚ୍ଛା ସେଠାରେ ଲୋକମାନେ ଯେପରି ଇଚ୍ଛା ସେପରି ଘର ତିଆରି କରି ରହିବାକୁ ସେମାନେ ଛାଡ଼ି ଦେଉନଥିଲେ । ଲୋକେ କିପରି ସନ୍ତୋଷଜନକ ଅବସ୍ଥାରେ ଜୀବନ ଯାପନ କରିପାରିବେ, ପରିବାରର ଲୋକେ କିପରି ଜୀବନକୁ ଉପଭୋଗ କରିପାରିବେ, ଏ ସବୁ ପ୍ରତି ଦୃଷ୍ଟି ରଖି ସେମାନେ ଆଗେ ଅତି ଯତ୍ନ ସହକାରେ ବସତି ଗଢ଼ିବାର କଳ୍ପନା କରୁଥିଲେ । ତେବେ ଆମେରିକା ଯୁକ୍ତରାଷ୍ଟ୍ରରେ ସେହିପରି କରାଯାଇ ନ ପାରିବ କାହିଁକି ?

ଏପରି ଏକ କଳ୍ପନାକୁ କାର୍ଯ୍ୟରେ ପରିଣତ କରିବାପାଇଁ ଯଥେଷ୍ଟ ସାହାସର ପ୍ରୟୋଜନ । କିନ୍ତୁ ନିଜର ଧାରଣାକୁ କାର୍ଯ୍ୟରେ ପରିଣତ କରିବା ଯେତେ ଦୁଃସାଧ୍ୟ ହେଲେହେଁ ସେଥିରେ ଭୀତ ବା ପଶ୍ଚାତ୍‌ପଦ ହେବା ତାଙ୍କ ଜାତକରେ ନଥିଲା । ସେ ଚିନ୍ତା କଲେ—ନୂତନ କାରଖାନା

ବସାଇବାକୁ କଳ୍ପନା କଲବେଳେ ଶିଳ୍ପପତି କେବଳ ନିଜ କାରଖାନା କଥା ନ ଭାବି ସମଗ୍ର କାରଖାନାର କର୍ମୀମାନଙ୍କ ଜୀବନଯାତ୍ରା ପ୍ରଣାଳୀ କଥା କଳ୍ପନା କରିବ ନାହିଁ କାହିଁକି ? ଜର୍ଜଙ୍କ ପକ୍ଷରେ ଏହା ଗୋଟିଏ ସ୍ୱପ୍ନ ଏବଂ ଏହି ସ୍ୱପ୍ନକୁ ସତ୍ୟରେ ପରିଣତ କରିବାକୁ ସେ ସଂକଳ୍ପବଦ୍ଧ ହୋଇଲେ । ଗୋଟିଏ ଆଦର୍ଶ ସମାଜର ବାସସ୍ଥାନ ତାଙ୍କ କଳ୍ପନା ଚକ୍ଷୁରେ ଦେଖାଗଲା । ସେଠାରେ କାରଖାନା ଘରଗୁଡ଼ିକ ଆଧୁନିକ ଧରଣରେ ନିର୍ମିତ ହେବ; କର୍ମୀମାନେ ସ୍ୱଳ୍ପବ୍ୟୟରେ ସୁନ୍ଦର ଘରେ ରହିପାରିବେ; ଆଧୁନିକ ପଦ୍ଧତିରେ ବିଶୁଦ୍ଧ ଜଳଯୋଗାଣର ବ୍ୟବସ୍ଥା ଥିବ; ଏପରି କି ଗୋଟିଏ ସ୍ୱୟଂସମ୍ପୂର୍ଣ୍ଣ ବୈଦ୍ୟୁତିକ କେନ୍ଦ୍ର ଥିବ । ତାଙ୍କ ମାନସ ଚକ୍ଷୁରେ ଦେଖାଦେଲା ଗୋଟାଏ ଶିଳ୍ପସମୃଦ୍ଧ ନଗରୀ; କିନ୍ତୁ ତାହା ବର୍ତ୍ତମାନର ଶିଳ୍ପ ନଗରୀଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସେଥିରେ ଅଛି ଯଥେଷ୍ଟ ସଂଖ୍ୟକ ଶିକ୍ଷାନୁଷ୍ଠାନ, ଆବାଳବୃଦ୍ଧବନିତାଙ୍କ ପାଇଁ ପ୍ରମୋଦ କେନ୍ଦ୍ର, ସକଳ ପ୍ରକାର ସାଜ ସରଞ୍ଜାମରେ ସୁସଜ୍ଜିତ ଡାକ୍ତରଖାନା । ଦରିଦ୍ରତମ ଶ୍ରମିକର ମଧ୍ୟ ଶିଳ୍ପୋନ୍ନତିର ସୁଫଳରେ ଗୋଟାଏ ଅଂଶ ଅଛି—ଏହି ମତ ଉପରେ ନିର୍ଭର କରି ଏପରି ଆଦର୍ଶ ଶିଳ୍ପନଗରୀ ଗଢ଼ି ଉଠିବ ।

କେତେକ ଦିନ ମଧ୍ୟରେ ଜର୍ଜ ଗୋଟିଏ ବିଶିଷ୍ଟ ସ୍ଥପତି ଅନୁଷ୍ଠାନ ସହିତ ସଂଯୋଗ ସ୍ଥାପନ କରି ଜଣାଇଲେ ଯେ ଓ୍ୱେଷ୍ଟିଂହାଉସ ଏୟାର ବ୍ରେକ କମ୍ପାନୀକୁ ସ୍ଥାନାନ୍ତରିତ କରିବା ତାଙ୍କର ଇଚ୍ଛା । "ଆପଣମାନେ ଏଥିପାଇଁ ଗୋଟିଏ କାରଖାନା ଘର ଓ ଏହାର ଚତୁଃପାର୍ଶ୍ୱସ୍ଥ ସହର ନିମନ୍ତେ ଗୋଟିଏ ନକ୍ସା କରି ଦିଅନ୍ତୁ ।"

ଉକ୍ତ ସ୍ଥପତି ଅନୁଷ୍ଠାନର ପରାମର୍ଶ ଅନୁସାରେ ପିଟ୍ସବର୍ଗଠାରୁ ଦଶ ମାଇଲ ଦୂରରେ ଗୋଟିଏ ସ୍ଥାନ ନିର୍ବାଚନ କରାଗଲା । ଏହି ଅଞ୍ଚଳଟିରେ କେତେକ ଛୋଟ ପାହାଡ଼ ଥିଲା ଓ ତାହା ମଧ୍ୟରେ ସ୍ଥାନେ ସ୍ଥାନେ ମୁକ୍ତ ପ୍ରାନ୍ତରରେ କେତୋଟି ଛୋଟ ଗ୍ରାମ । କେତୋଟି ମାସ ମଧ୍ୟରେ ନୂତନ ସହରର ରୂପରେଖର ସାମାନ୍ୟ ଆଭାସ ମିଳିଲା । ଦୁଇ ବର୍ଷ ପରେ ପେନସିଲଭାନିଆର ଆଦର୍ଶ ସହର ଉଇଲମର୍ଡିଂ ଜନ୍ମ ପରିଗ୍ରହ କଲା ।

୧୮୯୦ ମସିହାର ପ୍ରଥମ ଭାଗରେ ଏୟାରବ୍ରେକ କମ୍ପାନୀ ସମସ୍ତ ସାଜସରଞ୍ଜାମ ସହିତ ସ୍ଥାନାନ୍ତରିତ ହୋଇ ୱିଲମାର୍ଡିଂରେ ପ୍ରତିଷ୍ଠିତ ହେଲା । ଏଠାରେ ବାସ୍ତବରେ ଜର୍ଜଙ୍କର ସ୍ୱପ୍ନ ସଫଳ ହୋଇଥିଲା । ଶ୍ରମିକମାନଙ୍କର ସୁଖସ୍ୱାଚ୍ଛନ୍ଦ୍ୟକୁ ଶୀର୍ଷସ୍ଥାନ ଦିଆଯାଇ ବାସଗୃହଗୁଡ଼ିକ ନିର୍ମିତ ହୋଇଥିଲା । କାରଖାନାରେ ଅତ୍ୟାଧୁନିକ ଆଲୋକ, ଉତ୍ତାପ, ବାୟୁଗମନାଗମନ ଓ ନିଗପତ୍ତିର ବ୍ୟବସ୍ଥା ଥିଲା । କମ୍ପାନୀ ପକ୍ଷରୁ ଶ୍ରମିକ-ମାନଙ୍କ ପାଇଁ ଯେଉଁ ଗୃହଗୁଡ଼ିକ ନିର୍ମିତ ହୋଇଥିଲା । ସେଗୁଡ଼ିକର ଦୃଶ୍ୟ ମନୋହର । ଗୃହଗୁଡ଼ିକର ନିକଟରେ ଘାସ ପଡ଼ିଆ ଓ ବୃକ୍ଷଲତା ଥିଲା । ଏଗୁଡ଼ିକ ଶ୍ରମିକମାନଙ୍କୁ ଭଡ଼ା ଦିଆ ଯାଉଥିଲା; କିନ୍ତୁ କୌଣସି ଶ୍ରମିକ ଇଚ୍ଛା କଲେ ନିଜର ଘରଟି କିଣି କରିବାକୁ ସୁବିଧା ଦିଆଯାଉଥିଲା । ପ୍ରତ୍ୟେକ ଗୃହ ମଧ୍ୟରେ ଗୋଟିଏ ଗାଧୋଇବା ଘର, ପାଣିକଳ, ବିଜୁଳିବତି, ରନ୍ଧନ ଓ ଉତ୍ତାପ ନିମନ୍ତେ ଗ୍ୟାସ ପାଇପର ବ୍ୟବସ୍ଥା ଥିଲା । ସ୍କୁଲମାନଙ୍କରେ ଆଧୁନିକ ଧରଣରେ ଶିକ୍ଷା ଦେବାର ସମସ୍ତ ଉପକରଣ ଥିଲା । ଅଳ୍ପ ବୟସ୍କ ବାଳକବାଳିକାମାନଙ୍କ ପକ୍ଷରେ ଆକର୍ଷଣୀୟ କରିବା ନିମନ୍ତେ ସ୍କୁଲଘରଗୁଡ଼ିକରେ ରଙ୍ଗ ଦିଆଯାଇଥିଲା । ସର୍ବସାଧାରଣଙ୍କ ଆମୋଦ ପ୍ରମୋଦ ନିମନ୍ତେ ଗୋଟିଏ କେନ୍ଦ୍ର ସ୍ଥାପିତ ହୋଇଥିଲା । ସେଥିରେ ବ୍ୟାୟାମାଗାର, ପୁସ୍ତକାଗାର୍ ଓ ସଭାଗୃହ ମଧ୍ୟ ଥିଲା ।

ଏହାଛଡ଼ା ସେ ଶ୍ରମିକମାନଙ୍କ ମଙ୍ଗଳ ଉଦ୍ଦେଶ୍ୟରେ କ୍ଷତିପୂରଣ ପ୍ରଦାନ, ବିନା ବ୍ୟୟରେ ଚିକିତ୍ସା ଓ ହାସପାତାଳର ସୁବିଧା ପ୍ରଭୃତି କେତେକ ପରିକଳ୍ପନା କଲେ । ଏଗୁଡ଼ିକ ତାଙ୍କର ଦୂରଦୃଷ୍ଟିର ପରିଚୟ ଦିଏ । କୌଣସି ଶ୍ରମିକ ରୋଗରେ ପଡ଼ିଲେ କିମ୍ବା କୌଣସି ଦୁର୍ଘଟନାରେ ଆଘାତ ପାଇଲେ ସେ ଓ ତାର ପରିବାର କ୍ଷତିପୂରଣ ପାଣ୍ଠିରୁ ସାହାଯ୍ୟ ପାଇ ପାରିବେ ଏବଂ ତାକୁ ଉପଯୁକ୍ତ ଚିକିତ୍ସା କରାଯିବ । ଏ ସବୁ ଦାୟିତ୍ୱ କମ୍ପାନୀ ଗ୍ରହଣ କରିବ ।

ୱିଲମାର୍ଡିଂର ଏହି ଅଦ୍ଭୁତ କାର୍ଯ୍ୟାବଳୀ ଓ ଶ୍ରମିକମାନଙ୍କ ନିମନ୍ତେ ଉନ୍ନତ ବ୍ୟବସ୍ଥା ସମଗ୍ର ଦେଶର ଦୃଷ୍ଟି ଆକର୍ଷଣ କଲା । ଏଥିପୂର୍ବରୁ ପିଟସବର୍ଗରେ ଥିଲାବେଳୁ ଜର୍ଜଙ୍କର ସୁଖ୍ୟାତି ଥିଲା ଯେ ସେ କର୍ମକୁଶଳୀ ଓ ଶ୍ରମିକମାନଙ୍କ ପ୍ରତି ଉଦାର । ତେଣୁ ସେଠାରେ ଅନ୍ୟାନ୍ୟ ଶିଳ୍ପପତିମାନେ

ତାଙ୍କ ପ୍ରତି ବିଦ୍ୱେଷଭାବ ପୋଷଣ କରୁଥିଲେ । ଏବେ ଉଇଲମାର୍ଡ୍ିଂର ଆଦର୍ଶ ଶିଳ୍ପନଗରୀ ସ୍ଥାପନ ପରେ ତାଙ୍କର ଯଶ ଦେଶର ଚାରିଆଡ଼େ ବ୍ୟାପିଗଲା । ବହୁସଂଖ୍ୟକ ସମ୍ବାଦପତ୍ର ଓ ସାମୟିକ ପତ୍ରିକାର ପ୍ରତିନିଧି-ମାନେ ଏହି ନଗରୀକୁ ଦେଖି ଏହା ସମ୍ବନ୍ଧରେ ପ୍ରବନ୍ଧମାନ ପ୍ରକାଶ କରିବାକୁ ଲାଗିଲେ ।

ଆମେରିକା ଯୁକ୍ତରାଷ୍ଟ୍ରରେ ସେତେବେଳେ ଶ୍ରମିକ ସମସ୍ୟାରେ ବିରାଟ ପରିବର୍ତ୍ତନର ସୂତ୍ରପାତ ହୋଇଥିଲା । କାରଖାନାର କି ପୁରୁଷ କି ସ୍ତ୍ରୀ ପ୍ରତ୍ୟେକ ଶ୍ରମିକ ତାହାର ଅଧିକାର ବିଷୟରେ ସଚେତନ ହୋଇ ଆସୁଥିଲା । ଉପଯୁକ୍ତ ମଜୁରି ଓ କାର୍ଯ୍ୟ କରିବାର ଉପଯୁକ୍ତ ସୁବିଧାର ବ୍ୟବସ୍ଥା ଦାବି କରିବାକୁ ସେମାନେ ଶିଖିଥିଲେ । ଶିଳ୍ପପତିମାନେ ଶ୍ରମିକ-ମାନଙ୍କର ଏହି ଉଦ୍ୟମର ଘୋର ବିରୋଧୀ ଥିଲେ । ଶ୍ରମିକମାନେ ୟୁନିଅନ ଗଠନ କରି ନିଜର ଦାବି ଦୃଢ଼ କରୁଥିଲେ । କାରଖାନା ମାଲିକମାନେ ମନେ କରୁଥିଲେ ଯେ ଶ୍ରମିକ ୟୁନିଅନ ଶିଳ୍ପପତିମାନଙ୍କ ଚିରନ୍ତନ ଅଧିକାର ଉପରେ ହସ୍ତକ୍ଷେପ କରିବାକୁ ବସୁଛି । ଯେତେବେଳେ ଉଇଲମାର୍ଡ୍ିଂର କାରଖାନା ପରିଚାଳନା ଓ ଶ୍ରମିକମଙ୍ଗଳ ପାଇଁ ଜର୍ଜଙ୍କର ସୁବ୍ୟବସ୍ଥା ବିଷୟ ପ୍ରଚାରିତ ହେଲା ସେତେବେଳେ ସେହି କାରଖାନା ମାଲିକମାନେ ଜର୍ଜଙ୍କ ଉପରେ ଖଡ୍ଗହସ୍ତ ହୋଇ ଉଠିଲେ ଓ ତାଙ୍କର ଅନିଷ୍ଟ ଚିନ୍ତା କଲେ । ଶ୍ରମିକ ୟୁନିଅନ ଯେତିକି ସୁଯୋଗ ଦାବି କରିବାର ସମ୍ଭାବନା, ସେମାନଙ୍କୁ ସ୍ୱେଚ୍ଛାରେ ତହିଁରୁ ଅଧିକ ସୁଯୋଗ ଦେଇ ଜର୍ଜ ଶିଳ୍ପପତିମାନଙ୍କ ପ୍ରତି ବିଶ୍ୱାସଘାତକର କାର୍ଯ୍ୟ କରିଅଛନ୍ତି ବୋଲି ସେମାନେ ପ୍ରଚାର କରିବାକୁ ଲାଗିଲେ ।

ଏହି ବ୍ୟକ୍ତିଗତ ଆକ୍ରମଣ ଓ ନିନ୍ଦାକୁ ଜର୍ଜ ଭ୍ରୂକ୍ଷେପ କରି ନ ଥିଲେ । ଶ୍ରମିକମାନଙ୍କ ସହିତ କାରଖାନା ମାଲିକର ସମ୍ବନ୍ଧ ବିଷୟରେ ନିଜର ଧାରଣା ଠିକ ବୋଲି ତାଙ୍କର ଦୃଢ଼ବିଶ୍ୱାସ ଥିଲା । ସେ ଜଣାଇ-ଦେଲେ—ମୁଁ ମୋର ମତ ଅନୁସାରେ କାର୍ଯ୍ୟ କରୁଛି ଓ କରିବି । ଅନ୍ୟ କାରଖାନା ମାଲିକମାନେ ମୋର ନୀତି ଅନୁସରଣ କରନ୍ତୁ । ପ୍ରତି-ଯୋଗିତାରେ ମୋର ପୂର୍ଣ୍ଣବିଶ୍ୱାସ । ଏହି ପ୍ରତିଯୋଗିତା ହେଉଛି ସ୍ୱାଧୀନ ଅର୍ଥନୀତିର ସାର କଥା । ମୋ ମତରେ କାରଖାନାମାଲିକମାନେ ଶ୍ରମିକ-

ମାନଙ୍କ ମଙ୍ଗଳ ବିଧାନରେ ପ୍ରତିଯୋଗିତା କରନ୍ତୁ; ଅଧିକ ପରିମାଣରେ ଓ ଉନ୍ନତତର ବସ୍ତୁ ଉତ୍ପାଦନରେ ପ୍ରତିଯୋଗିତା କରନ୍ତୁ; ଦ୍ରବ୍ୟର ମୂଲ୍ୟ ହ୍ରାସ କରିବାରେ ପ୍ରତିଯୋଗିତା କରନ୍ତୁ । ଆମର ସାଧାରଣ ଜ୍ଞାନ କହୁଛି ଯେ ଶ୍ରମିକମାନେ ସୁଖରେ ଜୀବନ ଯାପନ କଲେ ଅଧିକ ଉତ୍ପାଦନ କରିବେ; ଫଳରେ କମ୍ପାନୀର ଲାଭ ହେବ ।

ଜର୍ଜ ଆଜି ଗୋଟିଏ ଅଭିନବ ପ୍ରଥା ପ୍ରବର୍ତ୍ତନ କଲେ । ଓ୍ୱେଷ୍ଟିଂହାଉସ କମ୍ପାନୀମାନଙ୍କର କର୍ମୀମାନଙ୍କୁ ପୂର୍ଣ୍ଣ ବେତନରେ ଶନିବାର ଦିନ ଉପରବେଳାଟି ଛୁଟି ଦିଆଗଲା । ତାଙ୍କର ଅନୁଗତ ଡିରେକ୍ଟରମାନେ ମଧ୍ୟ ଏ ପ୍ରଥାରେ ସଂଶୟ ପ୍ରକାଶ କଲେ । ସେମାନଙ୍କର ଧାରଣା ହେଲା ଯେ ଏହାଦ୍ୱାରା ବ୍ୟୟ ଅତ୍ୟଧିକ ପରିମାଣରେ ବୃଦ୍ଧି ପାଇବ । ଜର୍ଜ ଟିକିଏ ହସି ଦେଇ କହିଲେ, "ପିଲାଦିନେ ମୁଁ ବାପାଙ୍କ କାରଖାନାରେ କାମ କରୁଥିଲା ବେଳେ ଦିନେ ପ୍ରତିଜ୍ଞା କରିଥିଲି ଯେ ମୋର ନିଜର ଗୋଟାଏ କାରଖାନା ହେଲେ ତା'ର ଶ୍ରମିକମାନଙ୍କୁ ଶନିବାର ଉପରବେଳାଟି ପୂର୍ଣ୍ଣ ବେତନରେ ଛୁଟି ଦେବି । ଏହାକୁ ମୋର ଗୋଟାଏ ଖିଆଲ କହିପାରନ୍ତି; କିନ୍ତୁ ମୋର ପିଲାଦିନର ସେହି ଖିଆଲଟା ଚରିତାର୍ଥ କରିବାରେ ଆପଣମାନେ ମୋତେ ସାହାଯ୍ୟ କରିବେ ବୋଲି ମୋର ଆଶା ।"

ଡିରେକ୍ଟରମାନେ ଏହି ପ୍ରସ୍ତାବକୁ ସମର୍ଥନ ଜଣାଇଲେ ।

ବିସ୍ମୟର ବିଷୟ ଏହି ଯେ ଶ୍ରମିକ ସମସ୍ୟା ବିଷୟରେ ତାଙ୍କର ମତ ଏତେ ଉଦାର ଥିଲେହେଁ ସେ ଦାନ ଦେବା ପ୍ରଥାର ଘୋର ବିରୋଧୀ ଥିଲେ । ହୁଏତ ଏହି ବିରୋଧର ମୂଳରେ ଥିଲା, ଶ୍ରମିକମାନଙ୍କ ପ୍ରତି ତାଙ୍କର ଉଦାର ମନୋଭାବ । କୌଣସି ବ୍ୟକ୍ତିର ଆୟ ବା ସାମାଜିକ ଆସନ ଯାହା ହେଉନା କାହିଁକି, ତା ପକ୍ଷରେ ଆତ୍ମମର୍ଯ୍ୟାଦା ସର୍ବାପେକ୍ଷା ଅଧିକ ମୂଲ୍ୟବାନ । ଦାନ ଦେବାଦ୍ୱାରା ଦାତା ଓ ଗ୍ରହୀତା ଉଭୟଙ୍କର ସମ୍ମାନରେ ବ୍ୟାଘାତ ଜନ୍ମେ । ନିତାନ୍ତ ନିରୂପାୟ ନ ହେଲେ ଦାନ ଦେବା ବା ଦାନଗ୍ରହଣ କରିବା କଦାପି ଉଚିତ ନୁହେଁ; ଏହାହିଁ ତାଙ୍କର ମତ ଥିଲା । ସେ କହୁଥିଲେ, "ଯେ ଦାନ ଗ୍ରହଣ କରେ ସେ ନିଜକୁ

ହୀନ ମନେ କରେ; ଦାତା ନିଜକୁ ବଡ଼ ମନେ କରେ । ଜଣକୁ ଦାନ ସ୍ୱରୂପ ପାଞ୍ଚ ଡଲାର ଦେଇ ତାକୁ ହୀନମ୍ମନ୍ୟ କରିବା ଅପେକ୍ଷା ତାକୁ ଏକ ଡଲାର ଅର୍ଜନ କରିବାର ସୁଯୋଗ ଦେବା ଅଧିକ ଶ୍ରେୟସ୍କର ।”

ପରେ ବ୍ୟବସାୟ ମାନ୍ଦା ହୋଇଯିବାରୁ ତାଙ୍କର ଗୋଟିଏ କମ୍ପାନୀର ସୁପରିଣ୍ଟେଣ୍ଡେଣ୍ଟ ଆସି ଜଣାଇଲେ ଯେ କେତେ ଜଣ ଶ୍ରମିକଙ୍କୁ ଅସ୍ଥାୟୀ ଭାବରେ କାର୍ଯ୍ୟରୁ ଅନ୍ତର କରିବା ଆବଶ୍ୟକ ।

ଜର୍ଜ ପଚାରିଲେ, “କାମ ନ ପାଇଲେ ସେମାନେ ଓ ସେମାନଙ୍କ ପରିବାର କିପରି ଚଳିବେ ?”

ସୁପରିଣ୍ଟେଣ୍ଡେଣ୍ଟ ଟିକିଏ ଇତସ୍ତତ ହୋଇ କହିଲେ, “ସେ କଥା ମୁଁ କହି ପାରିବି ନାହିଁ ।”

“ତାହାହେଲେ ସେମାନଙ୍କୁ ଶ୍ରମିକ ତାଲିକାରେ ରଖି କିଛି କାମ ଦିଅ ।”

“ଆପଣ ଯେତେବେଳେ କହୁଛନ୍ତି, ସେମାନଙ୍କ ନାମ ଶ୍ରମିକ ତାଲିକାରେ ରଖିବି; କିନ୍ତୁ ସେମାନଙ୍କୁ ଲଗାଇବାପାଇଁ କିଛି କାମ ନାହିଁ ।”

“ଗୋଟାଏ କିଛି କାମ ବାହାର କର । ଯଦି କିଛି କାମ ପାଉ ନାହିଁ, ତେବେ ସେମାନଙ୍କୁ କାରଖାନାର ଜିନିଷପତ୍ର ଘରର ଏ ପାଖରୁ ସେପାଖକୁ ନେବା ଓ ସେପାଖରୁ ଏପାଖକୁ ଆଣିବା କାମରେ ଲଗାଇ ଦିଅ । ସେମାନେ ଆମର ବେତନଭୋଗୀ କର୍ମଚାରୀ । ସେମାନଙ୍କୁ ଖାଇବାକୁ ଦେବାକୁ ହେବ । କିନ୍ତୁ ମୁଁ ଚାହେଁ, ସେମାନଙ୍କର ଆତ୍ମସମ୍ମାନ ଯେପରି କ୍ଷୁଣ୍ଣ ନ ହୁଏ ।”

୧୮୯୦ ମସିହାର ଶେଷଭାଗକୁ ଉଇଲମାର୍ଡିଂ ପ୍ରତିଷ୍ଠିତ ହେବାର ଦଶ ମାସ ନ ପୂରୁଣୁ ଜର୍ଜ ଗୋଟିଏ ଦାରୁଣ ସମ୍ବାଦ ପାଇଲେ ଯେ ଶୋଇଥିବା ଅବସ୍ଥାରେ ତାଙ୍କର ପିତାଙ୍କର ମୃତ୍ୟୁ ହୋଇ ଯାଇଅଛି ।

ଦୁଃଖରେ ଅଭିଭୂତ ହୋଇ ଶବସତ୍କାର ଉଦ୍ଦେଶ୍ୟରେ ସେ ହରିମାନ ସହିତ ଶୋନେକଟାଡ଼ିକୁ ଯାତ୍ରାକଲେ ।

ପିତାଙ୍କ ଶେଷକୃତ୍ୟ ପରେ ଅଶୀ ବର୍ଷର ବୃଦ୍ଧା ମାତାଙ୍କୁ ସଙ୍ଗରେ ଆଣି 'ନିଭୃତ ନିଳୟ'ରେ ରଖିବାର ଇଚ୍ଛା ପ୍ରକାଶ କରି କହିଲେ, "ମାଆ, ମୋର ଯେତେବେଳେ ମାର୍ଗାରେଟ ସଙ୍ଗରେ ବିବାହ ହେଲା, ସେତେବେଳେ ତୁମେ ଆମ ଦୁହିଁଙ୍କୁ ତୁମ ଘରେ ସ୍ଥାନ ଦେଇଥିଲ । ଏବେ ତୁମେ ଆସି ଆମ ଘରେ ରହ ।"

ଏମେଲିନ ଓ୍ୱେଷ୍ଟିଂହାଉସଙ୍କର ସବୁ ବାଳ ଧଳା ହୋଇ ଯାଇଥିଲା; ସେ ଅସୁସ୍ଥ ଥିଲେ । ତଥାପି ସେ ଟିକିଏ ସାବଧାନ ହୋଇ କହିଲେ, "କିନ୍ତୁ ମାର୍ଗାରେଟର ଏ ବିଷୟରେ ମତ କଅଣ ?"

ଜର୍ଜ କହିଲେ, "ସେଇ ମାର୍ଗାରେଟ ତ କହୁଛି ଯେ ତୁମେ ଆସି ଆମ ଦୁହିଁଙ୍କ ପାଖରେ ନିଭୃତ ନିଳୟରେ ରହିବ ।"

ଏହାପରେ ମାଆ ପୁଅ ସହିତ 'ନିଭୃତ ନିଳୟରେ' ରହିବାକୁ ଚାଲିଗଲେ ।

ଓ୍ୱେଷ୍ଟିଂହାଉସ କମ୍ପାନୀର ଅସମ୍ଭାବ୍ୟ ଉନ୍ନତି ଫଳରେ କେତେକ ନୂତନ ସମସ୍ୟାର ସୃଷ୍ଟି ହେଲା ।

ପରିବର୍ତ୍ତୀ ପ୍ରବାହ ଲୋକପ୍ରିୟ ହୋଇ ଉଠିବା ସଙ୍ଗେ ସଙ୍ଗେ ଉନ୍ନତତର ଯନ୍ତ୍ରପାତିର ଆବଶ୍ୟକତା ଅନୁଭୂତ ହେଲା । ଜର୍ଜ ଏହି ସମସ୍ୟା ପ୍ରତି ଜାଗରୂକ ଥିଲେ । ସେ ତାଙ୍କର ସହକର୍ମୀମାନଙ୍କୁ କହିଲେ, "ପରିବର୍ତ୍ତୀ ପ୍ରବାହକୁ ମୋଟରରେ ସମପ୍ରବାହରେ ପରିଣତ କରି ବ୍ୟବହାର କରିବା ପଦ୍ଧତି ସନ୍ତୋଷଜନକ ହୋଇଅଛି । କିନ୍ତୁ ଏଥିରୁ ଅଧିକ କିଛି ଦରକାର । ଚଳିତ ପଦ୍ଧତି ସେତେ କାର୍ଯ୍ୟକ୍ଷମ ନୁହେଁ । ମୋତେ ଗୋଟିଏ ଉତ୍ତମ ପରିବର୍ତ୍ତୀ-ପ୍ରବାହ ଉତ୍ପାଦନକାରୀ ମୋଟର ଦିଅ । ଏହାର ଆବିଷ୍କାରକ ସେଥିପାଇଁ ଯେଉଁ ମୂଲ୍ୟ ଚାହିଁବ; ମୁଁ ତାହା ଦେବାକୁ ପ୍ରସ୍ତୁତ ।"

ବର୍ତ୍ତମାନ ସର୍ବିୟାନିବାସୀ ନିକୋଲା ଟେସଲା ନାମକ ଜଣେ ତରୁଣ ଇଞ୍ଜିନିଅରଙ୍କ ପ୍ରତି ଜର୍ଜଙ୍କର ମନୋଯୋଗ ଆକର୍ଷଣ କଲା । ନ୍ୟୁୟର୍କର ଗୋଟିଏ ସମ୍ବାଦପତ୍ରରୁ ଟିକିଏ ଅଂଶ ସେ କାଟି ରଖିଥିଲା । ସେ ତାହା ଭାଇଙ୍କୁ ଦେଖାଇଲା । ସେଥିରେ ବାହାରିଥିଲା ଯେ ଟେସଲା ଆମେରିକାନ ଇନଷ୍ଟିଚ୍ୟୁଟ ଅଫ ଇଞ୍ଜିନିଅର୍ସ ସଭାରେ ଗୋଟିଏ ବକ୍ତୃତା ଦେଇଥିଲେ । ସେ କହିଥିଲେ ଯେ ସେ ଗୋଟିଏ ନୂତନ ଧରଣର "ଆବେଶ ମୋଟର" (Induction motor) ତିଆରି କରିଅଛନ୍ତି । ସେ ତାହାର ନାମ ଦେଇଛନ୍ତି "ଏକାଧିକ ଦଶା ସମ୍ପନ୍ନ ପରିବର୍ତ୍ତୀ ତଡ଼ିତ୍ ପ୍ରବାହ ବ୍ୟବସ୍ଥା" (Polyphase alternating current system) । ଖବର କାଗଜରେ ବିସ୍ତୃତ ବିବରଣ ଦିଆଯାଇ ନ ଥିଲା । ଜର୍ଜ ଏହି ନୂତନ ମୋଟର ସମ୍ବନ୍ଧରେ ସବିଶେଷ ବୃତ୍ତାନ୍ତ ଜାଣିବାକୁ ଆଗ୍ରହ ପ୍ରକାଶ କଲେ ।

ସେ ଟେସଲାଙ୍କ ନିକଟକୁ ପତ୍ର ଲେଖିଲେ । ସପ୍ତାହକ ମଧ୍ୟରେ ଉତ୍ତର ଆସିଲା । ଚିଠିଟିର ଅକ୍ଷରଗୁଡ଼ିକ ଅତି ସ୍ପଷ୍ଟ ଓ ସୁନ୍ଦର । ପରିବର୍ତ୍ତୀ ପ୍ରବାହର ଏହି ମୋଟରର ନକ୍ସା ସହିତ ବିଶଦ ବିବରଣ ଏଥିରେ ଦିଆଯାଇଥିଲା । ଅତ୍ୟନ୍ତ ମନୋଯୋଗ ସହକାରେ ସେ ଚିଠିଟି ପଢ଼ିଲେ । ଏଥିରେ କେତେକ ଉଚ୍ଚ ସ୍ତରର ବୈଦ୍ୟୁତିକ ତଥ୍ୟର ଆଲୋଚନା କରାଯାଇଥିଲା । ଜର୍ଜ ନିଜେ ପଦାର୍ଥବିଜ୍ଞାନରେ ପ୍ରବୀଣ ନ ଥିବାରୁ ସେ ଉକ୍ତ ତଥ୍ୟଗୁଡ଼ିକ ବୁଝିବାକୁ ଅକ୍ଷମ ହେଲେ । ତେଣୁ ସେ ଚିଠିଟିକୁ ବାରମ୍ବାର ପଢ଼ିବାକୁ ଓ ନକ୍ସାଗୁଡ଼ିକୁ ବାରମ୍ବାର ପରୀକ୍ଷା କରିବାକୁ ବାଧ୍ୟ ହେଲେ ।

ଦିନେ ହଠାତ୍ ବିଷୟଟି ତାଙ୍କୁ ଜଳବତ୍ ସ୍ୱଚ୍ଛ ବୋଧ ହେଲା । ସତେ ଯେପରି କି ତାଙ୍କ ଆଖି ଆଗରୁ ସନ୍ଦେହର ପର୍ଦ୍ଦା ହଟିଗଲା ଓ ଟେସଲାଙ୍କର ଧାରଣା ସ୍ପଷ୍ଟଭାବରେ ତାଙ୍କୁ ଦେଖାଗଲା । ସେ ଆନନ୍ଦରେ ଟେବୁଲ ଉପରେ ହାତ ପିଟିଲେ । ଟେସଲାଙ୍କ କଳ୍ପନା ଅତି ସୁନ୍ଦର ଓ ସହଜ ମନେ ହେଲା । ଏହି ସର୍ବିୟାନ ବୈଜ୍ଞାନିକଙ୍କର ମୋଟରର ସାରତତ୍ତ୍ୱ ଏହିପରି—

ମୋଟରର ଆର୍ମେଚରରୁ କମ୍ୟୁଟେଟର, ବ୍ରୁଶ ଓ ବୈଦ୍ୟୁତିକ-ସଂଯୋଗ ସବୁ ବିଚ୍ଛିନ୍ନ କରିବାକୁ ହେବ । ତାହାହେଲେ ଆର୍ମେଚରଟି ସ୍ୱଚ୍ଛନ୍ଦରେ ଘୂରି ପାରିବ । ଏହାପରେ ଚୌମ୍ବିକ ବଳରେଖା ( Magnetic line of force ) ଦ୍ୱାରା କାର୍ଯ୍ୟ ହେବ । ପରିବର୍ତ୍ତୀ ପ୍ରବାହ ମୋଟର ଭିତରକୁ ଯାଇ କ୍ଷେତ୍ର ଚୁମ୍ବକ ମଧ୍ୟରେ ଗୋଟିଏ ଘୂର୍ଣ୍ଣାୟମାନ ଚୌମ୍ବିକ କ୍ଷେତ୍ର (Magnetic field ) ସୃଷ୍ଟି କରିବ । ଏହା ଫଳରେ ଆର୍ମେଚରରେ ମଧ୍ୟ ଗୋଟିଏ ଘୂର୍ଣ୍ଣାୟମାନ ଚୌମ୍ବିକକ୍ଷେତ୍ର ଆବିଷ୍ଟ ହେବ ( Induced) । ଏହି ଆବିଷ୍ଟ କ୍ଷେତ୍ରଟି ଆର୍ମେଚରକୁ ଘୂରାଇବ । ଏହାହିଁ ହେଲା ତାଙ୍କ ମୋଟରର ସାରକଥା ।

ଟେସଲାଙ୍କ ମୋଟରର ଆଉ ଏକ ବିଶେଷତ୍ୱ ଥିଲା । ସେ ଏଥିରେ 'ଏକାଧିକଦଶା କୌଶଳ'ର ( Polyphase Principle ) ପ୍ରୟୋଗ କରିଥିଲେ । ଏକ ସଙ୍ଗରେ ଦୁଇଟି ବା ତତୋଧିକ ପରିବର୍ତ୍ତୀ ପ୍ରବାହର ସାର୍କିଟ ମୋଟରରେ ଯୋଡ଼ି ଦିଆଯିବ । ପ୍ରତ୍ୟେକ ସାର୍କିଟର 'ଦଶା' (Phase) ଭିନ୍ନ । ଏହାର ଫଳ ଏହାହିଁ ହେବ ଯେ ସାର୍କିଟଗୁଡ଼ିକ ଏକ 'କମ୍ପାଙ୍କ'ର (Frequency) ହେଲେହେଁ ସେଗୁଡ଼ିକ ଅସମଞ୍ଜସ ଭାବରେ ଘୂରିବେ, ଫଳରେ ମୋଟରର କୌଣସି ଅଂଶ କେତେବେଳେ ହେଲେ ବନ୍ଦ ହେବ ନାହିଁ ଏବଂ ଆର୍ମେଚର ନିୟମିତ ଭାବରେ ଘୂରୁଥିବ ।

ଜର୍ଜ ଭାବିଲେ ଯେ ଯଦି ଟେସଲାଙ୍କର ଅଭିପ୍ରାୟ ଠିକ୍ ଏହିପରି ହୋଇଥାଏ, ତେବେ ସେ ବିଦ୍ୟୁତ୍ ବିଦ୍ୟାରେ ଜଣେ ଅସାମାନ୍ୟ ପ୍ରତିଭାଶାଳୀ ଲୋକ ବୋଲି ସ୍ୱୀକାର କରିବାକୁ ହେବ । ତାଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଜର୍ଜଙ୍କର ପ୍ରବଳ ଇଚ୍ଛା ହେଲା ।

କୌଣସି କାର୍ଯ୍ୟ କରିବାକୁ ହେଲେ ସେଥିରେ ବିଳମ୍ବ କରିବା ଜର୍ଜଙ୍କର ପ୍ରକୃତି ନୁହେଁ । ଟେସଲାଙ୍କ ସହିତ ସାକ୍ଷାତର ସମୟ ସ୍ଥିର କରି ସେ ନ୍ୟୁୟର୍କ ଯାତ୍ରା କଲେ । ଫିଫ୍‌ଥ ଏଭିନ୍ୟୁର ଗୋଟିଏ ଛୋଟ ଘରେ ଟେସଲା ରହୁଥିଲେ । ସେହି ଘର ଭିତରେ ଗୋଟିଏ ଛୋଟ ଗବେଷଣାଗାର ମଧ୍ୟ କରା ଯାଇଥିଲା । ଘର ସାମନାରେ ଗୋଟିଏ ଚୋଟିଆ

ଥିଲା, "ଟେସଲା ଇଲେକ୍‌ଟ୍ରିକ କମ୍ପାନି।" ଗବେଷଣାଗାରରେ ଟେସଲାଙ୍କ ସଙ୍ଗେ ଜର୍ଜଙ୍କର ସାକ୍ଷାତ ହେଲା।

ଟେସଲା ଦେଖିବାକୁ କ୍ଷୀଣ ଶରୀର। ମୁଣ୍ଡର ବାଳଗୁଡ଼ିକ କଳା। ବୟସ ପ୍ରାୟ ତିରିଶ ବର୍ଷ ହେବ। ଉଚ୍ଚତାରେ ସେ ଜର୍ଜଙ୍କର ସମକକ୍ଷ ହେଲେହେଁ ସ୍ଥୂଳତାରେ ସେପରି ନ ଥିଲେ। ତାଙ୍କ କହିବା ଭଙ୍ଗୀରୁ ବୈଦେଶିକ ଉଚ୍ଚାରଣ ଜଣା ପଡ଼ି ଯାଉଥିଲା; ମାତ୍ର ତାଙ୍କର ବାକ୍ୟଗୁଡ଼ିକ ଥିଲା ସଂକ୍ଷିପ୍ତ ଓ ସାରଗର୍ଭକ।

ଟେସଲା ତାଙ୍କ ଆବିଷ୍କାର ବିଷୟ ବୁଝାଇବାକୁ ଆରମ୍ଭ କଲା ମାତ୍ରେ ଜର୍ଜ ବୁଝିପାରିଲେ ଯେ ତାଙ୍କର ଅନୁମାନ ଠିକ। ଟେସଲା ବାସ୍ତବରେ ଜଣେ ପ୍ରତିଭାଶାଳୀ ଇଞ୍ଜିନିଅର। ସେ ପର୍ଯ୍ୟନ୍ତ ସେ ଗୁଡ଼ିଏ ପେଟେଣ୍ଟର ଅଧିକାରୀ ହୋଇଥିଲେ। ଜର୍ଜ ଓ ଟେସଲାଙ୍କମଧ୍ୟରେ ଗୋଟିଏ ପ୍ରଧାନ ପ୍ରଭେଦ ଥିଲା। ବୈଜ୍ଞାନିକ ତଥ୍ୟକୁ ବ୍ୟାବହାରିକ କର୍ମରେ ପ୍ରୟୋଗ କରିବାରେ ଜର୍ଜ ସିଦ୍ଧହସ୍ତ ଥିଲେ। ଟେସଲାଙ୍କ ପ୍ରତିଭା ଥିଲା ଭିନ୍ନ ରକମର। ବୈଜ୍ଞାନିକ ତଥ୍ୟ ଆବିଷ୍କାର କରିବାରେ ତାଙ୍କର ଅସାଧାରଣ କୃତିତ୍ୱ ପ୍ରକାଶ ପାଉଥିଲା। ବୈଦ୍ୟୁତିକ ତତ୍ତ୍ୱ ବିଷୟରେ ତାଙ୍କର ଜ୍ଞାନର ପରିଚୟ ପାଇ ଜର୍ଜ ବିସ୍ମିତ ହୋଇଯାଇଥିଲେ। ବ୍ୟାବସାୟିକ କ୍ଷେତ୍ରରେ ଉପଯୋଗୀ କରିବାକୁ ହେଲେ ତାଙ୍କର ଆବିଷ୍କାର ଗୁଡ଼ିକର ଆହୁରି ଉନ୍ନତିବିଧାନ ଆବଶ୍ୟକ, ଏହା ସତ୍ୟ, କିନ୍ତୁ ଯେଉଁ ସବୁ ତଥ୍ୟ ଉପରେ ତାଙ୍କର ଆବିଷ୍କାରଗୁଡ଼ିକ ପ୍ରତିଷ୍ଠିତ ହୋଇଥିଲା, ସେ ସବୁ ନିର୍ଭୁଲ ଓ ତାଙ୍କର ବୁଦ୍ଧିମତ୍ତାର ପରିଚାୟକ।

ତାଙ୍କ ଆଗମନର ପ୍ରକୃତ ଉଦ୍ଦେଶ୍ୟ ପ୍ରକାଶ କରିବା ପୂର୍ବରୁ ଜର୍ଜ ପ୍ରଥମେ ଟେସଲାଙ୍କ ଜୀବନର ପୂର୍ବ ଇତିହାସ ଜାଣିବାକୁ ଇଚ୍ଛା ପ୍ରକାଶ କଲେ। ଟେସଲା ଯାହା କହିଲେ ସେଥିରୁ ଜଣାପଡ଼ିଲା ଯେ ସର୍ବିୟାର ଅନ୍ତର୍ଗତ ହେଣିଆରେ ତାଙ୍କର ଜନ୍ମ। ତାଙ୍କ ପିତା ସେଠାରେ ଜଣେ ଧର୍ମଯାଜକ ଥିଲେ। ଅଷ୍ଟ୍ରିଆର ଗ୍ରାଜ୍ ସହରରେ ଥିବା ପଲିଟେକ୍‌ନିକ ଇନ୍‌ଷ୍ଟିଚ୍ୟୁଟରେ ( Polytechnic Institute ) ଇଞ୍ଜିନିଅରିଂ ଅଧ୍ୟୟନ କରି ସେ ପାରିସର କଣ୍ଟିନେଣ୍ଟାଲ ଏଡ଼ିସନ

କମ୍ପାନୀରେ ଚାକିରି କରିବାକୁ ଆସିଲେ । ଏହି କମ୍ପାନୀଟି ଆମେରିକାର ଏଡ଼ିସନ କମ୍ପାନୀର ଗୋଟିଏ ଇଉରୋପୀୟ ଶାଖା । ପାରିସରେ କିଛିଦିନ କାର୍ଯ୍ୟ କରିବାପରେ ସେ ଯୁକ୍ତରାଷ୍ଟ୍ରକୁ ଆସି ନିଉୟର୍କରେ ସ୍ୱୟଂ ଏଡ଼ିସନଙ୍କ ପାଖରେ କାର୍ଯ୍ୟ କଲେ ।

ଜର୍ଜ ପଚାରିଲେ, "ଏଡ଼ିସନଙ୍କ ଭଳି ଜଣେ ପ୍ରସିଦ୍ଧ ଆବିଷ୍କାରକଙ୍କ ପାଖରୁ ଚାଲି ଆସିବାର କାରଣ କଅଣ ?"

ଟେସଲା ସ୍ପଷ୍ଟ ଭାବରେ କହିଲେ, "ଅନ୍ୟ ଲୋକେ ନିଜର ସ୍ୱାର୍ଥ ସାଧନରେ ମୋତେ ବ୍ୟବହାର କରିବେ—ଏହା ମୋର ଇଚ୍ଛା ନୁହେଁ । ଏଡ଼ିସନ ମୋର ଉଦ୍ଭାବିତ ଯନ୍ତ୍ରଗୁଡ଼ିକ ନେଇ ପେଟେଣ୍ଟ ଅଫିସରେ ଏଡ଼ିସନ କମ୍ପାନୀ ନାମରେ ରେଜିଷ୍ଟର କରାଇଲେ । ଏଥିପାଇଁ ମୋତେ କିଛି ଦେଲେ ନାହିଁ ।"

ଏ କଥା ଶୁଣି ଜର୍ଜ ବିସ୍ମିତ ହେଲେ ନାହିଁ । ଅନେକ କମ୍ପାନୀରେ ଏପରି ପ୍ରଥା ଚଳେ ବୋଲି ତାଙ୍କୁ ଜଣା ଥିଲା । ବାସ୍ତବରେ କୌଣସି ଅଧୀନସ୍ଥ କର୍ମଚାରୀ ତାର ଆବିଷ୍କାରକୁ ନିଜ ନାମରେ ପେଟେଣ୍ଟ କରାଇବ—ଏହା ଏଡ଼ିସନ ଆଦୌ ଚାହୁଁ ନ ଥିଲେ ।

ଜର୍ଜ ପ୍ରଥମ ଜୀବନରେ ନିଜର ଗାଡ଼ିଉଠାଇବା ଯନ୍ତ୍ର ଓ ଫ୍ରଗ ଯନ୍ତ୍ରର ପେଟେଣ୍ଟ ସମ୍ବନ୍ଧରେ ଯେଉଁ ତିକ୍ତ ଅନୁଭୂତି ଅର୍ଜିଥିଲେ, ତାହା ସ୍ମରଣ କରି ଟେସଲାଙ୍କ ମନୋଦୁଃଖର କାରଣ ବୁଝିପାରିଲେ ।

ସେ ପଚାରିଲେ, "କଅଣ ଏହି କାରଣରୁ ଆପଣ ଏଡ଼ିସନଙ୍କ ପାଖରୁ ଚାକିରି ଛାଡ଼ି ଚାଲି ଆସିଲେ ?"

ଉତ୍ତର ମିଳିଲା, "ହଁ, ଏ ତ ଗୋଟିଏ କାରଣ । ତାହା ଛଡ଼ା ଏଡ଼ିସନଙ୍କ ସଙ୍ଗେ ମୋର ଗୋଟାଏ ନୀତିଗତ ମତଭେଦ ଥିଲା ।"

ଜର୍ଜ—କେଉଁ ବିଷୟରେ ?

ଟେସଲ୍—ବୈଦ୍ୟୁତିକ ଶକ୍ତି ବିଷୟରେ । ବୈଦ୍ୟୁତିକ ଶକ୍ତି କହିଲେ ଏଡ଼ିସନ କେବଳ ସମପ୍ରବାହୀ ତଡ଼ିତ୍‌ଶକ୍ତି ଛଡ଼ା ଆଉ କିଛି ବୁଝନ୍ତି ନାହିଁ । କିନ୍ତୁ ମୋର ଦୃଢ଼ ବିଶ୍ୱାସ ଯେ ବୈଦ୍ୟୁତିକ ଶକ୍ତିର ଭବିଷ୍ୟତ ପ୍ରକୃତ ପକ୍ଷେ ପରିବର୍ତ୍ତୀ ପ୍ରବାହରେହିଁ ନିହିତ ।

ଜର୍ଜ—ଆପଣ ଏ ବିଷୟରେ ଏଡ଼ିସନଙ୍କ ସହିତ ତର୍କବିତର୍କ କରିଥିଲେ ?

ଟେସଲ୍—"ଠିକ୍ ତର୍କବିତର୍କ ନୁହେଁ । ଆପଣ ବୁଝିପାରୁଥିବେ ଯେ କମ୍ପାନୀର ମାଲିକ ହେଲେ ଏଡିସନ; ମୁଁ ନୁହେଁ । ପ୍ରକୃତ କଥା ହେଉଛି, ପରିବର୍ତ୍ତୀ ପ୍ରବାହର ତଥ୍ୟ ଏଡିସନ ବୁଝି ପାରି ନାହାନ୍ତି । ସେ ଜାଣନ୍ତି କେବଳ ସମପ୍ରବାହୀ ବିଦ୍ୟୁତ୍‌ଶକ୍ତି । ସମପ୍ରବାହ ଅତି ସାଧାରଣ କଥା; ଏହାକୁ ବୁଝିବା ପାଇଁ କୌଣସି ବୈଦ୍ୟୁତିକ ତତ୍ତ୍ୱଜ୍ଞାନର ଆବଶ୍ୟକତା ନାହିଁ । ହୁଏତ ପରିବର୍ତ୍ତୀ ପ୍ରବାହର ସମସ୍ତ କଥା ମୁଁ ତାଙ୍କୁ ବୁଝାଇ ପାରିଲି ନାହିଁ ।"

ଜର୍ଜ ମନେ ମନେ ସନ୍ତୁଷ୍ଟ ହୋଇ ଟିକିଏ ହସିଲେ । ଏହି ସ୍ପଷ୍ଟବାଦୀ, ଆତ୍ମବିଶ୍ୱାସୀ ବୈଜ୍ଞାନିକଙ୍କ ପ୍ରତି ତାଙ୍କର ଅନୁରାଗ ଜାତ ହେଲା । ସେ ପଚାରିଲେ, "ବର୍ତ୍ତମାନ ଆପଣ କଅଣ କରିବାକୁ ଇଚ୍ଛା କରନ୍ତି ?"

ଟେସଲ୍ ହଠାତ୍ ତାଙ୍କର ଅତି ସାମାନ୍ୟ ଇତସ୍ତତଃ ବିକ୍ଷିପ୍ତ କ୍ଷୁଦ୍ର ଗବେଷଣାଗାରଟିକୁ ଦେଖାଇ ଦେଇ କହିଲେ, "ଆପଣ ଦେଖି ପାରୁଥିବେ, ମୁଁ ଏଡ଼ିସନଙ୍କ ସଙ୍ଗେ ପ୍ରତିଯୋଗିତା କରିବାକୁ ପ୍ରସ୍ତୁତ ହେଉଅଛି । ଯେଉଁମାନଙ୍କର ମୋର ଆବିଷ୍କାର ଉପରେ ଆସ୍ଥା ଅଛି, ସେମାନେ ଅର୍ଥ ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଇ ଅଛନ୍ତି । କିନ୍ତୁ ମୋର ଗୋଟାଏ ଆଶଙ୍କା ଅଛି । ମୁଁ ହେଉଛି ଆବିଷ୍କାରକ । ବ୍ୟବସାୟ ବୁଦ୍ଧି ମୋର ନାହିଁ । ମୁଁ ଯେପରି ଆଶା କରିଥିଲି କାମ ସେପରି ଆଗେଇ ପାରୁନାହିଁ । ବ୍ୟବସାୟରେ କୃତକାର୍ଯ୍ୟ ହେବାପାଇଁ ଯଥେଷ୍ଟ **ଅର୍ଥ** ଦରକାର; ଆଉ ତା ସଙ୍ଗେ ଦରକାର ପ୍ରଚୁର ଅଭିଜ୍ଞତା ।

ତରୁଣ ଆବିଷ୍କାରକ ଟିକିଏ ନୀରବ ରହି ପୁଣି କହିଲେ, "ମିଷ୍ଟର ଓ୍ୱେଷ୍ଟିଂହାଉସ୍, ଗୋଟାଏ କଥା କହନ୍ତୁ । ଆପଣ କେବଳ ମୋର

ଜୀବନକାହାଣୀ ଶୁଣିବାକୁ ପିଟସବର୍ଗରୁ କଦାପି ଏଠାକୁ ଆସି ନାହାନ୍ତି । ଆପଣ ଏତେ କାର୍ଯ୍ୟବ୍ୟସ୍ତ ଯେ ଏପରି ବୃଥା ସମୟ ବ୍ୟୟ କରିବା ଆପଣଙ୍କ ପକ୍ଷରେ ଅସମ୍ଭବ ।"

ଜର୍ଜ ଟିକିଏ ଚିନ୍ତା କରି କହିଲେ, "ଏକ ପ୍ରକାର କହିବାକୁ ଗଲେ ମୁଁ ଆପଣଙ୍କ ଜୀବନକାହାଣୀ ଜାଣିବାକୁ ଆସିଛି । କୌଣସି ଲୋକ ସହିତ କାରବାର କରିବା ପୂର୍ବରୁ ମୁଁ ତାର ସମସ୍ତ ଇତିହାସ ଜାଣିବାକୁ ଚେଷ୍ଟା କରେଁ । କୌଣସି ଲୋକକୁ ତାର ଚିନ୍ତାଧାରାଠାରୁ ଅଲଗା କରି ହେବ ନାହିଁ ।"

ଟେସଲା—ତେବେ ଆପଣ କାରବାର କରିବାକୁ ଚାହାନ୍ତି । ତା ପୁଣି ମୋ ସଙ୍ଗରେ ?

ଜର୍ଜ—ମିଷ୍ଟର ଟେସଲା, ଆପଣଙ୍କର ଅନୁମାନ ଠିକ । ଆପଣଙ୍କ ଭଳି ମୋର ମଧ୍ୟ ପରିବର୍ତ୍ତୀ ପ୍ରବାହର ଉଜ୍ଜ୍ୱଳ ଭବିଷ୍ୟତ ବିଷୟରେ ଦୃଢ଼ ବିଶ୍ୱାସ ଅଛି । ଆପଣ ଯେଉଁ ଆବେଶୀ ମୋଟର (Induction-motor) ଓ ପରିବର୍ତ୍ତୀ ପ୍ରବାହସମ୍ବନ୍ଧୀୟ ଯେଉଁସବୁ ଯନ୍ତ୍ରର ବର୍ଣ୍ଣନା ଦେଇଅଛନ୍ତି, ସେ ସବୁ ବିଷୟରେ ମୁଁ ଆଗ୍ରହୀ । ଆପଣଙ୍କର ପେଟେଣ୍ଟ ସଂଖ୍ୟା କେତେ ? ଚାଳିଶ ?

ଟେସଲା—ହଁ, ଚାଳିଶଟି ।

ଜର୍ଜ—ମୁଁ ସେଗୁଡ଼ିକର ପେଟେଣ୍ଟ ଅଧିକାର କିଣି ନେବାକୁ ଚାହେଁ ।

ଟେସଲା—ସବୁ ?

ଟେସଲାଙ୍କ କଣ୍ଠସ୍ୱରରେ ବିସ୍ମୟ ଭାବ ପରିସ୍ଫୁଟ ।

ଜର୍ଜ ଦୃଢ଼ ସ୍ୱରରେ କହିଲେ, "ହଁ, ସବୁ । ମୁଁ ପେଟେଣ୍ଟଗୁଡ଼ିକ ପାଇଁ ନଗଦ ମୂଲ୍ୟ ଦେବି ଓ ତା ଛଡ଼ା ରୟାଲଟି ମଧ୍ୟ ଦେବି । ମୋ ମତରେ ଯେଉଁ ଲୋକ ନିଜର ମସ୍ତିଷ୍କ ଚାଳନା କରି ଗୋଟାଏ ନୂଆ ଜିନିଷ ବାହାର କରିଛି, ସେ ତାର ଉପଯୁକ୍ତ ମୂଲ୍ୟ ପାଇବା ଉଚିତ ।"

ବୋଧ ହୁଏ ଜୀବନରେ ପ୍ରଥମ ଥର ପାଇଁ ଫେସଲଙ୍କର ଆତ୍ମ ପ୍ରତ୍ୟୟ ତୁଟିଗଲା । ସେ ଥଙ୍ଗ ମଙ୍ଗ ହୋଇ କହିଲେ, "ମୁଁ ଆଶା କରି ନ ଥିଲି ଯେ ଆପଣ ସବୁ·········।"

ଜର୍ଜ ଗମ୍ଭୀର ଭାବରେ କହିଲେ, "ଆପଣଙ୍କର ଏହି ସମସ୍ତ ପେଟେଣ୍ଟ ପାଇଁ ମୁଁ ଦଶଲକ୍ଷ ଡଲାର ଦେବାକୁ ପ୍ରସ୍ତୁତ । ଏହାଛଡ଼ା ଉତ୍ପାଦିତ ବିଦ୍ୟୁତ୍‌ର ପ୍ରତ୍ୟେକ ଅଶ୍ୱଶକ୍ତି ପାଇଁ ଆପଣ ଏକ ଡଲାର ରୟାଲଟି ପାଇବେ । ମୋ ମତରେ ଏହା ହିଁ ନ୍ୟାଯ୍ୟ ମୂଲ୍ୟ ହେବ ।"

ମନେ ହେଲା ଟେସଲ୍ ମୂର୍ଚ୍ଛିତ ହୋଇ ତଳେ ପଡ଼ିଯିବେ । ତାଙ୍କର ମୁଖ ରକ୍ତ ଶୂନ୍ୟ ହୋଇଗଲା । ନିଜକୁ ରକ୍ଷା କରିବାପାଇଁ ସେ ହଠାତ୍ ଗୋଟାଏ ବେଞ୍ଚର ଧାରକୁ ଧରି ପକାଇଲେ । ଶେଷରେ ସେ ପ୍ରକୃତିସ୍ଥ ହୋଇ ଅତି କଷ୍ଟରେ କହିଲେ, "ମୋତେ କ୍ଷମାକରିବେ ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ । ଏତେଗୁଡ଼ାଏ ଟଙ୍କା କେବେ କେହି ମୋତେ ଦେବେ ବୋଲି ଶୁଣାଇ ନାହାନ୍ତି । ସତକଥା କହିବାକୁ ଗଲେ, ଏତେ ବିପୁଳ ଟଙ୍କାର କାରବାର ବିଷୟରେ ମୋ ଜୀବନରେ କେବେହେଲେ ଚର୍ଚ୍ଚା ସୁଦ୍ଧା କରିନ ହିଁ ।"

ଜର୍ଜ ସ୍ପଷ୍ଟ ଭାବରେ କହିଲେ, "ଯଦି ଆପଣ ଭାବୁଥାନ୍ତି ଯେ ମୁଁ ଏତେ ଗୁଡ଼ାଏ ଟଙ୍କା ଦେଇ ଭୁଲ କରୁଛି, ତାହାହେଲେ ସେଇଟା ଆପଣଙ୍କର ଭ୍ରମ । ଆପଣଙ୍କ ଆବିଷ୍କାରଗୁଡ଼ିକ ମୋର ଦରକାର ବୋଲି ମୁଁ ସେଗୁଡିକ କିଣି ନେଉଅଛି । ମୁଁ ସେଗୁଡ଼ିକର ସଦ୍‌ବ୍ୟବହାର କରି ଅର୍ଥ ଉପାର୍ଜ୍ଜନ କରି ପାରିବି । ମୁଁ ଆପଣଙ୍କୁ ନିର୍ଭର ଜବାବ ଦେଇ କହି ପାରେଁ ଯେ ଓ୍ୱେଷ୍ଟିଙ୍ଗହାଉସ ଇଲେକ୍‌ଟ୍ରିକ କମ୍ପାନୀ ପକ୍ଷରେ ଏହି ମୂଲ୍ୟରେ ପେଟେଣ୍ଟଗୁଡ଼ିକ ଖରିଦ କରିବା ଖୁବ୍ ଲାଭଜନକ ହେବ । ମିଷ୍ଟର ଟେସଲ, ଏବେ କହନ୍ତୁ, ମୋ ପ୍ରସ୍ତାବରେ ଆପଣ ସ୍ୱୀକୃତ ?

ନିକୋଲା ଟେସଲଙ୍କ ତୁଣ୍ଡରୁ କଥା ବାହାରିଲା ନାହିଁ । ସେ କେବଳ ମୁଣ୍ଡ ଦୁଆଇଁ ସମ୍ମତି ଜଣାଇଲେ ।

---

## ତେର

# ଦୁଇଟି ବିରାଟ ପ୍ରବାହର ସଂଘର୍ଷ

ଯେଉଁତେବେଳେ ଜର୍ଜ ଓ୍ୱେଷ୍ଟିଂହାଉସ୍ ପରିବର୍ତ୍ତୀ ପ୍ରବାହପଦ୍ଧତି ନେଇ ଗବେଷଣା ଚଳାଇଥିଲେ, ସେତେବେଳେ ଆଲ୍‌ଭା ଏଡ଼ିସନଙ୍କର ଚିନ୍ତାଧାରା ଅନ୍ୟ ଏକ ପନ୍ଥାରେ ଗତି କରୁଥିଲା । ତାଙ୍କର ଦୃଢ଼ବିଶ୍ୱାସ ଥିଲା ଯେ ସମପ୍ରବାହ ପରିବର୍ତ୍ତୀ ପ୍ରବାହ ଅପେକ୍ଷା ଉତ୍କୃଷ୍ଟତର । ତେଣୁ ସେ ଏହି ସମପ୍ରବାହର ଆହୁରି ଉନ୍ନତି ସାଧନ କରିବାରେ ଲାଗି ପଡ଼ିଥିଲେ । ପରିବର୍ତ୍ତୀ ପ୍ରବାହ ଯେ ଅଧିକ କାର୍ଯ୍ୟକାରୀ ହୋଇପାରେ ଏ ପ୍ରକାର ଧାରଣାକୁ ସେ ମନ ମଧ୍ୟରେ ସ୍ଥାନ ଦେବାକୁ ସୁଦ୍ଧା ଇଚ୍ଛୁକ ନ ଥିଲେ । ନିକୋଲା ଟେସଲାଙ୍କର ବିଶ୍ୱାସ ହୋଇଥିଲା ଯେ ଏଡ଼ିସନ ପରିବର୍ତ୍ତୀ ପ୍ରବାହର ତତ୍ତ୍ୱ ବୁଝିବାକୁ ଅକ୍ଷମ । ଆଉ କେତେକ ମନେ କରୁଥିଲେ ଯେ ଗୋଟାଏ ଜିଦ୍‌ର ବଶବର୍ତ୍ତୀ ହୋଇ ସେ ପରିବର୍ତ୍ତୀ ପ୍ରବାହର ବିରୋଧୀ । ଏ ଦୁଇଟି ମଧ୍ୟରୁ ଯେ କୌଣସି କାରଣ ସତ୍ୟ ହେଉ ନା କାହିଁକି ଏଡିସନ ତାଙ୍କର ସମସ୍ତ ମୂଳଧନ ସମପ୍ରବାହୀ ତଡ଼ିତର ଉନ୍ନତିରେ ବିନିଯୋଗ କରିଥିଲେ । ତାଙ୍କର ପ୍ରତିଷ୍ଠିତ ବିରାଟ ପ୍ରତିଷ୍ଠାନର ନାମ ଥିଲା ଜେନେରାଲ ଇଲେକ୍‌ଟ୍ରିକ କମ୍ପାନୀ । ଏହି କମ୍ପାନୀ କେତୋଟି ବଡ଼ ବଡ଼ ସହରରେ କିଛି କାଳପାଇଁ ବୈଦ୍ୟୁତିକ ଆଲୋକ ବ୍ୟାପାରରେ ପ୍ରାଧାନ୍ୟ ବିସ୍ତାର କରିଥିଲା ।

ଏହି ଦୁଇଟି ଭିନ୍ନ ବୈଦ୍ୟୁତିକ ପଦ୍ଧତିର ଉନ୍ନତି ଫଳରେ ଭବିଷ୍ୟତରେ ଗୋଟାଏ ସଂଘର୍ଷ ଘଟିବାର ଆଶଙ୍କା ଦେଖାଦେଇଥିଲା । ଜର୍ଜ ଏହା ଉତ୍ତମରୂପେ ଜାଣିଥିଲେ । ଗୋଟାଏ ଭୀଷଣ ସଂଘର୍ଷର ସମ୍ଭାବନା ଜାଣି ସୁଦ୍ଧା ସେ ପରିବର୍ତ୍ତୀ ପ୍ରବାହର ଶ୍ରେଷ୍ଠତ୍ୱରେ ବିଶ୍ୱାସ ରଖି ତାହାର ଉନ୍ନତିରେ ସମସ୍ତ ଶକ୍ତି ନିୟୋଜିତ କଲେ ।

୧୮୯୧ ମସିହାର ପ୍ରଥମ ଭାଗରେ ଜର୍ଜ ଟେସଲାଙ୍କଠାରୁ ପେଟେଣ୍ଟ ଅଧିକାରଗୁଡ଼ିକ କ୍ରୟ କରି ପିଟସବର୍ଗରୁ ଫେରି ଆସିଲେ । ବୈଦ୍ୟୁତିକ ଉନ୍ନୟନ କ୍ଷେତ୍ରରେ ଅବସ୍ଥା କପରି ଥିଲା, ତାହାର ସୂଚନା ଉପରେ ଦିଆ ଯାଇଅଛି । ଜର୍ଜ ଟେସଲାଙ୍କ ପରିବର୍ତ୍ତୀ ପ୍ରବାହର ମୋଟରକୁ ପୁଙ୍ଖାନୁପୁଙ୍ଖରୂପେ ପରୀକ୍ଷା କରି ଦେଖିବାକୁ ଇଞ୍ଜିନିଅରମାନଙ୍କୁ ଆଦେଶ ଦେଲେ । ସେମାନେ ପରୀକ୍ଷା କରି ଯେଉଁ ଅଭିମତ ପ୍ରକାଶ କଲେ ତହିଁରେ ଜର୍ଜଙ୍କର ପ୍ରଥମ ଅନୁମାନ ସତ୍ୟ ବୋଲି ପ୍ରମାଣିତ ହେଲା । ବ୍ୟବସାୟ କ୍ଷେତ୍ରରେ ଏହି ଯନ୍ତ୍ରକୁ ଚାଲୁ କରିବାକୁ ହେଲେ ଆଗେ ଏହାର ବହୁ ପରିବର୍ତ୍ତନ ଦରକାର ।

ପ୍ରଧାନ ସମସ୍ୟା ହେଲା, ମୋଟରର କମ୍ପାଙ୍କର (Frequenoy) ପରିବର୍ତ୍ତନ । ପରିବର୍ତ୍ତୀ ପ୍ରବାହ-ଚାଳିତ ଯନ୍ତ୍ରଗୁଡ଼ିକରେ ଜର୍ଜ ୧୩୩ ସାଇକ୍ଲ କମ୍ପାଙ୍କ ପ୍ରବର୍ତ୍ତନ କରିଥିଲେ । ଟେସଲାଙ୍କ ଯନ୍ତ୍ରଗୁଡ଼ିକ ୬୦ ସାଇକ୍ଲ କମ୍ପାଙ୍କ ଅନୁସାରେ ଚାଳିତ । ତାଙ୍କର ବିଶ୍ୱାସ ଥିଲା ଯେ ଏକାଧିକଦଶା ପଦ୍ଧତି (Polyphase system) କ୍ଷେତ୍ରରେ ଏହି ୬୦ ସାଇକ୍ଲ କମ୍ପାଙ୍କ ସର୍ବାପେକ୍ଷା ଅଧିକ କାର୍ଯ୍ୟକାରୀ ହେବ । ତେଣୁ ହୁଏତ ମୋଟରକୁ ୧୩୩ ସାଇକ୍ଲ କମ୍ପାଙ୍କର ଉପଯୋଗୀ କରି ପରିବର୍ତ୍ତନ କରିବାକୁ ହେବ କିମ୍ବା ୧୩୩ ସାଇକ୍ଲ କମ୍ପାଙ୍କ ପରିବର୍ତ୍ତେ ୬୦ ସାଇକ୍ଲ କମ୍ପାଙ୍କରେ ସେହି ମୋଟର ଚଳାଇବାର ବ୍ୟବସ୍ଥା କରିବାକୁ ହେବ । ଓ୍ୱେଷ୍ଟିଂହାଉସ କମ୍ପାନୀର ଇଞ୍ଜିନିଅରମାନେ କହିଲେ ଯେ ମୋଟରକୁ ପରିବର୍ତ୍ତନ କରି ୧୩୩ ସାଇକ୍ଲ କମ୍ପାଙ୍କର ଉପଯୋଗୀ କରିବାରେ ଅଳ୍ପ ଖରଚ ପଡ଼ିବ । ତାହାହେଲେ ଜର୍ଜଙ୍କର ପ୍ରଚଳିତ କମ୍ପାଙ୍କ ପରିବର୍ତ୍ତନ କରିବାର ଆବଶ୍ୟକତା ପଡ଼ିବ ନାହିଁ ।

ଜର୍ଜ ତାଙ୍କ ଇଞ୍ଜିନିଅରମାନଙ୍କ ମତ ଅନୁସାରେ କାର୍ଯ୍ୟ କରିବାକୁ ସ୍ଥିର କଲେ । ସେ କହିଲେ, "ତାହାହେଲେ ଆମେ ଟେସଲାଙ୍କୁ ଡକାଇ ମୋଟରର ନକ୍ସା ବଦଳାଇବାକୁ କହିବା । ମୋଟରଟି ଯେତେବେଳେ ତାଙ୍କର ଆବିଷ୍କାର, ସେତେବେଳେ ପରିବର୍ତ୍ତନଟା ତାଙ୍କରି ଦ୍ୱାରା ହେବା ଉଚିତ ।"

ପିଟସବର୍ଗକୁ ଆସିବାପାଇଁ ଟେସଲଙ୍କୁ ସମ୍ବାଦ ଦିଆଗଲା । ଯଥା ସମୟରେ ଟେସଲ ଖଣ୍ଡିଏ ଜୀର୍ଣ୍ଣ ସୁଟକେଶ ଓ କେତେଗୁଡ଼ିଏ ଛିଣ୍ଡା ମଇଳା ବିଦ୍ୟୁତ୍‌ବିଜ୍ଞାନ ପୁସ୍ତକ ଧରି ଉପସ୍ଥିତ ହେଲେ । ପହଞ୍ଚିବା ପରେ ପରେ ସେ କାର୍ଯ୍ୟ ଆରମ୍ଭ କରିଦେଲେ । କିନ୍ତୁ ଦେଖାଗଲା ଯେ ପ୍ରକୃତ ପକ୍ଷେ କାର୍ଯ୍ୟଟି ଏତେ ସହଜରେ ହେବାର ନୁହେଁ । ଏକ ସପ୍ତାହ ପରେ ଟେସଲ ଜଣାଇଲେ—"କାର୍ଯ୍ୟଟି ସମୟସାପେକ୍ଷ, ବ୍ୟୟସାପେକ୍ଷ ମଧ୍ୟ ।"

ଜର୍ଜ ଉତ୍ତର କଲେ, "ସେଥିପାଇଁ ଚିନ୍ତା ନାହିଁ । କିନ୍ତୁ କାମଟା ହେବା ଦରକାର । ମନେ ରଖିଥାନ୍ତୁ ଯେ ଦିନେ ଆପଣଙ୍କ ମୋଟର ଘରେ ଘରେ ବ୍ୟବହୃତ ହେବ; କାରଖାନାମାନଙ୍କରେ ବ୍ୟବହୃତ ହେବ । ଏପରିକି ଆପଣଙ୍କ ମୋଟର ପ୍ରାସାଦରେ ଟ୍ରାମକାର, ଭୂଗର୍ଭସ୍ଥ ରେଲ ମଧ୍ୟ ବୈଦ୍ୟୁତିକ ଶକ୍ତିଦ୍ୱାରା ଚାଳିତ ହେବ ।"

ଜର୍ଜଙ୍କର ଏପରି ଦୃଢ଼ବିଶ୍ୱାସ ସତ୍ତ୍ୱେ କାର୍ଯ୍ୟରେ ସୁଫଳ ଦେଖାଗଲା ନାହିଁ । ଟେସଲ ଅତୀତରେ ଏକାକୀ କାର୍ଯ୍ୟ କରିବାରେ ଅଭ୍ୟସ୍ତ ଥିଲେ । ଏବେ ଅନ୍ୟ ଇଞ୍ଜିନିଅରଙ୍କ ସଙ୍ଗେ ପ୍ରଥମେ ପ୍ରଥମେ ମତଭେଦ ହେଲା; ପରେ ମତଭେଦ ଘୋର ବିବାଦରେ ପରିଣତ ହେଲା । ଜର୍ଜ ମଧ୍ୟସ୍ଥତା କରି ଉଭୟ ପକ୍ଷକୁ ଶାନ୍ତ କରିବାକୁ ଚେଷ୍ଟା କଲେ, କିନ୍ତୁ ପାରିଲେ ନାହିଁ । ଯେତେବେଳେ ସେ ଉଭୟ ପକ୍ଷର ଗୋଟାଏ ମୀମାଂସା କରି ଦେଉଥିଲେ, ଅଳ୍ପ ଦିନ ପାଇଁ ଶାନ୍ତି ଆସୁଥିଲା; ପରେ ପୁଣି ବାଦ-ବିବାଦ ହେଉଥିଲା । ପରିଶେଷରେ ମୋଟରର ପରିବର୍ତ୍ତନ କାର୍ଯ୍ୟବନ୍ଦ ହେବାକୁ ବସିଲା ।

ଠିକ୍ ଏହି ସମୟରେ ଜର୍ଜ ଅନ୍ୟାନ୍ୟ ବିପଦର ସମ୍ମୁଖୀନ ହେଲେ । ଏଡ଼ିସନ କମ୍ପାନୀମାନଙ୍କ ସ୍ୱାର୍ଥ ସହିତ ତାଙ୍କର ଯେଉଁ ବିରୋଧ ସାମାନ୍ୟ ମେଘଖଣ୍ଡେ ପରି ହୋଇଥିଲା, ଏବେ ତାହା ପ୍ରଚଣ୍ଡ ଝଡ଼ର ଆକାର ଧାରଣ କଲା ।

ଏଥିପୂର୍ବରୁ ଏଡ଼ିସନ ଓ ତାଙ୍କ ସମପ୍ରବାହର ସମର୍ଥକମାନେ ପରିବର୍ତ୍ତୀ ପ୍ରବାହର ପ୍ରତିଯୋଗିତାକୁ ହସରେ ଉଡ଼ାଇ ଦେଉଥିଲେ । ଛୋଟ ଛୋଟ ସହର ଓ ଗ୍ରାମାଞ୍ଚଳରେ ଓ୍ୱେଷ୍ଟିଂହାଉସ କମ୍ପାନୀର

ସନ୍ନିପାତ ପ୍ରବେଶ କରିଥିଲେହେଁ ସେଥିରେ ସେମାନେ ବିଚଳିତ ହୋଇ ନ ଥିଲେ; କାରଣ ସମପ୍ରବାହୀ ତଡ଼ିତ୍ ଶକ୍ତିର ଉତ୍ପାଦନ ଓ ପରିବହନ ବ୍ୟୟ ଏତେ ଅଧିକ ଥିଲା ଯେ ଅଳ୍ପ ବସତିବିଶିଷ୍ଟ ଗ୍ରେଟ ସହର ବା ଗ୍ରାମାଞ୍ଚଳରେ ଜେନେରାଲ ଇଲେକ୍ଟ୍ରିକ କମ୍ପାନୀର ବ୍ୟବସାୟ ଲାଭଜନକ ହୁଅନ୍ତା ନାହିଁ ।

କିନ୍ତୁ ଯେତେବେଳେ ଓ୍ୱେଷ୍ଟିଂହାଉସ କମ୍ପାନୀ ଶାଖାପ୍ରଶାଖା ବିସ୍ତାର କରି ନ୍ୟୁୟର୍କ ସହରକୁ ଗ୍ରାସ କରିବାକୁ ବସିଲା, ସେତେବେଳେ ଏଡ଼ିସନ କମ୍ପାନୀର ପୂର୍ବ ଉପହାସ ଉଭେଇଗଲା । ସେମାନେ ଉଦ୍‌ବିଗ୍ନ ହୋଇ ପଡ଼ିଲେ । ନ୍ୟୁୟର୍କ ଥିଲା ସମପ୍ରବାହୀ ତଡ଼ିତର କେନ୍ଦ୍ରସ୍ଥଳ । ଓ୍ୱେଷ୍ଟିଂହାଉସ ଭଳି ଗୋଟାଏ ନଗଣ୍ୟ ନୂଆ କମ୍ପାନୀ ଯଦି ସୁପ୍ରତିଷ୍ଠିତ ଏଡ଼ିସନ କମ୍ପାନୀକୁ ଚାରି ଦୁଆରି ମୁହଁରେ ସ୍ପର୍ଦ୍ଧା ଦେଖାଇପାରେ, ତେବେ ବୁଝିବାକୁ ହେବ ଯେ ପରିବର୍ତ୍ତୀ ପ୍ରବାହ ଉପେକ୍ଷାର ପାତ୍ର ନୁହେଁ ।

ପରିବର୍ତ୍ତୀ ପ୍ରବାହରେ ଯେପରି ଲୋକଙ୍କର ଆସ୍ଥା ନ ଆସେ ସେଥିପାଇଁ ସମପ୍ରବାହପନ୍ଥୀ କମ୍ପାନୀମାନେ ପ୍ରଚାର ଓ ବିଜ୍ଞାପନର ଏକ ବିରାଟ ଅଭିଯାନ ଚଳାଇଲେ । ଖଣିଜବ୍ୟାପାର ସମ୍ବନ୍ଧରେ ପୂର୍ବରୁ ସଂଘର୍ଷ ଘଟିଥିଲା ସତ୍ୟ; କିନ୍ତୁ ଏହି ବିଦ୍ୟୁତ୍‌ସଂକ୍ରାନ୍ତ ସଂଘର୍ଷ ତୁଳନାରେ ତାହା କିଛି ନୁହେଁ ।

ଜେନେରାଲ ଇଲେକ୍ଟ୍ରିକ କମ୍ପାନୀ ସମ୍ବାଦପତ୍ର, ସାମୟିକ ପତ୍ରିକା ଓ ବିଜ୍ଞାପନରେ ହଜାର ହଜାର ଡଲାର ଖରଚକରି ପ୍ରଚାର ଚଳାଇଲା ଯେ ପରିବର୍ତ୍ତୀ ପ୍ରବାହ ଜନସାଧାରଣଙ୍କ ପକ୍ଷରେ ଘୋର ମାରାତ୍ମକ । ସେମାନେ କହିଲେ ଯେ ଏହା ଉଚ୍ଚ ବିଭବରେ (High voltage) ପରିଚାଳିତ ହେଉଥିବାରୁ ଆବାଳବୃଦ୍ଧବନିତା ଏହାଦ୍ୱାରା ଆଘାତ ପାଇ ପାରନ୍ତି; ଏପରିକି ମୃତ୍ୟୁ ମୁଖରେ ପଡ଼ିପାରନ୍ତି । ଏହି ଆକ୍ରମଣକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ଜର୍ଜ ବୁଝାଇବାକୁ ଚେଷ୍ଟା କଲେ ଯେ ପରିବର୍ତ୍ତୀ ପ୍ରବାହ ଚାଳିତ ହେଲାପରେ ଟ୍ରାନ୍‌ସଫର୍ମରଦ୍ୱାରା ଏହାର ବିଭବ କମାଇ ଦିଆଯାଉଥିବାରୁ ଏହାକୁ ଗୃହ କର୍ମରେ ବ୍ୟବହାର କରିବା

ସମ୍ପୂର୍ଣ୍ଣ ନିରାପଦ । କିନ୍ତୁ ଏଡ଼ିସନ କମ୍ପାନୀମାନଙ୍କର ଆକ୍ରମଣ ବନ୍ଦ ହେଲା ନାହିଁ ; ବରଂ ବୃଦ୍ଧି ପାଇଲା । ଗୋଟିଏ ଖବରକାଗଜରେ ସମ୍ବାଦ ବାହାରି ଥିଲା ଯେ ଜଣେ ପିଲା ଉଚ୍ଚ ବିଭବର ବୈଦ୍ୟୁତିକ ତାର ଛୁଇଁ ଦେବାରୁ ମୃତ୍ୟୁମୁଖରେ ପଡ଼ିଥିଲା । ଏହି ସମ୍ବାଦଟି ପରିବର୍ତ୍ତୀ ପ୍ରବାହର ବିରୁଦ୍ଧରେ ପ୍ରଚାର ଉଦ୍ଦେଶ୍ୟରେ ବ୍ୟବହୃତ ହେଲା । ଜେନେରାଲ ଇଲେକ୍ଟ୍ରିକ କମ୍ପାନୀ ପ୍ରଚାର କଲେ ଯେ ପରିବର୍ତ୍ତୀ ପ୍ରବାହର ବ୍ୟବହାର ଦ୍ୱାରା ଆମେରିକାର ପ୍ରତ୍ୟେକ ବାଳକ ବାଳିକାର ଜୀବନ ବିପନ୍ନ ହୋଇଅଛି । ଏଡ଼ିସନଙ୍କ ମତର ସମର୍ଥକ ଓ ଏଡ଼ିସନଙ୍କ ପ୍ରଦତ୍ତ ବିଜ୍ଞାପନର ଆୟ ଉପରେ ନିର୍ଭରଶୀଳ କେତେକ ସମ୍ବାଦପତ୍ର ଆକର୍ଷଣୀୟ ଶିରୋନାମା ଦେଇ ପରିବର୍ତ୍ତୀ ପ୍ରବାହର ବିରୋଧୀ ବାର୍ତ୍ତାମାନ ପ୍ରକାଶ କରିବାକୁ ଲାଗିଲେ ।

ଏହି ବିରୋଧ ସରଗରମ ହୋଇ ଆସିଲା ବେଳକୁ ସ୍ୱୟଂ ଏଡ଼ିସନ ଯୁଦ୍ଧ ଭୂମିରେ ଅବତୀର୍ଣ୍ଣ ହେଲେ । 'ବୈଦ୍ୟୁତିକ ଆଲୋକର ବିପଦ' ଏହି ଶିରୋନାମାରେ ସେ ଗୋଟିଏ ପ୍ରବନ୍ଧ ନର୍ଥ ଆମେରିକାନ୍ ରିଭିଉ (North American Review) ପତ୍ରିକାରେ ପ୍ରକାଶ କଲେ । ଏହି ପ୍ରବନ୍ଧରେ ସେ ପରିବର୍ତ୍ତୀ ପ୍ରବାହର ଘୋର ନିନ୍ଦା କରି ଲେଖିଥିଲେ—ଆଜି ପର୍ଯ୍ୟନ୍ତ ଏପରି କୌଣସି ଉପାୟ ବାହାରି ନାହିଁ ଯାହାଦ୍ୱାରା କି ଉଚ୍ଚବିଭବସମ୍ପନ୍ନ ବୈଦ୍ୟୁତିକ ତାର ସୁ-ଅନ୍ତରିତ (Insulated) ଓ ନିରାପଦ ହୋଇ ପାରିବ । ଏହି ପତ୍ରିକାର ପରବର୍ତ୍ତୀ ସଂଖ୍ୟାରେ ଜର୍ଜ ଗୋଟିଏ ପ୍ରବନ୍ଧ ପ୍ରକାଶ କଲେ । ତାହାର ଶିରୋନାମା ଥିଲା 'ମିଷ୍ଟର ଏଡ଼ିସନଙ୍କୁ ଉତ୍ତର ।'

ଏଥିରେ ସେ ଲେଖିଥିଲେ, 'ପରିବର୍ତ୍ତୀ ପ୍ରବାହ ଯେ ମନୁଷ୍ୟର ପ୍ରାଣ ନେଇ ପାରିବ, ଏ କଥା ସତ୍ୟ । ସେହିପରି ବାରୁଦ, ଡ଼ିନାମାଇଟ୍, ମଦ୍ୟ ଓ ଅନ୍ୟ ଅନେକ ଦ୍ରବ୍ୟ ମନୁଷ୍ୟର ପ୍ରାଣ ନେଇ ପାରିବ । କିନ୍ତୁ ଆମେ ଏପରି ଗୋଟିଏ ଉପାୟ ବାହାର କରିଛୁ ଯେ ନିତାନ୍ତ ମୂର୍ଖ ହୋଇ ନ ଥିଲେ ଯେ କେହି ଲୋକ ଏହି ସାଙ୍ଘାତିକ ପରିବର୍ତ୍ତୀ ପ୍ରବାହୀ ବିଦ୍ୟୁତକୁ ନିର୍ଭୟରେ ବ୍ୟବହାର କରି ପାରିବ । ଅବଶ୍ୟ କେହି ଯଦି ସମଗ୍ର ଡାଇନାମୋଟିକୁ ଗିଳିଦିଏ ତେବେ ସେ କଥା ସ୍ୱତନ୍ତ୍ର ।''

ଅଳ୍ପ ଦିନ ମଧ୍ୟରେ ଏହି ତର୍କ ବିତର୍କ ଏପରି ଅବସ୍ଥାରେ ପହଞ୍ଚିଲା ଯେ ଉଭୟ ପକ୍ଷ ପରସ୍ପର ବିରୁଦ୍ଧରେ ଲାଞ୍ଚ, ମିଛ ଜୁଆଚୋରି, ମାନହାନି ପ୍ରଭୃତି ଅଭିଯୋଗ ଆଣିବାକୁ କୁଣ୍ଠାବୋଧ କଲେ ନାହିଁ। ଉଭୟ ପକ୍ଷର ସମର୍ଥକମାନେ ମଧ୍ୟ ନିଜକୁ ସଂଯତ ରଖି ପାରିଲେ ନାହିଁ ।

ପରିବର୍ତ୍ତୀ ପ୍ରବାହର ବିରୋଧରେ ଏକ ପ୍ରବଳ ଶକ୍ତି ଦଣ୍ଡାୟମାନ ହୋଇଥିଲେ ସୁଦ୍ଧା ଏହାର ଜନପ୍ରିୟତା ବୃଦ୍ଧି ପାଉଥିଲା । ଓ୍ୱେଷ୍ଟିଂଗ-ହାଉସ କମ୍ପାନୀର ଯନ୍ତ୍ରପାତି ବହୁ ପରିମାଣରେ ବିକି ହେଉଥିଲା ଏବଂ ଦେଶର ସମସ୍ତ ଅଞ୍ଚଳରୁ ବୈଦ୍ୟୁତିକ ସରଞ୍ଜାମ ପାଇଁ ଅର୍ଡ଼ର ଆସୁଥିଲା ।

ଯେତେବେଳେ ଜର୍ଜଙ୍କର ବିଜୟ ପ୍ରାପ୍ତି ଆସନ୍ନ ଠିକ୍ ସେହି ସଙ୍କଟଜନକ ମୁହୂର୍ତ୍ତରେ ଏପରି ଏକ ଘଟନା ଘଟିଲା ଯେ ତାହା ଫଳରେ ପରିବର୍ତ୍ତୀ ପ୍ରବାହର ଭବିଷ୍ୟତ ଚିରକାଳ ପାଇଁ ବିନଷ୍ଟ ହେବାର ଆଶଙ୍କା ଦେଖାଗଲା । ନ୍ୟୁୟର୍କ ପ୍ରଦେଶର କାରାଗାର କର୍ତ୍ତାମାନେ ଘୋଷଣା କଲେ ଯେ ପ୍ରାଣଦଣ୍ଡରେ ଦଣ୍ଡିତ ଅପରାଧୀମାନଙ୍କୁ ଫାଶି ଦିଆ ନ ଯାଇ ସେମାନଙ୍କ ଦେହରେ ବିଦ୍ୟୁତ୍ ପ୍ରବାହ ପରିଚାଳିତ କରାଇ ସେମାନଙ୍କର ପ୍ରାଣନାଶ କରାଯିବ ।

କେଉଁ ଉପାୟରେ ନିଶ୍ଚିତ ଭାବରେ, ଅତ୍ୟଳ୍ପ ସମୟ ମଧ୍ୟରେ ଓ ବିନାକଷ୍ଟରେ ସେମାନଙ୍କୁ ମୃତ୍ୟୁଦଣ୍ଡ ଦିଆଯିବ ଏ ସମ୍ବନ୍ଧରେ ନ୍ୟୁୟର୍କର ଉଚ୍ଚ କର୍ମଚାରୀମାନେ ବିଶେଷଜ୍ଞମାନଙ୍କର ମତ ପଚାରିବାରୁ ସେମାନେ ପ୍ରସ୍ତାବ ଦେଲେ ଉଚ୍ଚ ବିଭବସମ୍ପନ୍ନ ପରିବର୍ତ୍ତୀ ପ୍ରବାହର ଚାଳନା ଦ୍ୱାରା ଏହା ହୋଇପାରିବ ।

ପରିବର୍ତ୍ତୀ ପ୍ରବାହର ବିରୋଧୀମାନଙ୍କ ହାତରେ ଏହା ଏକ ମାରାତ୍ମକ ଅସ୍ତ୍ରରୂପେ କାର୍ଯ୍ୟ କଲା । ପରିବର୍ତ୍ତୀ ପ୍ରବାହର ଉନ୍ନତି ହୋଇ ପାରିଥିଲା, ଓ୍ୱେଷ୍ଟିଂଗହାଉସ୍ କମ୍ପାନୀର ଟ୍ରାନ୍ସଫର୍ମର ଦ୍ୱାରା । ତେଣୁ ଜର୍ଜଙ୍କ ଚକ୍ଷୁରେ ବିଶେଷଜ୍ଞମାନଙ୍କର ଅଭିମତ ହେଲା ଯେପରିକି ନିଷ୍ଠୁରତାର ଏକ ଚୂଡ଼ାନ୍ତ ପରିହାସ ।

ଏଡିସନ୍‌ଙ୍କ ଦଳ ପୁଣି ଆକ୍ରମଣ ଆରମ୍ଭ କରି ଦେଲେ । ସେମାନେ ପ୍ରଚାର କଲେ ଯେ ନ୍ୟୁୟର୍କର ପ୍ରାଦେଶିକ ସରକାର ପରିବର୍ତ୍ତୀ ପ୍ରବାହକୁ ମୃତ୍ୟୁ ବିଧାନର ଶ୍ରେଷ୍ଠ ଉପାୟ ରୂପେ ଗ୍ରହଣ କରିଅଛନ୍ତି । ପରିବର୍ତ୍ତୀ ପ୍ରବାହର ମାରାତ୍ମକତା ବିଷୟରେ ଏହାଠାରୁ ବଳି ଆଉ କି ପ୍ରମାଣ ଲୋଡ଼ା ହୋଇପାରେ ? ସେମାନେ ବାରମ୍ବାର ଏହି କଥାର ପୁନରାବୃତ୍ତି କରି ସମ୍ବାଦ ପତ୍ରରେ, ସାମୟିକ ପତ୍ରିକାରେ ଓ ବକ୍ତୃତାରେ ପ୍ରଚାର କଲେ; ସେମାନେ ଜନସାଧାରଣଙ୍କ ମନରେ ଗୋଟାଏ ଧାରଣା ସୃଷ୍ଟି କରିବାକୁ ଲାଗିଲେ ଯେ ପରିବର୍ତ୍ତୀ ପ୍ରବାହ ସଙ୍ଗେ ମୃତ୍ୟୁର ସମ୍ବନ୍ଧ ଅନିବାର୍ଯ୍ୟ ।

ପରସ୍ପର ମଧ୍ୟରେ ପ୍ରଚାରଯୁଦ୍ଧ ଭୀଷଣ ଆକାର ଧାରଣ କରିଥିବା ସମୟରେ ଜର୍ଜ ହର୍‌ମାନଠାରୁ ଏକ ଦୁଃସମ୍ବାଦ ପାଇଲେ । ହର୍‌ମାନ ଜଣାଇଲେ ଯେ ଟେସଲାଙ୍କ ମୋଟରର ପୁନର୍ନିର୍ମାଣରେ କମ୍ପାନୀର ଅତିରିକ୍ତ ବ୍ୟୟ ହେଉଅଛି । ଓଏଷ୍ଟିଂହାଉସ ଇଲେକ୍‌ଟ୍ରିକ୍ କମ୍ପାନୀର ସଂରକ୍ଷିତ ପାଣ୍ଠିରୁ ଅଧିକ ଅଂଶ ଏହି ଉଦ୍ୟମରେ ଖର୍ଚ୍ଚ ହୋଇଗଲାଣି ।

ଜର୍ଜ ଚିନ୍ତିତ ଭାବରେ ପଚାରିଲେ, "ଏତିକି, ନା ଆଉ କିଛି ?"

ହର୍‌ମାନ ଉତ୍ତର କଲେ, "ଏହାହିଁ ଏକ ଗୁରୁତର ବିଷୟ । କମ୍ପାନୀର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନୁହେଁ । ବ୍ୟବସାୟର ଦ୍ରୁତ ପ୍ରସାର ଓ ତାହା ସଙ୍ଗେ ଟେସଲାଙ୍କ ମୋଟରର ପୁନର୍ନିର୍ମାଣରେ ଆମର ସଂରକ୍ଷିତ ପାଣ୍ଠି ଶେଷ ହୋଇ ଆସିଲାଣି । ବର୍ତ୍ତମାନ ନଗଦ ଟଙ୍କା ବିଶେଷ ଦରକାର ।"

ହର୍‌ମାନ ଆର୍ଥିକ ବିବରଣ ସମ୍ବଳିତ ରିପୋର୍ଟଟି ବଢ଼ାଇ ଦେବାରୁ ଜର୍ଜ ତାକୁ ଉତ୍ତମରୂପେ ଦେଖି କହିଲେ, "ମୁଁ ଦେଖୁଛି ଯେ ଆମର ବିକ୍ରି ବଢ଼ୁଛି; ଲାଭ ମଧ୍ୟ ହେଉଛି ।"

ହର୍‌ମାନ ଉତ୍ତର କଲେ, "ସେ କଥା ସତ । କିନ୍ତୁ ଆମର ସଂରକ୍ଷିତ ପାଣ୍ଠି ନିତାନ୍ତ ଦରକାର । ବିଶେଷତଃ ଏହି ବୈଦ୍ୟୁତିକ ଚଉକି ବ୍ୟାପାର ନେଇ ଆମର ବ୍ୟବସାୟ ମାନ୍ଦା ପଡ଼ିଯିବାର ସମ୍ଭାବନା ଅଛି ।

ସେ ସମସ୍ତ ପାଇଁ ଆମକୁ ପ୍ରସ୍ତୁତ ରହିବାକୁ ହେଲେ ସଂରକ୍ଷିତ ପାଣ୍ଠି ଦରକାର ।"

ଜର୍ଜ ହର୍‌ମାନର ଯୁକ୍ତି ସ୍ୱୀକାର କରି କହିଲେ, "ତୁ ଯାହା କହିଲୁ ଠିକ୍ । ଆମକୁ ଋଣ ଉଠାଇବାକୁ ହେବ । ଆମର କମ୍ପାନୀର ଯେଉଁ ସମ୍ପତ୍ତି ଅଛି, ସେଥିରେ ଋଣ ମିଳିବା କଠିନ ହେବ ନାହିଁ ।"

ପିଟ୍‌ସବର୍ଗ ସହରର କେତେକ ପ୍ରଧାନ ପ୍ରଧାନ ବ୍ୟାଙ୍କ ମାଲିକ-ମାନଙ୍କୁ ଡକାଇ ଜର୍ଜ ଗୋଟିଏ ସଭା କରାଇଲେ । ସେଥିରେ ସେ ନିଜର ଅବସ୍ଥା ଜଣାଇ କହିଲେ ଯେ ତାଙ୍କ କମ୍ପାନୀ ପାଇଁ ଋଣର ପ୍ରୟୋଜନ । ସେମାନେ ଉତ୍ତର କଲେ ଯେ କୌଣସି ଗୋଟିଏ ବ୍ୟାଙ୍କ ଏତେ ଅଧିକ ଟଙ୍କା ଋଣ ଦେଇ ପାରିବ ନାହିଁ । ତେଣୁ ସେମାନେ ସମସ୍ତେ ମିଳି ଆବଶ୍ୟକ ଋଣ ଦେବାକୁ ପ୍ରସ୍ତୁତ । ଜର୍ଜ ଏହି ପ୍ରସ୍ତାବରେ କୌଣସି ଆପତ୍ତି କଲେ ନାହିଁ ।

ଏବେ ଋଣର ସର୍ତ୍ତ ଆଦି ବିଷୟରେ ଆଲୋଚନା ହେଲା । ଜଣେ ବ୍ୟାଙ୍କମାଲିକ କହିଲେ, "ତେବେ ଗୋଟିଏ କଥା, ମିଷ୍ଟର ଓ୍ୱେଷ୍ଟିଂହାଉସ, ଆପଣଙ୍କ କମ୍ପାନୀର ଜେନେରାଲ ମାନେଜର ନିଯୁକ୍ତ କରିବାର ଅଧିକାର ଆମ୍ଭମାନଙ୍କ ହାତରେ ରହିବ ।''

ଜର୍ଜ ଏହା ଶୁଣି ଚକିତ ହୋଇଗଲେ । ସେ ଏହା'ର ପ୍ରତିବାଦ କରି କହିଲେ, "ମୁଁ ବୁଝିପାରୁନାହିଁ । କମ୍ପାନୀର ପରିଚାଳନା ଆମର ଘରୋଇ ବ୍ୟାପାର ।''

"ଠିକ୍ ତାହା ନୁହେଁ । ଆମେ ଯେତେବେଳେ ଏତେଗୁଡ଼ାଏ ଟଙ୍କା ଦେବୁ, ସେତେବେଳେ ଗୋଟାଏ ପ୍ରତିଶ୍ରୁତି······ ।''

''କିନ୍ତୁ କମ୍ପାନୀର ସମ୍ପତ୍ତି ସେଥିପାଇଁ ରହିଛି । ଆପଣମାନେ ଆମ କମ୍ପାନୀର ଆର୍ଥିକ ପରିସ୍ଥିତିର ରିପୋର୍ଟଟି ଦେଖିଥିଲେ ଓ ଭବିଷ୍ୟତରେ ଏହାର ସମ୍ଭାବନା ବିଷୟ ଅବଗତ ଅଛନ୍ତି । କମ୍ପାନୀର ଅବସ୍ଥା ଭଲ ଓ ବ୍ୟବସାୟ ବୃଦ୍ଧି ପାଉଅଛି । ଏହାଠାରୁ ଆଉ କ ଅଧିକ ପ୍ରତିଶ୍ରୁତି ଦରକାର ?''

ବ୍ୟାଙ୍କମାଲିକଙ୍କର ଜଣେ ମୁଖ୍ୟ ବ୍ୟକ୍ତି କହିଲେ, "ବ୍ୟାପାରଟା ଏତେ ସହଜ ନୁହେଁ ମିଷ୍ଟର ଓୟେଷ୍ଟିଂହାଉସ । ସ୍ପଷ୍ଟ କହିବାକୁ ଗଲେ ଆମ୍ଭେମାନେ ଆପଣଙ୍କ କମ୍ପାନୀର ପରିଚାଳନା ନୀତି ବିଷୟରେ ସନ୍ତୁଷ୍ଟ ନୋହୁ । ଆଜି ଠିକ୍ ବ୍ୟାବସାୟିକ ଦୃଷ୍ଟିରେ କମ୍ପାନୀ ପରିଚାଳିତ ହେବା ଉଚିତ । ଆଶାକରେଁ ଅନ୍ୟ ବ୍ୟାଙ୍କମାଲିକମାନେ ମୋ ସହିତ ଏ ବିଷୟରେ ଏକମତ ।"

ସେମାନେ ସମ୍ମତି ଜଣାଇଲେ ।

ଜର୍ଜ ବହୁ କଷ୍ଟରେ କ୍ରୋଧ ସମ୍ବରଣ କରି କହିଲେ, "କହନ୍ତୁ, ଆପଣମାନେ ଠିକ୍ କେଉଁ ବିଷୟରେ ଆପତ୍ତି କରୁଅଛନ୍ତି ?"

"ଗୋଟିଏ ଉଦାହରଣ ଦେଖନ୍ତୁ । ଆପଣ ଗବେଷଣା ଦିଗରେ ବଡ଼ ଆଗ୍ରହୀ । ଆପଣଙ୍କ ଅର୍ଥାଭାବର ଗୋଟିଏ ପ୍ରଧାନ କାରଣ ହେଉଛି, ଏକାଧିକ ଦଶା ମୋଟର (Polyphase motor) ନେଇ ନୂତନ ଯନ୍ତ୍ର ନିର୍ମାଣର ଚେଷ୍ଟାରେ ଆପଣ ଅନେକ ଟଙ୍କା ବ୍ୟୟ କରୁଅଛନ୍ତି । ଆପଣ ଯଦି କେବଳ ସୁପରୀକ୍ଷିତ ଯନ୍ତ୍ରପାତିର ଉତ୍ପାଦନ ଓ ବିକ୍ରି ଦିଗରୁ କାରବାରକୁ ସୀମାବଦ୍ଧ ରଖିଥାନ୍ତେ ତେବେ ଆପଣଙ୍କର ଆର୍ଥିକ ଅବସ୍ଥା ସୁଦୃଢ଼ ରହିଥାଆନ୍ତା ।

ଜର୍ଜ ଦାନ୍ତ ଚିପି ଧୀରେ ଧୀରେ କହିଲେ, "ଗବେଷଣା ହୋଇ ନ ଥିଲେ ଟ୍ରାନ୍ସଫର୍ମର ହୋଇ ନଥାନ୍ତା କି ପରିବର୍ତ୍ତୀ ପ୍ରବାହର ଯନ୍ତ୍ରପାତି ହୋଇ ନ ଥାନ୍ତା; ଏପରି କି ଆମର ଓୟେଷ୍ଟିଂହାଉସ ଇଲେକ୍ଟ୍ରିକ୍ କମ୍ପାନୀ ପ୍ରତିଷ୍ଠିତ ହୋଇ ନ ଥାନ୍ତା । ଆମ ବ୍ୟବସାୟର ପ୍ରଧାନ ପଣ୍ୟ ହେଉଛି 'ପ୍ରଗତି' । ଭବିଷ୍ୟତ ଦେଶ ଓ ଜାତିର କଲ୍ୟାଣ ଲକ୍ଷ୍ୟରେ ଆମେ ଯନ୍ତ୍ର ଉଦ୍ଭାବନ କରୁଛୁ; ତାର ଉନ୍ନତି ସାଧନ କରୁଛୁ । ମୁଁ ଜଣେ ଉଦ୍ଭାବକ; କେବଳ ଲାଭର ଚିନ୍ତାରେ ମୁଁ ବିବ୍ରତ ନୁହେଁ । ଯଦି କେବେ ଓୟେଷ୍ଟିଂହାଉସ ଇଲେକ୍ଟ୍ରିକ୍ କମ୍ପାନୀ କେବଳ ଲାଭର ଲକ୍ଷ୍ୟ ରଖେ, ସେତେବେଳେ ମୋର ତାହା ସହିତ ସମସ୍ତ ସମ୍ପର୍କ ଛିନ୍ନ ହୋଇଯିବ । ବୋଧହୁଏ, ଆପଣମାନେ ମୋର ଉଦ୍ଦେଶ୍ୟ ବୁଝି ପାରିଛନ୍ତି ।"

"କିନ୍ତୁ ଆମ୍ଭେମାନେ ହେଲୁ ବ୍ୟବସାୟୀ । ଆମେ ଆଗେ ଆମ ନିଜର ସ୍ୱାର୍ଥ ଦେଖିବୁ । ଆପଣ ଆମ୍ଭମାନଙ୍କ ଅବସ୍ଥାଟା ଦେଖି ବୁଝନ୍ତୁ ।"

ଜର୍ଜ ଦୃଢ଼ ଭାବରେ କହିଲେ, "ମୁଁ ବେଶ ବୁଝିପାରୁଛି । ମୁଁ ବ୍ୟାଙ୍କମାଲିକ ନୁହେଁ । ତେଣୁ ଆପଣମାନେ କିପରି ବ୍ୟାଙ୍କର ପରିଚାଳନା କରିବେ ସେ ବିଷୟରେ କିଛି କହିବାର ଅଧିକାର ମୋର ନାହିଁ । ସେହିପରି ମୋର କମ୍ପାନୀ କିପରି ପରିଚାଳନା କରିବ, ସେ ବିଷୟରେ କାହାରି ଉପଦେଶ ନେବାକୁ ମୁଁ ବାଧ୍ୟ ନୁହେଁ ।

ବ୍ୟାଙ୍କମାଲିକ କହିଲେ, "ଏପରି ଅବସ୍ଥାରେ ଆମ୍ଭେମାନେ ଆପଣଙ୍କ କମ୍ପାନୀକୁ ଋଣ ଦେବାକୁ ଅକ୍ଷମ ।"

ଜର୍ଜ ଉତ୍ତର କଲେ, "ମୁଁ ସେ କଥା ବୁଝିପାରୁଛି । ଆପଣମାନେ ଦୟାକରି ଏତେ ସମୟ ମୋ ପାଇଁ ବ୍ୟୟ କରିଥିବାରୁ ସେଥିପାଇଁ ଧନ୍ୟବାଦ । ନମସ୍କାର ।"

ପିଟସ୍‌ବର୍ଗରୁ ଋଣ ପାଇବାର କୌଣସି ଆଶା ରହିଲା ନାହିଁ । ଏଣେ କମ୍ପାନୀର ଆର୍ଥିକ ସଙ୍କଟ । ହରିମାନ୍ ଓ ଅନ୍ୟାନ୍ୟ ଉଚ୍ଚ କର୍ମଚାରୀ-ମାନଙ୍କୁ ଡାକି ଜର୍ଜ ପରାମର୍ଶ କଲେ । ଏମାନଙ୍କ ନିକଟରେ ଜର୍ଜ ନିଜର ପରିକଳ୍ପନା ପ୍ରକାଶ କରି କହିଲେ, "ମୁଁ ନ୍ୟୁୟର୍କ ଯାଇ ସେଠାରେ ବ୍ୟାଙ୍କମାଲିକମାନଙ୍କ ସଙ୍ଗେ ଆଲୋଚନା କରିବି । ମୋର ବିଶ୍ୱାସ, ସେମାନେ ଆମ କମ୍ପାନୀ ଉପରେ ପ୍ରଭୁତ୍ୱ କରିବାର ଚେଷ୍ଟା ନ କରି ଋଣ ଦେବେ ।"

କେତେକ ସହକର୍ମୀ ଏଥିରେ ସଂଶୟ ପ୍ରକାଶ କଲେ । ଜଣେ ଡିରେକ୍ଟର କହିଲେ, "ନ୍ୟୁୟର୍କ ହେଉଛି ଏଡ଼ିସନ୍‌ଙ୍କ ପ୍ରଭୁତ୍ୱର କେନ୍ଦ୍ର-ସ୍ଥଳ । ସେଠାର ବ୍ୟାଙ୍କମାଲିକମାନେ ସିଧା ସିଧା ମନା କରିଦେବେ ।"

ଜର୍ଜ ଯୁକ୍ତି କରି କହିଲେ, "ମୁଁ ସେପରି ମନେ କରୁନାହିଁ । ସେମାନେ ନ୍ୟୁୟର୍କରେ ରହନ୍ତି । ଠିକ୍ ଏହି କାରଣରୁ ମୁଁ ସେମାନଙ୍କ ପାଖକୁ ଋଣପାଇଁ ଯାଉଛି । ମୁଁ ସେଠାକାର ପରିସ୍ଥିତି ପ୍ରତି ଲକ୍ଷ୍ୟ ରଖିଛି । ସେ ପରିସ୍ଥିତି ବଡ଼ କୌତୁହଳ ଜନକ । ଆପାତତଃ ଏଡ଼ିସନ୍

ଓ ତାଙ୍କର ସମର୍ଥକମାନେ ଏତେ ପ୍ରଭାବଶାଳୀ ହୋଇଅଛନ୍ତି ଯେ ସେମାନେ ବ୍ୟାଙ୍କମାଲିକମାନଙ୍କୁ ନିଜର ସର୍ତ୍ତ ଦେଇ ପାରୁଅଛନ୍ତି । କେତେକ ସ୍ୱାଧୀନ ଚେତା ବ୍ୟାଙ୍କମାଲିକ ଏଥିପାଇଁ ସେମାନଙ୍କ ଉପରେ ବିରକ୍ତ । ଅନ୍ୟ କୌଣସି ଉଦ୍ଦେଶ୍ୟରେ ନ ହେଉ ପଛକେ ଅନ୍ତତଃ ଏଡିସନଙ୍କ ଜେନେରାଲ ଇଲେକ୍‌ଟ୍ରିକ୍ କମ୍ପାନୀର ଏକ୍ଷ୍ବ ଏକାଧିପତ୍ୟ ଖର୍ବ କରିବାପାଇଁ ସେମାନେ ଆମକୁ ସାହାଯ୍ୟ କରି ପ୍ରତିଯୋଗିତା ସୃଷ୍ଟି କରାଇବେ ।"

ହର୍‌ମାନ କହିଲେ, "ମୁଁ ମଧ୍ୟ ତାହାହିଁ ଆଶା କରୁଛି । ଯାହାହେଉ ଚେଷ୍ଟା କରି ଦେଖାଯାଉ ।" ଡିରେକ୍ଟରମାନେ ଏଥିରେ ଏକମତ ହେଲେ ।

ଜର୍ଜ ନ୍ୟୁୟର୍କ ଯିବାକୁ ପ୍ରସ୍ତୁତ ହେଉଅଛନ୍ତି, ଏହି ସମୟରେ ସେ ଖଣ୍ଡିଏ ଚିଠି ପାଇ ଏକବାରେ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ଚିଠିଟି ଲେଖିଥିଲେ ଏଡିସନ୍‌ଙ୍କ ଜେନେରାଲ ଇଲେକ୍‌ଟ୍ରିକ୍ କମ୍ପାନୀର ପ୍ରେସିଡେଣ୍ଟ ମିଷ୍ଟର ସି· ଏ· କଫିନ । ସେଥିରେ ସେ ଲେଖିଥିଲେ ଯେ ଗୋଟିଏ ଗୁରୁତର ବିଷୟରେ ସେ ଜର୍ଜଙ୍କ ସହିତ ସାକ୍ଷାତ ଇଚ୍ଛା କରନ୍ତି ।

ଜର୍ଜ ହର୍‌ମାନକୁ ଚିଠିଟି ଦେଖାଇଲେ । ହର୍‌ମାନ ଚିଠିଖଣ୍ଡି ପଢ଼ି ସନ୍ଦେହ ପ୍ରକାଶ କରି କହିଲେ, "କଫିନ୍‌ଙ୍କର ସ୍ୱଭାବ ଆମକୁ ଜଣାଅଛି । ତାଙ୍କର ନିଶ୍ଚୟ ଗୋଟାଏ କିଛି ଦୁରଭିସନ୍ଧି ଥିବ । ଆମର ସାବଧାନ ରହିବା ଦରକାର ।"

ଜର୍ଜ ଟେବୁଲ ଉପରେ ହାତ ପିଟି ଟିକିଏ ଚିନ୍ତା କରି କହିଲେ, "ମୁଁ କଅଣ ତାହା ଜାଣେ ନାହିଁ ? ତେବେ ତାଙ୍କର ମତଲବଟା କଅଣ ଜାଣିବା ଉଚିତ ।"

ସେ ଗୋଟିଏ ମାମୁଲି ଉତ୍ତର ଦେଇ କଫିନଙ୍କୁ ଜଣାଇଲେ ଯେ ପିଟସବର୍ଗରେ ଦୁହିଁଙ୍କର ସାକ୍ଷାତ ହୋଇପାରିବ ।

କିଛି ଦିନ ପରେ ମିଷ୍ଟର କଫିନ ଉପସ୍ଥିତ ହେଲେ । ଆକାର ପ୍ରକାରରେ ସେ ଜର୍ଜଙ୍କର ଠିକ ବିପରୀତ । ଜର୍ଜ ଯେପରି ଦୀର୍ଘାକାର ଓ

ସ୍ଥୂଳଶରୀର କଫିନ୍ ସେହିପରି ଖର୍ବକାୟ ଓ ରୁଗ୍ଣ । ଖୁବ୍ ଚିର ଚିର କରି ଉଚ୍ଚ ସ୍ୱରରେ କଥା କହିବା ତାଙ୍କର ଅଭ୍ୟାସ । ତାଙ୍କ ଆଖିରେ ଚଷମା ଥିଲା ଓ ସେହି ଚଷମାର ଆଢୁଆଳରୁ ସେ ଜର୍ଜଙ୍କ ଅଫିସର ଚାରିଆଡ଼ ଦେଖି ନେଉଥିଲେ ।

ଜେନେରାଲ ଇଲେକ୍ଟ୍ରିକ୍ କମ୍ପାନୀର ଏହି ପ୍ରଧାନ କର୍ମଚାରୀ ପ୍ରଥମେ ଅସଲ କଥା ନ ପକାଇ ଆଗେ ତାଙ୍କ କମ୍ପାନୀର ଏକ ବିସ୍ତୃତ ଇତିହାସ ଦେଇଗଲେ । ସେ ଗର୍ବ ପ୍ରକାଶ କରି କହିଲେ ଯେ ତାଙ୍କ କମ୍ପାନୀ ଅନେକ ଷ୍ଟେଷ୍ଠ ଷ୍ଟେଷ୍ଠ କମ୍ପାନୀକୁ ନିଜର ଅନ୍ତର୍ଗତ କରି ଏବେ ଏକ ବିରାଟ ଅନୁଷ୍ଠାନ ହୋଇ ପାରିଅଛି । ତା ପରେ ଗର୍ବ ସହକାରେ ଟିକିଏ ଗୋପନରେ କହିଲା ପରି ଜଣାଇଲେ ଯେ ଟମସନ ଓ ହାଉଷ୍ଟନ ନାମକ ଦୁଇଜଣ ଆବିଷ୍କାରକଙ୍କର ପେଟେଣ୍ଟକୁ ଆତ୍ମସାତ୍ କରି ସେ କମ୍ପାନୀର ଶ୍ରୀବୃଦ୍ଧି କରିଅଛନ୍ତି ଏବଂ ପରେ ସେ ଦୁହିଁଙ୍କୁ ବିତାଡ଼ିତ କରି ପାରିଅଛନ୍ତି । ଏହି ଦୁଇ ଜଣଙ୍କର ପେଟେଣ୍ଟକୁ ଭିତ୍ତି କରି ଜେନେରାଲ ଇଲେକ୍ଟ୍ରିକ୍ କମ୍ପାନୀର ପ୍ରତିଷ୍ଠା ଓ ଉନ୍ନତି ।

ଜର୍ଜଙ୍କର ସନ୍ଦେହ ହେଲା ଯେ ଏ ସବୁ କହି କଫିନ୍ ତାଙ୍କୁ ଭୟ ଦେଖାଇବାକୁ ଚେଷ୍ଟା କରୁଅଛନ୍ତି । ଜେନେରାଲ ଇଲେକ୍ଟ୍ରିକ୍ କମ୍ପାନୀ ଏକ ବିରାଟ ଓ ପ୍ରତିପତ୍ତିଶାଳୀ ପ୍ରତିଷ୍ଠାନ । ତାହା ସଙ୍ଗେ ଓୟେଷ୍ଟିଂହାଉସ ଭଳି ଏକ କ୍ଷୁଦ୍ର କମ୍ପାନୀ କଦାପି ପ୍ରତିଯୋଗିତା କରି ତିଷ୍ଠି ପାରିବ ନାହିଁ । ଏହାହିଁ ବୋଧହୁଏ ତାଙ୍କ କହିବାର ଉଦ୍ଦେଶ୍ୟ ଥିଲା । ଟିକିଏ ପରେ କଫିନ ଯାହା କହିଲେ, ସେଥିରେ ଜର୍ଜଙ୍କର ସନ୍ଦେହ ଦୃଢ଼ୀଭୂତ ହୋଇଗଲା ।

ସେ କହିଲେ, "ମିଷ୍ଟର ଓୟେଷ୍ଟିଂହାଉସ, ତାହା ହେଲେ ଆପଣ ବୁଝିପାରୁଥିବେ ଯେ ଆମେ କେବଳ ଗୋଟାଏ ସଡ଼କରେ ବ୍ୟବସାୟ କରୁନାହୁଁ । ଆମକୁ ଅନେକ ସଂଗ୍ରାମ କରିବାକୁ ପଡ଼ିଛି; କିନ୍ତୁ ସେ ସବୁଥିରେ ଆମର ବିଜୟ ହୋଇଅଛି । ମୁଁ ଜାଣି ପାରିଅଛି ଯେ ଆମର କମ୍ପାନୀ ସହିତ ବିବାଦରେ ଆପଣ ବିଶେଷ କ୍ଷତିଗ୍ରସ୍ତ ହୋଇ ପଡ଼ିଅଛନ୍ତି ।"

ଜର୍ଜ ଅତି ସାବଧାନରେ ପ୍ରଶ୍ନ କଲେ, "ଆପଣଙ୍କ କଥାର ଉଦ୍ଦେଶ୍ୟ କଅଣ ?"

"ଉଦାହରଣ ସ୍ୱରୂପ ମୁଁ ଜାଣିପାରିଛି ଯେ ଆପଣଙ୍କ କମ୍ପାନୀର ସଂଚିତ ପାଣ୍ଠି ଅତି କମ ହୋଇ ଯାଇଅଛି । ସେଥିପାଇଁ ଆପଣ ଋଣ ଉଠାଉଅଛନ୍ତି ।"

କଫିନ୍ ଏହା କହିଲାବେଳେ ତାଙ୍କ ମୁହଁ ହସହସ ଦେଖାଯାଉଥିଲା । ଜର୍ଜ ପଚାରିଲେ, "ଆପଣ କପରି ଜାଣିଲେ ଯେ ଆମେ ଋଣ ଖୋଜୁଛୁ ?"

"ଆପଣଙ୍କୁ ତ ମୁଁ ଆଗରୁ କହିଛି ଯେ ଆମେ ସଉକରେ ବ୍ୟବସାୟ କରୁନାହୁଁ । ଖବର ସଂଗ୍ରହ କରିବାପାଇଁ ମଧ୍ୟ ଆମର ଉପଯୁକ୍ତ ପନ୍ଥା ଅଛି ।"

"ଆପଣଙ୍କ ମନର କଥା ଏବେ କହନ୍ତୁ ।"

"ତାହାହେଲେ ବର୍ତ୍ତମାନ ଅସଲ କଥାର ଆଲୋଚନା ହେଉ । ମୁଁ ଆପଣଙ୍କୁ ଗୋଟିଏ ପ୍ରସ୍ତାବ ଦେଉଅଛି । ଆମର ଏହିପରି ବିବାଦ ଚାଲିଲେ ଉଭୟ କମ୍ପାନୀର କ୍ଷତି । ମୁଁ କହୁଛି ଯେ ଆମ ଭିତରେ ଗୋଟାଏ ବ୍ୟବସ୍ଥା...... ।"

"କି ପ୍ରକାର ବ୍ୟବସ୍ଥା ?"—ଜର୍ଜଙ୍କର କଣ୍ଠସ୍ୱରରୁ ତାଙ୍କର ମନର ସନ୍ଦେହ ପ୍ରକାଶ ପାଉଥିଲା ।

କଫିନ ନିଃସଙ୍କୋଚରେ କହିଲେ, "ଗୋଟାଏ ଗୋପନୀୟ ବ୍ୟବସ୍ଥା । ଆମ ଭିତରେ ଗୋଟାଏ ଚୁକ୍ତି ହେବା ଦରକାର, ଅବଶ୍ୟ ସେଇଟା ଲେଖାପଢ଼ା ହେବ ନାହିଁ । ଏହା ଦ୍ୱାରା ବିଦ୍ୟୁତର ହାର ଓ ଯନ୍ତ୍ରପାତିର ମୂଲ୍ୟ ସ୍ଥିର କରାଯିବ । ଏହାକୁ ଉଭୟ ପକ୍ଷ ମାନି ଚାଲିବେ । ଶକ୍ତି ଓ ଯନ୍ତ୍ରପାତିର ବିକ୍ରି ଉଦ୍ଦେଶ୍ୟରେ ଆମ୍ଭେମାନେ ବଜାରକୁ ଏକ ପ୍ରକାରେ ବାଣ୍ଟିଦେବା । ତାହାହେଲେ ଆମ ଦୁଇକମ୍ପାନୀର ବ୍ୟବସାୟରେ କେହି କାହାରିକୁ ବାଧା ଦେବେ ନାହିଁ । ଦର ହୋଇଗଲେ ଆମର ଉଭୟ କମ୍ପାନୀ ବେଶ ଲାଭ କରିପାରିବେ; ଅନ୍ୟ କମ୍ପାନୀ ବଜାରରେ ପ୍ରବେଶ କରିବ ନାହିଁ ।

ଲେକଟାର ଔଦ୍ଧତ୍ୟ ଦେଖି ଜର୍ଜ କ୍ରୋଧାନ୍ଧ ହୋଇ କହିଲେ, "ଆପଣଙ୍କ କହିବାର ଉଦ୍ଦେଶ୍ୟ ଏହି ଯେ ଆମେ ଦର ଓ ବ୍ୟବସାୟ-ନୀତି ସ୍ଥିର କରି ଏକ ପ୍ରକାର ଗୋପନୀୟ ଏକଚାଟିଆ କାରବାର ଚଳାଇବା; ପ୍ରତିଯୋଗିତାର ପଥ ରୁଦ୍ଧ କରି ଦେବା । ମୁଁ ଯାହା ବୁଝିଛି ତାହା ଠିକ୍ ତ ?"

"ହଁ, ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ, ତେବେ ଆପଣ ଯେଉଁ ଭାଷାରେ କହୁଛନ୍ତି, ତାହା ଶୁଣିବାକୁ କଟୁ ।"

ଜର୍ଜ ପୁଣି କ୍ରୋଧରେ କହିଲେ, "କଟୁ ହେଉ ବା ନ ହେଉ ଏହା ସତ୍ୟ । କହନ୍ତୁ ସତ୍ୟ କି ନା ? ଆପଣ କହୁଛନ୍ତି ଯେ ଆମର ଚିରାଚରିତ ସ୍ୱାଧୀନ ପ୍ରତିଯୋଗିତା ନୀତିକୁ ତ୍ୟାଗ କରିବା । ମୋର ମତ ହେଉଛି ଯେ ବ୍ୟବସାୟ କ୍ଷେତ୍ରରେ ସ୍ୱାଧୀନ ପ୍ରତିଯୋଗିତା ଗୋଟିଏ ଶ୍ରେଷ୍ଠ ନୀତି । ଏହା ବିନା ଦେଶରେ ଶିଳ୍ପୋନ୍ନତି ବା ଅଗ୍ରଗତି ଅସମ୍ଭବ । ମୋ ଜୀବନରେ ମୁଁ ଏହି ସ୍ୱାଧୀନ ପ୍ରତିଯୋଗିତାକୁ ଗ୍ରହଣ କରି ନେଇଛି ଏବଂ ଏବେ ସେହି ନୀତିକୁ ତ୍ୟାଗ କରିବା ମୋର ଇଚ୍ଛା ନୁହେଁ । କେବଳ ପ୍ରତିଯୋଗିତା ଫଳରେ ହିଁ ଦ୍ରବ୍ୟର ମୂଲ୍ୟହ୍ରାସ ହୋଇଥାଏ ଓ ଜନସାଧାରଣ ଉପକୃତ ହୋଇଥାନ୍ତି । ଆମର କେତେକ ବ୍ୟବସାୟୀ ନେତାଙ୍କ ଠାରେ ଏ ଯେଉଁ ହୀନ ନୈତିକ ରୋଗ ଦେଖା ଦେଇଛି, ତାହା ବିରୁଦ୍ଧରେ ମୁଁ ସକଳ ଶକ୍ତି ପ୍ରୟୋଗକରି ଯାବଜ୍ଜୀବନ ଯୁଦ୍ଧ କରିବାକୁ ପ୍ରସ୍ତୁତ ଅଛି । ସେମାନେ କହନ୍ତି, "ଜନସାଧାରଣଙ୍କୁ କିଏ ପଚାରେ ?" ଏ ନୀତିକୁ ମୁଁ ନିତାନ୍ତ ଘୃଣା କରେଁ । ଯେ ଏପରି କଥା କହେ, ସେ ଯେତେ ଭଲ ପୋଷାକ ପିନ୍ଧିଥିଲେ ମଧ୍ୟ ମୁଁ ତାର ନୀତିକୁ ଚୋର ଡକାଏତର ନୀତି ବୋଲି କହିବାକୁ ଆଦୌ କୁଣ୍ଠିତ ନୁହେଁ ।"

କଫିନ୍‌ଙ୍କର ମୁହଁ କଳା ପଡ଼ିଗଲା । ସେ କିଛି କହି ପାରିଲେ ନାହିଁ ।

ଜର୍ଜ ଘୃଣା ସହକାରେ ପୁଣି କହିଲେ, "ଆଉ ଗୋଟିଏ କଥା । ଆପଣ ବର୍ତ୍ତମାନ କହୁଥିଲେ ଯେ ଆପଣମାନେ ଟମସନ ଓ ହାଉଷ୍ଟନଙ୍କ ପେଟେଣ୍ଟ ଅଧିକାରକୁ ଅନ୍ୟାୟ ଭାବରେ ଆତ୍ମସାତ୍ କରିଅଛନ୍ତି । ଏଥିରେ ଆପଣ ଯାହା କହୁଛନ୍ତି, ତାହା ବିଶ୍ୱାସ କରିବି କିପରି ?"

ମିଷ୍ଟର କଫିନ୍ ତାଙ୍କର ବହୁମୂଲ୍ୟ କୋଟଟି ଦେହରେ ଦେଇ କ୍ଷୀଣ ସ୍ୱରରେ କହିଲେ, "ଆଚ୍ଛା, ନମସ୍କାର ମିଷ୍ଟର ଓ୍ୱେଷ୍ଟିଂହାଉସ ।"

ରାଗରେ ଜର୍ଜଙ୍କ ମୁଖର ପେଶୀ କୁଞ୍ଚିତ ହୋଇଗଲା । ସେ ମଧ୍ୟ କହିଲେ, "ନମସ୍କାର ।"

ପରେ ଯେତେବେଳେ ଜର୍ଜ ହର୍ମାନ ନିକଟରେ ଏହି ସାକ୍ଷାତର ବିଶଦ ବର୍ଣ୍ଣନା କଲେ ସେତେବେଳେ ସେ କହିଲା, "ଏପରି ମିଜାଜ ଗରମ କରିବାଟା କଅଣ ଠିକ ହେଲା ? ଯେତେ ହେଲେ କଫିନ୍ ଜଣେ ବଡ଼ କ୍ଷମତାଶାଳୀ ଲୋକ । ଏଣିକି ସେ ଆହୁରି ରାଗିବ ଓ ହୁଏତ ଦୁଇ-ଗୁଣ ଅଧିକ ଅନିଷ୍ଟ କରିବ ।"

ଜର୍ଜ ଟିକିଏ ହସି କହିଲେ, "ମୁଁ ତା ସଙ୍ଗେ କଥାବାର୍ତ୍ତା ହେଲା-ବେଳେ ଟିକିଏ ବେଶୀ ଉତ୍ତେଜିତ ହୋଇ ପଡ଼ିଲି । ଅନେକ ଦିନ ହେଲା ମୁଁ ଏପରି କେବେ ରାଗି ନ ଥିଲି । ଲୋକଟାର କଥାରେ ମୋର ରାଗ ବଢ଼ିଗଲା । ତୁ ଜାଣିଥିବୁ ହର୍ମାନ, ଷ୍ଟୀମ ଇଞ୍ଜିନରେ ନିରାପତ୍ତା ଭଲ୍‌ଭ ଥାଏ । ଏହି ବାଟେ ବେଳେ ବେଳେ କିଛି ଷ୍ଟୀମ ବାହାରି ଯାଉ ନ ଥିଲେ ଇଞ୍ଜିନ ଫାଟି ଯାଉଥାନ୍ତା । ମଣିଷର ମଧ୍ୟ ସେହିପରି ମଝିରେ ମଝିରେ ରାଗଗୁଡ଼ାକ ବାହାରି ପଡ଼ିବା ଦରକାର । ଏହାର ଫଳ ଭଲ ହୋଇଥାଏ ।"

ଏହି ଘଟନାର ପର ଦିନ ଜର୍ଜ ଆବଶ୍ୟକୀୟ ଋଣ ସଂଗ୍ରହ କରିବା ଉଦ୍ଦେଶ୍ୟରେ ନ୍ୟୁୟର୍କ ଗଲେ । ତିନି ଦିନ ପରେ ତାଙ୍କ ନିକଟରୁ ଓ୍ୱେଷ୍ଟିଂହାଉସ କମ୍ପାନୀର ଡ଼ିରେକ୍ଟରମାନେ ଏକ ତାରବାର୍ତ୍ତା ପାଇଲେ ଯେ ସେ ନ୍ୟୁୟର୍କର କେତେକ ବ୍ୟାଙ୍କମାଲିକଙ୍କ ସଙ୍ଗେ ଦେଖାକରି କମ୍ପାନୀ ପାଇଁ ଋଣର ବନ୍ଦୋବସ୍ତ କରିଅଛନ୍ତି । ବିନା ସର୍ତ୍ତରେ ଋଣ ଦେବାକୁ ସେମାନେ ସମ୍ମତ ।



## ଚଉଦ

# ଭବିଷ୍ୟତର ଆଭାସ

ନ୍ୟୁୟର୍କରୁ ଫେରି ଆସିବାର କିଛି ଦିନ ପରେ ଜର୍ଜ ଦିନେ ମିଷ୍ଟର ଟେସଲଙ୍କୁ ଡକାଇ ପଚାରିଲେ, "ନିକୋଲା, ତୁମର ମୋଟରକୁ ୧୩୩ ସାଇକ୍ଲ କମ୍ପାଙ୍କର ଉପଯୋଗୀ କରି ପୁନର୍ଗଠନ କରିବାର ସମ୍ଭାବନା କେତେ ଦୂର, ତାହା ସ୍ପଷ୍ଟ କରି କହିଦିଅ । ଯଦି ସମ୍ଭାବନା ଥାଏ, ତେବେ ମୁଁ ସେଥିପାଇଁ ଯେତେ ଟଙ୍କା ଲାଗିବ, ଯେତେ ସମୟ ଲାଗିବ, ତାହା ବ୍ୟୟ କରିବାକୁ ପ୍ରସ୍ତୁତ । କିନ୍ତୁ ମୁଁ ଜାଣିବାକୁ ଚାହେଁ, କାମଟା ହୋଇ ପାରିବାର ସମ୍ଭାବନା କେତେ ଦୂର ?"

ଆବିଷ୍କାରକ ଟେସଲା ଉତ୍ତର କଲେ, "ଆପଣ ମୋର ସ୍ପଷ୍ଟ ମତ ଜାଣିବାକୁ ଚାହାନ୍ତି । ତେବେ ମୁଁ ଖୋଲାଖୋଲି ଭାବରେ କହିବି । ମୋ ମତରେ ଏହି ଉଦ୍ୟମ ତ୍ୟାଗ କରି ପ୍ରଚଳିତ ତଡ଼ିତ ପ୍ରବାହକୁ ମୋଟରର ଉପଯୋଗୀ କରିନେବା ଶ୍ରେୟସ୍କର ହେବ ।"

ଜର୍ଜ ଭ୍ରୂକୁଞ୍ଚିତ କରି କହିଲେ, "ତାହାହେଲେ କହୁଛ ଯେ କାମ ହୋଇ ପାରିବାର ଆଶା ନାହିଁ ।"

ନିକୋଲା ସ୍ପଷ୍ଟଭାଷୀ । ସେ କହିଲେ, "ମୁଁ ତାହା କହୁନାହିଁ । ସମୟକ୍ରମେ ସମସ୍ୟାର ସମାଧାନ ହୋଇପାରେ, କିନ୍ତୁ ତାର ଆଶା କମ ।"

"ତୁମେ ପିଟସବର୍ଗକୁ ଆସିଲାବେଳେ ତ ସେଇ କଥା କହି ପାରି-ଥାଆନ୍ତ ।"

ତରୁଣ ଆବିଷ୍କାରକ ଉତ୍ତର କଲେ, "ମିଷ୍ଟର ଓ୍ୱେଷ୍ଟିଂହାଉସ, ସେତେବେଳେ ଯେ ମୁଁ ଏକଥା କହି ନ ଥିଲି, ତାର କାରଣ ହେଉଛି, ମୁଁ ଜଣେ ବୈଜ୍ଞାନିକ । ସେ ପର୍ଯ୍ୟନ୍ତ ମୋର ଧାରଣା ଥିଲା ଯେ ମୁଁ ଯେଉଁ ୬୦ ସାଇକ୍ଲ କମ୍ପାଙ୍କ ବ୍ୟବହାର କରିଥିଲି, ତାହା ଭଲ କାମ ଦେବ; କିନ୍ତୁ ନିଶ୍ଚିତ ହୋଇ ପାରି ନ ଥିଲି । ନିଶ୍ଚିତ ହେବା ପାଇଁ ଆହୁରି ପରୀକ୍ଷା ଆବଶ୍ୟକ ଥିଲା । ଏଥି ମଧ୍ୟରେ ଅନେକ ପରୀକ୍ଷା କଲିଣି; ବୋଧହୁଏ କେତେ ଡଜନ ଥର କଲିଣି । ଆପଣ ଜାଣନ୍ତି ଯେ ଏ ବିଷୟରେ କମ୍ପାନୀର ଇଞ୍ଜିନିଅରମାନଙ୍କ ସଙ୍ଗେ ମୋର ଅନେକ ବାଦ ବିବାଦ ହୋଇ ଯାଇଛି । ଏବେ ମୋର ଦୃଢ଼ ବିଶ୍ୱାସ ହୋଇଛି ଯେ ମୁଁ ଆଗେ ଯେଉଁ ୬୦ ସାଇକ୍ଲ କମ୍ପାଙ୍କ ସ୍ଥିର କରିଥିଲି, ତାହାହିଁ ସର୍ବାପେକ୍ଷା ଅଧିକ କାର୍ଯ୍ୟୋପଯୋଗୀ ।"

ଚିନ୍ତାରେ ଜର୍ଜଙ୍କର କପାଳ କୁଞ୍ଚିତ ଦେଖାଗଲା । ଏତେ ବିପୁଳ ଅର୍ଥବ୍ୟୟ ଓ ପରିଶ୍ରମ ପରେ ଏ ଉଦ୍ୟମକୁ ତ୍ୟାଗ କରିବା ସମୀଚୀନ ହେବ କି ନା ଏହାର ମୀମାଂସା ବାସ୍ତବିକ ଏକ କଠିନ ବ୍ୟାପାର । ବିଶେଷତଃ କମ୍ପାନୀର ଯେ ଆର୍ଥିକ ଦୁରବସ୍ଥା ଘଟିଛି, ତାହାର ପ୍ରଧାନ କାରଣ ହେଉଛି, ଏହି ଉଦ୍ୟମରେ ଅତିରିକ୍ତ ବ୍ୟୟ । ଏହାକୁ ବନ୍ଦ କରିବାର ଅର୍ଥ—ଅଂଶୀଦାରମାନଙ୍କ ନିକଟରେ ସ୍ୱୀକାର କରିବାକୁ ହେବ ଯେ ତାଙ୍କର ଉଦ୍ୟମ ବିଫଳ ହୋଇଅଛି । ଜର୍ଜ ଚିନ୍ତାକଲେ—"କିନ୍ତୁ ଯେ କୌଣସି ବୈଜ୍ଞାନିକ ଉନ୍ନତି କହିଲେ ଅତୀତର ଭ୍ରମକୁ ଦୂର କରିବାର ଅନନ୍ତ ପ୍ରଚେଷ୍ଟାହିଁ ବୁଝିବାକୁ ହୁଏ । ଏହା ମଧ୍ୟ ସେହିପରି ଏକ ପ୍ରଚେଷ୍ଟା । ଜୀବନରେ ଉନ୍ନତି କରିବାକୁ ହେଲେ ମନୁଷ୍ୟ ନିଜର ଭ୍ରମ ସ୍ୱୀକାର କରିବାକୁ ଶିଖିବା ଦରକାର ।

ସେ ଧୀର ସ୍ୱରରେ କହିଲେ, "ତୁମେ ଠିକ କହୁଛ, ନିକୋଲା । ଆମେ ମୋଟରକୁ ପରିବର୍ତ୍ତିତ କରିବା ଉଦ୍ୟମ ତ୍ୟାଗ କରି ସାଧାରଣ ବ୍ୟବହାର ପାଇଁ ପୁଣି ୬୦ ସାଇକ୍ଲ କମ୍ପାଙ୍କକୁ ଫେରିଯିବା ।"

ଟେସଲା ଏଥିରେ ବିସ୍ମିତ ନ ହୋଇ କହିଲେ, "ଆପଣ ଯେ ଏହା କହିବେ ମୁଁ ଅନୁମାନ କରିଥିଲି । ଆପଣ ଏ ଯେଉଁ ସିଦ୍ଧାନ୍ତ ଗ୍ରହଣ

କଲେ ମୁଁ ତାହାର ଗୁରୁତ୍ୱ ବୁଝି ପାରୁଛି । ଏତେ ଅର୍ଥବ୍ୟୟ ପରେ ପରି-କଳ୍ପନାଟିର ବିଫଳତା ସ୍ୱୀକାର କରିବା ଆପଣଙ୍କ ଭଳି ଲୋକ ପକ୍ଷରେ ଯେ କି ଦୁରୂହ ବ୍ୟାପାର, ତାହା ମୁଁ ଜାଣେ । କିନ୍ତୁ ଆପଣ ମୋହରି ପରି ଜଣେ ଉଦ୍ଭାବକ । ଉଦ୍ଭାବକ ପକ୍ଷରେ ବୃଥା ଅହମିକା ପ୍ରକାଶ କରିବା କିମ୍ବା ଆତ୍ମ ପ୍ରବଞ୍ଚନା କରିବା ସମ୍ଭବପର ନୁହେଁ ।

୭° କମ୍ପାନୀଙ୍କ ପଦ୍ଧତି ପ୍ରବର୍ତ୍ତନ କଲେ ମଧ୍ୟ ଏକାଧିକଦଶା ମୋଟରର (Polyphase motor) ଆକୃତିର କେତେକ ପରିବର୍ତ୍ତନ କରା ନ ଗଲେ ବ୍ୟବସାୟ କ୍ଷେତ୍ରରେ ଚାଲୁ ହୋଇ ପାରିବ ନାହିଁ । ଏହି ପରିବର୍ତ୍ତନ କେତେଦିନରେ ହୋଇ ପାରିବ ବୋଲି ଜର୍ଜ ପଚାରିଲେ । ଏହାର ଉତ୍ତରରେ ଟେସଲା ସମସ୍ତଙ୍କୁ ବିସ୍ମିତ କରି ଦେଇ କହିଲେ, "ମୁଁ ଆଜି ପିଟସବର୍ଗ ଛାଡ଼ି ଚାଲି ଯାଉଛି ।"

ଜର୍ଜ ପଚାରିଲେ, "କିନ୍ତୁ ଚାଲିଯିବ କାହିଁକି ?"

ଟେସଲା ଉତ୍ତର କଲେ, "ଏହାର କାରଣ ହେଉଛି, ଯେଉଁ ସାମାନ୍ୟ ପରିବର୍ତ୍ତନ ଦରକାର; ତାହା ଅତି ସହଜ । ସେ କାର୍ଯ୍ୟ ମୁଁ ଯେପରି କରନ୍ତି, ଆପଣଙ୍କ ଇଞ୍ଜିନିଅରମାନେ ସେହିପରି କରି ପାରିବେ । ମୋର ଏଠାରେ ରହିବାର ଆବଶ୍ୟକତା ଆଉ ନାହିଁ । ଆଉ ଗୋଟିଏ କଥା; ଆପଣଙ୍କ ଇଞ୍ଜିନିଅରମାନଙ୍କ ସଙ୍ଗେ ମୋର ମତଭେଦ ଘଟିଥାଏ । ମୁଁ ଏଠାରେ ରହିଲେ ପୁଣି ଛୋଟ ଛୋଟ କଥାରେ ଆମର ବିବାଦ ହେବ । ଫଳରେ କାର୍ଯ୍ୟ ଅଗ୍ରସର ହେବ ନାହିଁ । ମୋର ଉପସ୍ଥିତି ବରଂ ଏକ ପ୍ରତିବନ୍ଧକ ହେବ ।"

ଟେସଲା ପିଟସବର୍ଗ ତ୍ୟାଗ କରି ଯିବା ପୂର୍ବରୁ ପ୍ରତିଶ୍ରୁତି ଦେଇ ଗଲେ ଯେ ଯଦି କମ୍ପାନୀ କେବେ କୌଣସି ଅପ୍ରତ୍ୟାଶିତ ପରିସ୍ଥିତିର ସମ୍ମୁଖୀନ ହୋଇ ତାଙ୍କ ବିଶେଷ ଜ୍ଞାନର ସାହାଯ୍ୟ ଲୋଡ଼େ ତାହାହେଲେ ସେ ପତ୍ର ପାଇବାମାତ୍ରେ ପିଟସବର୍ଗକୁ ଆସିବେ । ଜର୍ଜ ଓ ମାର୍ଗାରେଟ ଉଭୟେ ତାଙ୍କୁ ଷ୍ଟେସନରେ ବିଦାୟ ଦେଇ ଆସିଲେ । ଗାଡ଼ି ଷ୍ଟେସନ ଛାଡ଼ିବା ବେଳକୁ ଟେସଲା ପୁଣି କହିଲେ, "ମନେ ରଖିଥିବେ, ମୋର ସାହାଯ୍ୟ ଦରକାର ପଡ଼ିଲେ ମୋତେ ଟେଲିଗ୍ରାମ କରିବେ । କେତୋଟି ଘଣ୍ଟା ମଧ୍ୟରେ ମୁଁ ପିଟସବର୍ଗରେ ପହଞ୍ଚିଯିବି ।"

ଏବେ ଜର୍ଜ ସମପ୍ରବାହର ସମର୍ଥକମାନଙ୍କ ଆକ୍ରମଣରେ ସମ୍ମୁଖୀନ ହେବାକୁ ପୁନରପି ମନୋଯୋଗ ଦେଲେ । ଏଡ଼ିସନଙ୍କ ଜେନେରାଲ ଇଲେକ୍‌ଟ୍ରିକ୍ କମ୍ପାନୀ ଇଲେକଟ୍ରିକ୍ ଚେୟାର ବ୍ୟାପାରଟିକୁ ପ୍ରଚାର-କାର୍ଯ୍ୟରେ ଲଗାଇ ବେଶ ସୁଫଳ ପାଇଥିଲେ । ଓୟେଷ୍ଟିଙ୍ଗହାଉସ କମ୍ପାନୀ ବିରୁଦ୍ଧରେ ଏପରି ସଂଗଠିତ ପ୍ରଚାର ଚାଲିଲା ଯେ ଯେଉଁ ଲୋକମତ ପରିବର୍ତ୍ତୀ ପ୍ରବାହର ସପକ୍ଷରେ ଯାଉଥିଲା ତାହା ପରିବର୍ତ୍ତିତ ହୋଇ ସମପ୍ରବାହର ସମର୍ଥନ କରିବାକୁ ଲାଗିଲା ।

ଜର୍ଜ ଅନେକ ଭାବ ଚିନ୍ତା ସ୍ଥିର କଲେ ଯେ ବର୍ତ୍ତମାନ ଏକମାତ୍ର ଉପାୟ ହେଉଛି, କୌଣସି ପ୍ରକାରେ ଜନସାଧାରଣଙ୍କ ସମକ୍ଷରେ ପରିବର୍ତ୍ତୀ ପ୍ରବାହର ଶ୍ରେଷ୍ଠତ୍ୱ ପ୍ରମାଣସହ ପ୍ରଦର୍ଶନ କରିବା । ତାଙ୍କର ମନେ ପଡ଼ିଲା ଯେ ଗୋଟାଏ ଟ୍ରେନରେ ଏୟାର ବ୍ରେକ ଖଞ୍ଜି ତାହାକୁ ବିଭିନ୍ନ ସହରକୁ ନେଇ ସେ ତାଙ୍କ ଏୟାରବ୍ରେକ ପ୍ରତି ଜନସାଧାରଣଙ୍କର ସମର୍ଥନ ସୃଷ୍ଟି କରି ପାରିଥିଲେ । କିନ୍ତୁ ବିଦ୍ୟୁତ୍ ପ୍ରବାହ କ୍ଷେତ୍ରରେ ସେପରି କିଛି କରିବା ସମ୍ଭବପର ନୁହେଁ । ତେଣୁ କିପରି ନାଟକୀୟ ଭାବରେ ପରିବର୍ତ୍ତୀ ପ୍ରବାହର ଶ୍ରେଷ୍ଠତ୍ୱ ଲୋକସାଧାରଣଙ୍କ ସମକ୍ଷରେ ପ୍ରଦର୍ଶନ କରାଯାଇ ପାରିବ, ତାହା ସେ ଚିନ୍ତା କରିବାକୁ ଲାଗିଲେ । ଗୋଟାଏ କିଛି ବିରାଟ ଆକାରରେ କରିବାକୁ ହେବ ଯାହାକି ସମଗ୍ର ସଭ୍ୟ ଜଗତର ଦୃଷ୍ଟି ଆକର୍ଷଣ କରିବ; ଜଗତର ଲୋକମାନଙ୍କର କଳ୍ପନାକୁ ଉଦ୍‌ବୁଦ୍ଧ କରିବ ।

ଦିନେ ସକାଳେ ଜର୍ଜ ଅଫିସରେ ପହଞ୍ଚି ଦେଖିଲେ ଯେ ତାଙ୍କ ଇଞ୍ଜିନିଅରିଂ ବିଭାଗର ଲୁଇସ ବି. ଷ୍ଟୀଲଓୟେଲ୍ ନାମକ ଜଣେ କର୍ମଚାରୀ ଅପେକ୍ଷା କରି ବସିଛନ୍ତି । ଷ୍ଟୀଲଓୟେଲ୍ ଲଣ୍ଡନର ଏକ ଯନ୍ତ୍ରବିଦ୍ୟା ସଂକ୍ରାନ୍ତ ସଭାରେ ଯୋଗ ଦେଇ ତାହା ପୂର୍ବଦିନ ଫେରି ଆସିଥିଲେ । ସେ କହିଲେ ଯେ ଇଂଲଣ୍ଡରେ ଥିବା ସମୟରେ କାଟାରାକ୍ଟ କନଷ୍ଟ୍ରକ୍‌ସନ କମ୍ପାନୀର (Cataract Construction Company) ଉଚ୍ଚତମ କର୍ତ୍ତା ଇ. ଡ଼ି. ଆଡାମସଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ଆଡାମସ ଜଣେ ଆମେରିକାନ ଓ ତାଙ୍କର କମ୍ପାନୀ ଆମେରିକା ଯୁକ୍ତରାଷ୍ଟ୍ରର ଏକ ବିଖ୍ୟାତ ପ୍ରତିଷ୍ଠାନ । ଏହି ଆଡାମସ ଗୋଟିଏ ପ୍ରତିଯୋଗିତା ଆହ୍ୱାନ କରୁଅଛନ୍ତି ।

ଜର୍ଜ—କି ପ୍ରକାର ପ୍ରତିଯୋଗିତା ?

ଷ୍ଟୀଲ୍‌ଓ୍ବେଲ୍ ଉତ୍ସାହିତ ହୋଇ କହିଲେ, "ନାଏଗ୍ରା ଜଳପ୍ରପାତକୁ ନିୟନ୍ତ୍ରଣ କରି ତହିଁରୁ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରିବାର ଶ୍ରେଷ୍ଠ ପରିକଳ୍ପନା ସ୍ଥିର କରିବା ଏହି ପ୍ରତିଯୋଗିତାର ଉଦ୍ଦେଶ୍ୟ । ଆଡାମସଙ୍କର ବିଶ୍ୱାସ ଯେ ଜଳଶକ୍ତିରୁ ପ୍ରଚୁର ବିଦ୍ୟୁତ୍ ଉତ୍ପନ୍ନ ହୋଇ ପାରିବ । ସେଥିରେ ନ୍ୟୁୟର୍କ ପ୍ରଦେଶର ଉତ୍ତରାଂଶକୁ ବିଦ୍ୟୁତ୍ ଆଲୋକ ଓ ଶକ୍ତି ଅକ୍ଳେଶରେ ସରବରାହ କରାଯାଇ ପାରିବ ।"

ଜର୍ଜ ଉତ୍ତର କଲେ, "ଏ ତ ତାହାହେଲେ ଗୋଟାଏ ବଡ଼ କମ ।"

ଷ୍ଟୀଲ୍‌ଓ୍ବେଲ୍ ଆତୁର ଆଗ୍ରହ ପ୍ରକାଶ କରି କହିଲେ, "ମୁଁ ଭାବିଲି ଯେ ଆପଣ ନିଶ୍ଚୟ ଏଥିରେ ଆଗ୍ରହୀ ହେବେ । ଓ୍ବେଷ୍ଟିଙ୍ଗହାଉସ ଇଲେକଟ୍ରିକ୍ କମ୍ପାନୀ ଗୋଟିଏ ପରିକଳ୍ପନା ଦେବ ବୋଲି ମୁଁ ଆଡାମସଙ୍କୁ ଜଣାଇବି କି ?"

ଜର୍ଜ ସାବଧାନ କରାଇ କହିଲେ, "ଟିକିଏ ଅପେକ୍ଷା କର, ଷ୍ଟୀଲ୍‌ଓ୍ବେଲ୍ । ଜବାବ ଦେବା ଆଗରୁ ଏହି ପ୍ରତିଯୋଗିତାର ବିଭିନ୍ନ ଦିଗ ବିଚାର କରି ଦେଖିବା ଦରକାର । ଆଚ୍ଛା, ଆମ ପରିକଳ୍ପନା ପାଇଁ ଏଇ ଆଡାମସ ଆମକୁ କେତେ ପାରିଶ୍ରମିକ ଦେବେ ।

"କିଛି ଦେବେ ନାହିଁ । ଏ ତ ଗୋଟାଏ ପ୍ରତିଯୋଗିତା । ଯେଉଁ କମ୍ପାନୀ ଏଥିରେ ଜିଣିବ ସେ ତିନି ହଜାର ଡଲାର ପୁରସ୍କାର ପାଇବ ।"

"ଯେଉଁ କମ୍ପାନୀର ପରିକଳ୍ପନା ଶ୍ରେଷ୍ଠ ବୋଲି ବିବେଚିତ ହେବ, ସେହି କମ୍ପାନୀ କାମଟି ପାଇବ, ଏପରି କିଛି ଗ୍ୟାରେଣ୍ଟି ଦିଆଯିବ କି ?"

ଷ୍ଟୀଲ୍‌ଓ୍ବେଲ୍ କିଛି ସମୟ ନୀରବ ରହି ଉତ୍କଣ୍ଠିତ ଭାବରେ କହିଲେ, "ବୋଧହୁଏ, ସେପରି କିଛି ଗ୍ୟାରେଣ୍ଟି ନାହିଁ । ପ୍ରତିଯୋଗିତା କଥା ଶୁଣିଲାକ୍ଷଣି ମୁଁ ଏତେ ଉତ୍ତେଜିତ ହୋଇ ପଡ଼ିଥିଲି ଯେ ଏ ସବୁ ଛୋଟ ଛୋଟ କଥା ବୁଝି ନ ଥିଲି ।"

"ଦେଖ, ଷ୍ଟୀଲଓ୍ୱେଲ, ଏହି ଘଟନାରୁ ତୁମର ଗୋଟାଏ ଶିକ୍ଷାଲାଭ ହେଲା ଯେ ଆମର ବ୍ୟବସାୟରେ ଛୋଟ ଛୋଟ ବିଷୟର ଗୁରୁତ୍ୱ ଅଛି । ଏ ଲୋକମାନେ ତିନି ହଜାର ଡଲାର ଖରଚ କରି ଲକ୍ଷେ ଡଲାର ମୂଲ୍ୟର ତଥ୍ୟ ସଂଗ୍ରହ କରିବାକୁ ଉଦ୍ୟତ । ମୋ ଦୃଷ୍ଟିରୁ ଏପରି କରିବା ଘୋର ଅନ୍ୟାୟ । ଏପରି ଏକ ପ୍ରସ୍ତାବରେ ସମ୍ମତ ହେବାକୁ ମୋର ବିବେକ କେବେ କହିବ ନାହିଁ । କିନ୍ତୁ ଯଦି ସେମାନେ ବ୍ୟବସାୟ-ଭିତ୍ତିରେ ଆମ ସାଙ୍ଗରେ କାରବାର କରିବାକୁ ଚାହାନ୍ତି, ତେବେ ଆମେ ଆମର ପରିକଳ୍ପନା ଦେବା ।"

ଷ୍ଟୀଲଓ୍ୱେଲ ଅପ୍ରତିଭ ହୋଇ ଅଫିସଗୃହ ତ୍ୟାଗ କଲେ । ଜର୍ଜ ପୁଣି ତାଙ୍କର ବରଗା ଆଡ଼କୁ ଚାହିଁ ଚିନ୍ତା କରିବାକୁ ଲାଗିଲେ । ନାଏଗ୍ରା ଜଳପ୍ରପାତକୁ ନିୟନ୍ତ୍ରଣ କରି ବିଦ୍ୟୁତ୍ ଉତ୍ପାଦନ । ନାଏଗ୍ରା ହେଉଛି ପୃଥିବୀର ସର୍ବାପେକ୍ଷା ପ୍ରସିଦ୍ଧ ଜଳପ୍ରପାତ । ଏହା ଏକ ବିରାଟ ପରିକଳ୍ପନା; ପରିବର୍ତ୍ତୀ ପ୍ରବାହର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାପାଇଁ ଏହାଠାରୁ ବଳି ଆଉ କି ସୁଯୋଗ ମିଳିପାରେ ? ବାସ୍ତବରେ ସେ ଏହିପରି ଗୋଟାଏ କିଛି ସୁଯୋଗ ଖୋଜୁଥିଲେ । କିନ୍ତୁ ଆଡାମସଙ୍କ ସର୍ତ୍ତ ଅନୁସାରେ ପ୍ରତି-ଯୋଗିତାରେ ଯୋଗ ଦେବା କଦାପି ଉଚିତ ହେବ ନାହିଁ । ସେ ସ୍ଥିର କଲେ ଯେ ଧୈର୍ଯ୍ୟ ଧରି ଅପେକ୍ଷା କରିବାକୁ ହେବ । କୌଶଳୀ କେଉଟ ମାଛ ଧରିବାପାଇଁ ତରତର ହୁଏ ନାହିଁ । ଧୈର୍ଯ୍ୟ ସହକାରେ ଅପେକ୍ଷା କଲେ ହୁଏ ତ ବଡ଼ ମାଛ ଧରାପଡ଼ିବ ।

ଦିନେ ସନ୍ଧ୍ୟାବେଳେ ଖାଇବାକୁ ଚାଲିବେଳେ ମାର୍ଗାରେଟ ସ୍ୱାମୀଙ୍କୁ ପଚାରିଲେ—ଆଜି ଉପର ବେଳାର ଖବର କାଗଜ ଦେଖିଛ ?

ଜର୍ଜ ଖାଇବାକୁ ଖଣ୍ଡିଏ ରୁଟି ଧରି କହିଲେ, "ନା ଦେଖିନାହିଁ । ମୁଁ ବଡ଼ କାର୍ଯ୍ୟବ୍ୟସ୍ତ ଥିଲି । କଅଣ, ଦେଖିବା ଭଳି କିଛି ଖବର ଅଛି ?"

ମାର୍ଗାରେଟ କହିଲେ, "ନା, ସେପରି କିଛି ବଡ଼ ଖବର ନୁହେଁ । ତେବେ ଗୋଟାଏ ଘୋଷଣା ପ୍ରକାଶିତ ହୋଇଅଛି ଯେ ଆସନ୍ତା ବିଶ୍ୱମେଳା (World Fair) ୧୮୯୩ ମସିହାରେ ଶିକାଗୋରେ ଅନୁଷ୍ଠିତ

ହେବ । କଲମ୍ବସଙ୍କ ଆମେରିକା ଆବିଷ୍କାରର ସ୍ବର୍ଣ୍ଣଶତବର୍ଷ ପୂର୍ତ୍ତି ଉପଲକ୍ଷରେ ଏହାର ନାମ ହେବ କଲମ୍ବିଆନ ପ୍ରଦର୍ଶନୀ । (Columbian Exposition) । ଏହା ଗୋଟିଏ ବିରାଟ ପ୍ରଦର୍ଶନୀ ହେବ ବୋଲି ମନେ ହୁଏ । ଭାବି ଦେଖ, ଆଉ ଦୁଇ ବର୍ଷ ଅଛି । ସେତେବେଳକୁ ଆମ ଜର୍ଜର ବୟସ ହୋଇଥିବ ନଅବର୍ଷ । ସେ ଏହି ପ୍ରଦର୍ଶନୀ ଦେଖି ବେଶ୍ ଉପଭୋଗ କରିପାରିବ । ମନେ ଅଛି ନା, ଫିଲାଡେଲଫିଆ ପ୍ରଦର୍ଶନୀ ଦେଖି ଆମର କେତେ ଆନନ୍ଦ ହୋଇଥିଲା ।"

ଜର୍ଜ ଟିକିଏ ଚିନ୍ତା କରି କହିଲେ, "ନିଶ୍ଚୟ, ମନେ ଅଛି । ସେ ହେଉଛି ପନ୍ଦର ବର୍ଷ ତଳର କଥା । ସମୟ କେତେ ବେଗରେ ଚାଲି ଯାଉଛି ।"

ଭୋଜନ ପରେ ଜର୍ଜ ଖବରକାଗଜଟିଏ ନେଇ ବିଶ୍ବମେଳାର ସମ୍ବାଦଟି ଭଲ କରି ପଢ଼ିଲେ । ମାର୍ଗାରେଟଙ୍କ କଥା ଠିକ୍ । ଏ ଗୋଟିଏ ବିରାଟ ପ୍ରଦର୍ଶନୀ ହେବାର ସମ୍ଭାବନା । ବାଳକ ଜର୍ଜ ଏହି ପ୍ରଦର୍ଶନୀ ଦେଖିଲେ ଜୀବନରେ ଗୋଟାଏ ନୂତନ ଅଭିଜ୍ଞତା ଅର୍ଜନ କରିବ ।

ସମ୍ବାଦଟିର ମଧ୍ୟ ଭାଗରେ ଗୋଟିଏ ପରିଚ୍ଛେଦ ଥିଲା । ଜର୍ଜ ସେହି ପରିଚ୍ଛେଦଟିକୁ ଆଉ ଥରେ ପଢ଼ିଲେ । ଏଥିରେ ଲେଖାଥିଲା ଯେ ଏହି ବିଶ୍ବମେଳାକୁ ବିଦ୍ୟୁତ୍ ଆଲୋକରେ ସୁସଜ୍ଜିତ କରିବାର ଏକ କଳ୍ପନା କରାଯାଉଅଛି । "ଏପରି ବିଦ୍ୟୁତ ଆଲୋକର ବ୍ୟବସ୍ଥା ପୂର୍ବେ କେବେ ହୋଇନାହିଁ । ବୈଦ୍ୟୁତିକ ଆଲୋକ ସଜ୍ଜାର ବିଶଦ ବିବରଣ ଏ ପର୍ଯ୍ୟନ୍ତ ଆମ୍ଭମାନଙ୍କର ଗୋଚରକୁ ଆସିନାହିଁ ।"

ଜର୍ଜ ଆରାମ ଚୌକିରେ ଆଉଜି ବସି କଳ୍ପନା କରିବାକୁ ଲାଗିଲେ । ତାଙ୍କ ମାନସ ଚକ୍ଷୁ ଆଗରେ ଗୋଟିଏ ଆଲୋକମୟୀ ନଗରୀ ଦେଖାଗଲା । ସେ ନଗରୀ ବିରାଟ ସୌଧମାଳା, ସୁନ୍ଦର ଉପବନ, ପ୍ରଦର୍ଶନୀ ଗୃହ ପ୍ରଭୃତିରେ ପରିପୂର୍ଣ୍ଣ । ସମସ୍ତ ଦୃଶ୍ୟ ଆମେରିକାର କ୍ରମୋନ୍ନତିର ପରିଚୟ ଦେଉଅଛି । ସମଗ୍ର ନଗରୀଟି ଲକ୍ଷ ଲକ୍ଷ ବୈଦ୍ୟୁତିକ ଆଲୋକ ମାଳାରେ ଆଲୋକିତ । ଏପରି ବିଶାଳ ଆଲୋକ

ସଜ୍ଜା ଏଥିପୂର୍ବରୁ କୌଣସିଠାରେ ଦେଖା ଯାଇନଥିଲା । ପରବର୍ତ୍ତୀ ତଡ଼ିତ୍ ପ୍ରବାହର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାର ଏହା ଏକ ଅପୂର୍ବ ସୁଯୋଗ । ଏହା ସମଗ୍ର ସଭ୍ୟ ଜଗତର ମନୋଯୋଗ ଆକର୍ଷଣ କରି ପାରିବ, କଳ୍ପନାକୁ ଉଦ୍‌ବୁଦ୍ଧ କରି ପାରିବ ।

ପରଦିନ ସକାଳେ ଜର୍ଜ ଡିରେକ୍ଟରମାନଙ୍କର ଏକ ସଭା ଡକାଇଲେ । ନାଟକୀୟ ଭାଷାଚ୍ଛଟାରେ ସେ ସେମାନଙ୍କୁ ଏହି କଳ୍ପିତ ବୈଦ୍ୟୁତିକ ନଗରୀର ଏକ ଚିତ୍ର ଦେଇ କହିଲେ ଯେ ଘନକୃଷ୍ଣ ଗ୍ରୀଷ୍ମ ରଜନୀରେ ତାରାମଣ୍ଡଳୀ ଚକ୍ ଚକ୍ କଲା ପରି ସହସ୍ର ସହସ୍ର ବିଦ୍ୟୁତ୍ ଆଲୋକରେ ଏହି ମାନବନିର୍ମିତ ନଗରୀଟି ଉଦ୍ଭାସିତ ହୋଇ ଉଠିବ ।

ଜର୍ଜଙ୍କର ବକ୍ତବ୍ୟ ଶେଷ ହେଲା ପରେ କେତେକ ସମୟ ପର୍ଯ୍ୟନ୍ତ ସମସ୍ତେ ନୀରବ ହୋଇ ରହିଲେ । ତଦନନ୍ତର ଜଣେ କହିଲେ, "ମିଷ୍ଟର ଓ୍ୱେଷ୍ଟିଂହାଉସ, ଆପଣଙ୍କର ବର୍ଣ୍ଣନା ଶୁଣି ଆମ୍ଭେମାନେ ମୁଗ୍ଧ ହୋଇ ଯାଇଅଛୁ । ଏ ଏକ ବିରାଟ କଳ୍ପନା । ଏପରି ବିରାଟ କଳ୍ପନାରେ ହାତ ଦେବାକୁ ଆମର ଭୟ ହେଉଅଛି ।"

ହର୍‌ମାନ କହିଲେ, "ଏହା ଏତେ ବିରାଟ ଯେ ଏଥିରେ ଆମର ସମସ୍ତ ଶକ୍ତି ବ୍ୟୟ କରିବାକୁ ହେବ । ତା'ପରେ ହୁଏତ ଆମେ କାର୍ଯ୍ୟଟି ଶେଷ ପର୍ଯ୍ୟନ୍ତ ନେଇ ତୁଲାଇ ପାରିବା ନାହିଁ । ଏହା ଫଳରେ ଆମ କମ୍ପାନୀ ଦେବାଳିଆ ହୋଇ ଯାଇପାରେ । ଏଭଳି ଗୋଟାଏ ଦାୟିତ୍ୱ ନେବାକୁ ଆପଣମାନେ ପ୍ରସ୍ତୁତ କି ?"

ଜର୍ଜ ଚିନ୍ତାକୁଳ ଭାବରେ କହିଲେ, "ହଁ, ଦାୟିତ୍ୱ ନିଶ୍ଚୟ ଖୁବ୍ ବେଶି । କିନ୍ତୁ ଏଭଳି ଗୋଟାଏ ଦାୟିତ୍ୱ ନେବାରେ ଗୌରବ ଅଛି । ମୁଁ ଏଥିରେ ଅଗ୍ରସର ହେବାକୁ ସମ୍ପୂର୍ଣ୍ଣ ଇଚ୍ଛୁକ । ଆପଣମାନେ ମୋ ସହିତ ଏକମତ କି ?"

ନୀରବରେ ଜଣକ ପରେ ଜଣେ ହାତ ଟେକି ଜର୍ଜଙ୍କ ପ୍ରସ୍ତାବକୁ ସମର୍ଥନ କଲେ । ହର୍‌ମାନ ଏକ, ଦୁଇ, ତିନି, ଚାରି······ଏହିପରି ଭୋଟ ଗଣୁଥିଲେ । ହର୍‌ମାନଙ୍କର ଗଣତି ଶେଷ ହେଲା ବେଳକୁ

ଦେଖାଗଲା ଯେ ପ୍ରସ୍ତାବଟି ସର୍ବସମ୍ମତିକ୍ରମେ ଗୃହୀତ ହୋଇଅଛି; ଜଣେ ସୁଦ୍ଧା ବିରୋଧ କରି ନାହାନ୍ତି ।

ଜର୍ଜ ଅବିଳମ୍ବେ କାର୍ଯ୍ୟ ଆରମ୍ଭ କରିଦେଲେ । ସ୍ଥାନଟିର ସରଜମିନ ତଦନ୍ତ କରିବା ଓ ବିଶ୍ୱମେଳାର କର୍ତ୍ତୃପକ୍ଷଙ୍କଠାରୁ ବିଦ୍ୟୁତ୍ତି-କରଣର ବିଶେଷ ବିବରଣ ସଂଗ୍ରହ କରିବା ଉଦ୍ଦେଶ୍ୟରେ ସେ ଦଳେ ଇଞ୍ଜିନିଅରଙ୍କୁ ଶିକାଗୋ ପଠାଇଲେ । ସେମାନେ ଦଶଦିନ ପରେ କେତେକ ଅପୂର୍ବ ସମ୍ବାଦ ନେଇ ଫେରି ଆସିଲେ । ସେମାନଙ୍କଠାରୁ ଜଣାଗଲା ଯେ ପ୍ରଦର୍ଶନୀ ଲାଗି ଦୁଇଲକ୍ଷ ପଚିଶ ହଜାର ବିଜୁଳିବତି ଦରକାର ହେବ । ଛଅ ସାତଟି କମ୍ପାନୀ ଏହା ଯୋଗାଇବା ପାଇଁ ମୂଲ୍ୟ ତାଲିକା ଦେଇଅଛନ୍ତି । ସେମାନଙ୍କ ମଧ୍ୟରେ ଏଡିସନ ଜେନେରାଲ ଇଲେକ୍‌ଟ୍ରିକ୍ କମ୍ପାନୀ ମଧ୍ୟ ଅଛି । ଏହାଛଡ଼ା ବିଦ୍ୟୁତ୍ତିକରଣ ପାଇଁ କେତେକ ବିଶିଷ୍ଟ ଧରଣର ଯନ୍ତ୍ର ଦରକାର ହେବ । ସେଗୁଡ଼ିକର ନକସା ଏପର୍ଯ୍ୟନ୍ତ ସ୍ଥିର ହୋଇନାହିଁ । ଇଞ୍ଜିନିଅର ଦଳର ମୁଖ୍ୟ ପଚାରିଲେ, "ଏତ ସବୁ ବାଧାବିଘ୍ନ ସତ୍ତ୍ୱେ ଆମେ ଏ ଦିଗରେ ଅଗ୍ରସର ହେବା କି ମିଷ୍ଟର ଓ୍ୱେଷ୍ଟିଂହାଉସ ?"

ଜର୍ଜ ଦୃଢ଼ ସ୍ୱରରେ କହିଲେ, "ନିଶ୍ଚୟ ! ତୁମେ କହୁଛ ଯେ କଫିନ ଓ ତାଙ୍କ ଜେନେରାଲ ଇଲେକଟ୍ରିକ୍ କମ୍ପାନୀ ଏହି କାମଟି ହସ୍ତଗତ କରିବାକୁ ଚେଷ୍ଟିତ । ତାହା ହେଲେ ଏହିଠାରେ ଆମର ଦୁଇ କମ୍ପାନୀ ମଧ୍ୟରେ ଗୋଟାଏ ଯୁଦ୍ଧ ହୋଇଯାଉ । ଜେନେରାଲ ଇଲେକ୍‌ଟ୍ରିକ୍ କମ୍ପାନୀ କେତେ ଦର ଦେଇଛନ୍ତି, କହିଲ ।"

ଇଞ୍ଜିନିଅର ଉତ୍ତର କଲେ, "ସେମାନେ ଅଢ଼େଇ ଲକ୍ଷ ବିଜୁଳି ବତିର ପ୍ରତ୍ୟେକଟି ପାଇଁ ଅନ୍ତତଃ ତେର ଡଲାର ନବେ ସେଣ୍ଟ ରେଟ ଦେଇଅଛନ୍ତି ।"

ଜର୍ଜ କହିଲେ, "ଆଚ୍ଛା, ତାହାହେଲେ ତୁମ୍ଭେମାନେ ଗୋଟାଏ ପ୍ରାଥମିକ ପରିକଳ୍ପନା ଓ ଆନୁମାନିକ ହିସାବ ଫର୍ଦ୍ଦ ତିଆରି କରିଦିଅ । ସପ୍ତାହକ ମଧ୍ୟରେ ଆମର ରେଟ ଦାଖଲ କରିବା । ଏଥିପାଇଁ ଦିନରାତି ପରିଶ୍ରମ କରିବାକୁ ପଡ଼ିଲେ ମଧ୍ୟ ତାହା କରିବାକୁ ହେବ ।

ଆନୁମାନିକ ହିସାବ ତିଆରି ହୋଇ ସାରିବା ପରେ ଜର୍ଜ ଡିରେକ୍ଟରମାନଙ୍କର ଗୋଟିଏ ସଭା ଡକାଇ ସମସ୍ତ ବିଷୟ ବୁଝାଇ ଦେଲେ । ସେ ଜଣାଇ ଦେଲେ ଯେ ପ୍ରତି ବିଜୁଳି ବତିପାଇଁ ଖର୍ଚ୍ଚ ହେବ ପାଞ୍ଚ ଡଲାର ପଚାଶ ସେଣ୍ଟ । କିନ୍ତୁ ଜେନେରାଲ ଇଲେକ୍ଟ୍ରିକ୍ କମ୍ପାନି ପ୍ରତି ବିଜୁଳିବତି ପାଇଁ ଦର ଦେଇଛି ତେର ଡଲାର ନବେ ସେଣ୍ଟ ।

ଡିରେକ୍ଟରମାନେ ଅତ୍ୟନ୍ତ ଆନନ୍ଦିତ ହେଲେ । ଜଣେ ଡିରେକ୍ଟର କହିଲେ, "ଏଥିରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ ପରିବର୍ତ୍ତୀ ପ୍ରବାହ ସମପ୍ରବାହଠାରୁ ନିଶ୍ଚୟ ଅଧିକ କାର୍ଯ୍ୟକ୍ଷମ । ଆମେ ବେଶ ମୋଟା ଲାଭ ରଖିଲେ ମଧ୍ୟ କମ୍ପାନୀଙ୍କ ଦରଠାରୁ କମ ଦର ଦେଇ କାମଟା ପାଇ ପାରିବା । ଆଚ୍ଛା ଜର୍ଜ, କେତେ ଲାଭ ରଖିବା ଠିକ୍ ହେବ ?"

"ଏ କ୍ଷେତ୍ରରେ କିଛି ଲାଭ ରଖିବା ଦରକାର ନାହିଁ । ଆମର ଯେତିକି ଖରଚ ହେବ ବୋଲି ହିସାବ ହୋଇଅଛି ଆମେ ସେତିକି ମୂଲ୍ୟ ନେବା ।"

କଥାଟା ବିଶ୍ୱାସ କରି ନ ପାରି ଜଣେ ଡିରେକ୍ଟର କହିଲେ, "କଅଣ ? ଆପଣ କହୁଛନ୍ତି ଯେ ଆମେ ବତି ପ୍ରତି ପାଞ୍ଚଡଲାର ପଚାଶ ସେଣ୍ଟ ଦରରେ ଏହି କାର୍ଯ୍ୟଭାର ଗ୍ରହଣ କରିବା ? ତାହାହେଲେ ତ କିଛି ମାତ୍ର ଲାଭ ହେବ ନାହିଁ । ଯଦି ପ୍ରକୃତ ଖରଚ ଆନୁମାନିକ ଖରଚଠାରୁ ବଢିଯାଏ କିମ୍ବା କୌଣସି ଦୁର୍ଘଟଣା ଘଟେ ତେବେ କଅଣ ହେବ ? ଆମକୁ ସର୍ବସ୍ୱାନ୍ତ ହୋଇ କମ୍ପାନି ବନ୍ଦ କରି ଦେବାକୁ ପଡ଼ିବ । ଏପରି କରିବା ଦୂରଦୃଷ୍ଟିର ପରିଚାୟକ ନୁହେଁ କି ବ୍ୟବସାୟ ଦୃଷ୍ଟିରୁ ଠିକ୍ ନୁହେଁ ।"

ଜର୍ଜ ଧୀର ଗମ୍ଭୀର ସ୍ୱରରେ କହିଲେ, "ମୁଁ ଯାହା କହୁଛି, ତାହା ବ୍ୟବସାୟ ଦୃଷ୍ଟିରୁ ଖୁବ୍ ଠିକ୍ । ଆମ ଇଲେକ୍ଟ୍ରିକ୍ କମ୍ପାନି ଆଜି ପର୍ଯ୍ୟନ୍ତ ଯେତେ ଅର୍ଥ ଉପାର୍ଜନ କରିଛି, ଏହାହିଁ ହେବ ସେ ସବୁଠାରୁ ଅଧିକ ଲାଭପ୍ରଦ । ଭଦ୍ର ମହୋଦୟଗଣ, ମୋ କଥା ଉତ୍ତମରୂପେ ବିଚାର କରି ଦେଖନ୍ତୁ । ବର୍ତ୍ତମାନ ଆମର ଏକମାତ୍ର ଲକ୍ଷ୍ୟ ହେଉଛି କପରି ଦୃଢ଼ରୂପେ ପ୍ରମାଣିତ କରି ଦେବା ଯେ ସାଧାରଣ ବ୍ୟବହାର ପାଇଁ ପରିବର୍ତ୍ତୀ ପ୍ରବାହ

ହେଉଛି ସମପ୍ରବାହ ଅପେକ୍ଷା ଉତ୍କୃଷ୍ଟତର । ଆମେ ଯେତେ କମ୍ ରେଟ୍ ଦେଇ ପାରିବା ତାର ସେତିକ ନାଟକୀୟ ପ୍ରଭାବ ଲୋକସାଧାରଣଙ୍କ ଉପରେ ପଡ଼ିବ । ଦେଖନ୍ତୁ, ଏହି ଉଦ୍ୟମରେ ଯଦି କିଛି ଟଙ୍କା କ୍ଷତି ହୁଏ, ତଥାପି ଆମେ ଜଗତ ସମକ୍ଷରେ ଦେଖାଇ ପାରିବା ଯେ ଆମର ବିଦ୍ୟୁତୀକରଣ ପଦ୍ଧତି ଉତ୍କୃଷ୍ଟତର ।"

ଏଥର ମଧ୍ୟ ବୋର୍ଡ଼ର ଡ଼ିରେକ୍ଟରମାନେ ଜର୍ଜଙ୍କ ଉପରେ ଆସ୍ଥା ରଖି ଏହି ପ୍ରସ୍ତାବରେ ସ୍ୱୀକୃତ ହେଲେ । ଦୁଇ ସପ୍ତାହ ପରେ ବିଶ୍ୱମେଳା କମିଟି ଜଣାଇଦେଲେ ଯେ ମେଳାର ବିଦ୍ୟୁତୀକରଣ ଭାର ଓ୍ୱେଷ୍ଟିଙ୍ଗ-ହାଉସ୍ କମ୍ପାନୀକୁ ଦିଆଗଲା ।

ଏହାପରେ କେତେକ ମାସ ଯାଏ ଭୀଷଣ କାର୍ଯ୍ୟତତ୍ପରତା ଦେଖାଗଲା । କମ୍ପାନୀର ସମସ୍ତ ଧନଜନ (Resourecs) ବିଶ୍ୱମେଳାର ବିଦ୍ୟୁତୀକରଣ ଉଦ୍ଦେଶ୍ୟରେ ନିୟୋଜିତ ହେଲା । ଓ୍ୱେଷ୍ଟିଙ୍ଗହାଉସ୍ କମ୍ପାନୀ ଏତେ କମ୍ ଦର ଦେଇଥିବାରୁ ପ୍ରଥମେ ଏଡ଼ିସନ କମ୍ପାନୀମାନେ ବିସ୍ମୟ ପ୍ରକାଶ କରିଥିଲେ । ଏବେ ସେହି ଓ୍ୱେଷ୍ଟିଙ୍ଗହାଉସ କମ୍ପାନୀ କାର୍ଯ୍ୟଟିର ଭାର ପାଇବାରୁ ସେମାନେ ଚେଷ୍ଟାକଲେ, କିପରି ଏହି କମ୍ପାନୀ ଶେଷ ପର୍ଯ୍ୟନ୍ତ କାର୍ଯ୍ୟ ତୁଲାଇ ନ ପାରନ୍ତି ।

କଫିନ ନାନା ପ୍ରତିବନ୍ଧକ ସୃଷ୍ଟି କରିବାକୁ ଲାଗିଲେ । ତାଙ୍କର ପ୍ରଥମ କାର୍ଯ୍ୟ ହେଲା, ଏକ ମୋକଦ୍ଦମା ଦାଏର କରିବା । ସେ ଅଭିଯୋଗ କଲେ ଯେ କାଚର ଗୋଲ ବିଜୁଳିବତୀ (all glass globe) ତିଆରି କରିବାର ଅଧିକାର ଏକମାତ୍ର ତାଙ୍କ କମ୍ପାନୀର ଅଛି । ଓ୍ୱେଷ୍ଟିଙ୍ଗହାଉସ କମ୍ପାନୀ ସେ ପ୍ରକାର ବତୀ ତିଆରି କରିବାକୁ ଯାଉଅଛନ୍ତି । ଅତଏବ କମ୍ପାନୀ ଉପରେ ନିଷେଧାଜ୍ଞା ଜାରି କରାଯାଉ । ଜର୍ଜ ଜାଣିଥିଲେ ଯେ ତାଙ୍କର ଶତ୍ରୁମାନେ କେବେହେଲେ ତାଙ୍କୁ ଏଡ଼ିସନଙ୍କ ବିଜୁଳିବତୀ ଉତ୍ପାଦନ କରିବାର ଅନୁମତି ପତ୍ର ଦେବେ ନାହିଁ । ଏପରି କି ଏହି ବତୀ ତାଙ୍କୁ ବିକି କରିବେ ନାହିଁ । ସେଥିପାଇଁ ଜର୍ଜ ଏଥିପୂର୍ବରୁ ଅନ୍ୟ ଏକ ପ୍ରକାର ବତୀର ପେଟେଣ୍ଟ ଅଧିକାର ଖରିଦ କରି ନେଇଥିଲେ । ଏହି ବତୀର ନାମ ସଏର-ମାନ-ବତୀ (Sawyer-man lamp) ।

କିନ୍ତୁ ଏହା ସମ୍ପର୍କରେ ମଧ୍ୟ ଜେନେରାଲ୍ ଇଲେକ୍‌ଟ୍ରିକ୍ କମ୍ପାନୀ ଏକ ମୋକଦ୍ଦମା ଆରମ୍ଭ କରିଦେଲେ । ଓକିଲ ପରାମର୍ଶରେ ଜେନେରାଲ ଇଲେକ୍‌ଟ୍ରିକ୍ କମ୍ପାନୀ ଦାବି କଲେ ଯେ ଏ ପ୍ରକାର ବଲ୍‌ବର ଉତ୍ପାଦନ ଦ୍ୱାରା ଏଡିସନଙ୍କ ପେଟେଣ୍ଟ ଅଧିକାର କ୍ଷୁଣ୍ଣ ହେଉଅଛି । ତେଣୁ ଓ୍ୱେଷ୍ଟିଂହାଉସ କମ୍ପାନୀକୁ ବାରଣ କରାଯାଉ ଯେ ସେମାନେ ଏ ପ୍ରକାର ବଲ୍‌ବ ତିଆରି କରିବେ ନାହିଁ । ଜର୍ଜ ଜାଣିଥିଲେ ଯେ ଏ ମୋକଦ୍ଦମାରେ ନିଶ୍ଚୟ ତାଙ୍କର ଜୟ ହେବ । କିନ୍ତୁ କଚେରୀରେ ମୋକଦ୍ଦମାର ବିଚାର ହୋଇ ରାୟ ବାହାରିବାକୁ ଅନେକ ଦିନ ଲାଗିଯିବ; ହୁଏତ କେତେ ବର୍ଷ ଲାଗିଯିବ । କିନ୍ତୁ ଅପେକ୍ଷା କରିବାକୁ ତାଙ୍କର ସମୟ ନ ଥିଲା ।

ଯେ କୌଣସି କାର୍ଯ୍ୟରେ ଉତ୍ସାହ ପ୍ରଦର୍ଶନ କରିବା ଜର୍ଜଙ୍କର ସ୍ୱାଭାବିକ ଗୁଣ । ସେ ନିଜର ଇଞ୍ଜିନିଅରମାନଙ୍କ ସହିତ କଠୋର ପରିଶ୍ରମ କରି ଏକ ନୂତନ ଧରଣର ବଲ୍‌ବ ବାହାର କଲେ । ବଲ୍‌ବଟି ଦୁଇଟି ଅଂଶରେ ନିର୍ମିତ ହେବାର କଥା ହେଲା । କେହି କୌଣସି ପ୍ରକାରେ କହି ପାରିବ ନାହିଁ ଯେ ଏହା ଅନ୍ୟ କୌଣସି ପେଟେଣ୍ଟର ଅଧିକାରକୁ କ୍ଷୁଣ୍ଣ କରୁଅଛି । ମାସକ ମଧ୍ୟରେ ଏହାର ନକ୍‌ସା ପ୍ରସ୍ତୁତ ହୋଇଗଲା । ଏହା ଦୁଇଖଣ୍ଡ କାଚରେ ତିଆରି ଓ ଏହା ଭିତରେ ଲୁହାର ଫିଲାମେଣ୍ଟ । ଏହି ବଲ୍‌ବର ତିଆରି ଖରଚ ଏଡିସନଙ୍କ ବଲ୍‌ବର ମୂଲ୍ୟଠାରୁ ଖୁବ୍ କମ ପଡ଼ିଲା । ଏହି ପ୍ରକାରର ଅଢ଼େଇ ଲକ୍ଷ ବଲ୍‌ବ ଓ ବଲ୍‌ବର ବିଭିନ୍ନ ଅଂଶ ତିଆରି କରିବାପାଇଁ ଜର୍ଜ ଗୋଟିଏ କମ୍ପାନୀ ଗଠନ କଲେ । ପରୀକ୍ଷାରେ ବଲ୍‌ବରୁ ବାୟୁ ନିଷ୍କାସନ ଉଦ୍ଦେଶ୍ୟରେ ସେ ଗୋଟିଏ ପମ୍ପ ଉଦ୍ଭାବନ କଲେ । ବଲ୍‌ବର ବିଭିନ୍ନ ଅଂଶ ଯୋଡ଼ିବା ପାଇଁ ମଧ୍ୟ ଗୋଟିଏ ଯନ୍ତ୍ର ପ୍ରସ୍ତୁତ ହେଲା ।

ବିଶ୍ୱମେଳାରେ ବିଦ୍ୟୁତ୍ ସରବରାହ ପାଇଁ ଓ୍ୱେଷ୍ଟିଂହାଉସ କମ୍ପାନୀର ଇଞ୍ଜିନିଅରମାନେ ବାରଟି ବିରାଟ ଉତ୍ପାଦକ ଯନ୍ତ୍ର ବସାଇଲେ । ପ୍ରତ୍ୟେକ ଯନ୍ତ୍ର ଏକହଜାର ଅଶ୍ୱଶକ୍ତିର ପରିବର୍ତ୍ତୀ ପ୍ରବାହ ଉତ୍ପାଦନ କରୁଥିଲା । ଆହୁରି ମଧ୍ୟ ଜର୍ଜଙ୍କ ଉଦ୍ୟମରେ ଓ୍ୱେଷ୍ଟିଂହାଉସ କମ୍ପାନୀ ଦ୍ୱାରା ଉତ୍ପାଦିତ ସମସ୍ତ ପ୍ରକାର ଯନ୍ତ୍ରପାତିର ଏକ ପ୍ରଦର୍ଶନୀ ଏହି ମେଳାରେ ଖୋଲିଗଲା । ଏଥିରେ ଟେସଲାଙ୍କ ଆବେଶ ମୋଟର ( Induction

motor) ସହିତ ଏକାଧିକଦଶା ମୋଟରର ସମସ୍ତ ଅଂଶ, ଟ୍ରାନ୍ସଫର୍ମର ଓ ଆଦର୍ଶ ଉତ୍ପାଦକ ଯନ୍ତ୍ର (Generator) ପ୍ରଭୃତି ଥିଲା । ପରବର୍ତ୍ତୀ ପ୍ରବାହ କିପରି ଦୂରକୁ ପ୍ରେରିତ ହୋଇ ଲୋକସାଧାରଣଙ୍କ ଦ୍ୱାରା ବ୍ୟବହୃତ ହୋଇ ପାରିବ ତାହା କ୍ଷୁଦ୍ର ଆକାରରେ ଦେଖାଇ ଦିଆ ଯାଇଥିଲା । ଉଚ୍ଚବିଭବସମ୍ପନ୍ନ ବୈଦ୍ୟୁତିକ ତାରର ବିପଦକୁ ଦୂର କରିବାରେ କିପରି ସାବଧାନତା ଅବଲମ୍ବନ କରାଯାଇଅଛି, ତାହା ନକ୍ସା ଓ ଛବି ସାହାଯ୍ୟରେ ବୁଝାଇ ଦିଆ ଯାଇଥିଲା । ୧୮୯୩ ମସିହା ମେ ମାସ ପହିଲା ଦିନ ସକାଳେ ଜର୍ଜ ଓଏଷ୍ଟିଂହାଉସ ମାର୍ଗାରେଟ୍ ଓ ସେମାନଙ୍କ ପୁଅ ଜର୍ଜ ଶିକାଗୋର କଲମ୍ବିଆନ ବିଶ୍ୱମେଳାର ଦ୍ୱାରଦେଶରେ ଦଣ୍ଡାୟମାନ ହୋଇ ରହିଲେ । ଆମେରିକା ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟ ଗ୍ରୋଭର କ୍ଲିଭଲାଣ୍ଡ ଆସି ଗୋଟିଏ ସ୍ୱିଚ ଟିପିଦେଇ ମେଳା ଉଦ୍‌ଘାଟନ କରିବେ । ଏହା ଦେଖିବାପାଇଁ ସେମାନେ ଉଦ୍‌ଗ୍ରୀବ ହୋଇ ଉଠୁଥିଲେ । ଶେଷରେ ଦ୍ୱାର ଦେଶରେ ଥିବା ଅଗଣିତ ଜନତା ଚିତ୍କାର କରି ଉଠିଲେ, "ବିଶ୍ୱମେଳା ଉଦ୍‌ଘାଟିତ ହୋଇଅଛି ।"

ଜନତା ସହିତ ଓଏଷ୍ଟିଂହାଉସ ପରିବାର ମେଳା ମଧ୍ୟରେ ପ୍ରବେଶ କଲେ । ବିରାଟ ଅଟ୍ଟାଳିକା ଶ୍ରେଣୀ, ସୁନ୍ଦର ଉପବନ ଓ ହ୍ରଦରେ ପରିପୂର୍ଣ୍ଣ ସହରଟି ଦେଖି ସେମାନେ ମୁଗଧ ହୋଇଗଲେ । ନବମ ବର୍ଷୀୟ ବାଳକ ଜର୍ଜ ପିତାଙ୍କର ହସ୍ତ ଧରି ବିସ୍ମୟରେ ଦେଖିଲା ଯେ ଗୋଟିଏ କୃତ୍ରିମ ଆଗ୍ନେୟଗିରିରୁ ଅଗ୍ନି, ଧୂମ ଓ ଲାଭା ନିର୍ଗତ ହେଉଅଛି । ଗୋଟାଏ ବିରାଟ ଘୂର୍ଣ୍ଣାୟମାନ ଚକ୍ର ଉପରେ ବସି କେତେକ ଲୋକ ବୁଲୁଥିଲେ । ତାହା ସଙ୍ଗେ ବିବିଧ ବାଦ୍ୟ ବାଜୁଥିଲା । ତାହା ଆଡ଼କୁ ଆଙ୍ଗୁଳି ଦେଖାଇ ଜର୍ଜ କହିଲା, "ବାପା, ସେଇଟା କଅଣ ?"

ଜର୍ଜ ଓଏଷ୍ଟିଂହାଉସ ଆଦରରେ ପୁଅର ମୁଣ୍ଡ ଆଉଁସି ଦେଇ କହିଲେ;"ଏ ଗୋଟିଏ ନୂତନ ଆବିଷ୍କାର । ଶ୍ରେଷ୍ଠ ପ୍ରଦର୍ଶିଅମାନଙ୍କ ଚଢ଼ିବା ପାଇଁ ହୋଇଛି । ବର୍ତ୍ତମାନେ ମଧ୍ୟ ଇଚ୍ଛା କଲେ ଚଢ଼ିପାରନ୍ତି । ଏହାର ନାମ ଫେରିସ୍ ହୁଇଲ୍ । ଆସ, ସମସ୍ତେ ଚଢ଼ି ଦେଖିବା ।" ଏହା କହି ସେ ମାର୍ଗାରେଟଙ୍କ ଆଡ଼କୁ ଟିକିଏ ବକ୍ର ଦୃଷ୍ଟିରେ ଚାହିଁଲେ ।

ସେ ଦିନଟି ଯାକ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ସେମାନେ ଏହି ଚନ୍ଦ ଓ ନାଗର ଦୋଳାରେ ଚଢ଼ି ବୁଲିଲେ । ଏଗୁଡ଼ିକ ମଧ୍ୟରୁ ଅଧିକାଂଶ କେବଳ ଏହି ପ୍ରଦର୍ଶନୀ ଉଦ୍ଦେଶ୍ୟରେ ନିର୍ମିତ ହୋଇଥିଲା । କେଉଁଠାରେ ବିଦୂଷକମାନେ ନାନା ପ୍ରକାର ଭଣ୍ଡାମି ଦେଖାଉଥିଲେ ତ କେଉଁଠାରେ ମିଠାଇବାଲା ଓ ଫେରିବାଲାମାନେ ବିଚିତ୍ର ସ୍ୱରରେ ଡାକ ଦେଉଥିଲେ । ଲୋକ ଗହଳି ମଧ୍ୟରେ ସେମାନେ ଏହିସବୁ ଦେଖି ଓ ଶୁଣି ମୁଗ୍ଧ ହୋଇଗଲେ । ବାଳକ ଜର୍ଜ ଏତେ ଟଫି ଓ ମିଠାଇ ଖାଇଲା ଯେ କାଳେ ତାହାର ପେଟ ଖରାପ ହେବ ବୋଲି ମାର୍ଗାରେଟ ଆଉ ଖାଇବାକୁ ମନା କରିଦେଲେ ।

ସେମାନେ ଯନ୍ତ୍ରଶାଳା ଦେଖିବାକୁ ଗଲେ । ଏଠାରେ ସମସ୍ତ ଆଧୁନିକ ଯନ୍ତ୍ରପାତି ସ୍ଥାନ ପାଇଥିଲା । ଏହାକୁ ଦେଖି ମନେ ହେଲା, ଯେପରିକି ବିଗତ ପଚାଶ ବର୍ଷର ଶିଳ୍ପୋନ୍ନତିର ଇତିହାସ ଏଠାରେ ଜୀବନ୍ତ ବିଗ୍ରହ ଧାରଣ କରି ରହିଅଛି । ୧୮୭୬ ମସିହାର ବିଶ୍ୱମେଳା ତୁଳନାରେ ଏହା ଅଧିକତର ସୁନ୍ଦର ଓ ଚିତ୍ତାକର୍ଷକ ହୋଇଥିଲା । ଏଠାରେ ଥିଲା ମାକ୍ କରମିକଙ୍କର କୃଷି-ଯନ୍ତ୍ରପାତି । ଏହି ଯନ୍ତ୍ରଗୁଡ଼ିକ କେବଳ ଶସ୍ୟ ଉତ୍ପାଦନ ଛଡ଼ା ଆଉ ସମସ୍ତ ପ୍ରକାର କୃଷିକାର୍ଯ୍ୟ କରି ପାରୁଥିଲା । ଗୋଟିଏ ବିରାଟ ରୋଟାରି ମୁଦ୍ରାଯନ୍ତ୍ର ଏଠାରେ ରହିଥିଲା । ଏହାଦ୍ୱାରା ଘଣ୍ଟାକ ମଧ୍ୟରେ ସହସ୍ର ସହସ୍ର ସଂଖ୍ୟାରେ ସମ୍ବାଦ ପତ୍ର ଛପାଯାଇ ପାରୁଥିଲା । ଏ ସବୁ ଛଡ଼ା ସାବୁନ ଠାରୁ ଆରମ୍ଭ କରି ବନ୍ଧୁକ ପର୍ଯ୍ୟନ୍ତ ତିଆରି କରିବା ପାଇଁ ବିଭିନ୍ନ ଯନ୍ତ୍ର ଏଠାରେ ଦେଖିବାକୁ ମିଳିଲା । ଜର୍ଜ ଇଷ୍ଟମାନଙ୍କ ଦ୍ୱାରା ନିର୍ମିତ 'କୋଡାକ' ନାମକ ଗୋଟିଏ ବାକ୍ସ ଭଳି କାମେରା ଏହି ପ୍ରଦର୍ଶନୀରେ ଥିଲା । ଏହାର ଗୋଟିଏ ବୋତାମ ଟିପି ଦେଲାକ୍ଷଣି ଛବି ବାହାରି ଆସୁଥିଲା । ସେତେବେଳକୁ ଟାଇପ ରାଇଟର ନାମକ ଏକ ନବାବିଷ୍କୃତ ଯନ୍ତ୍ର ବ୍ୟବସାୟ ପ୍ରତିଷ୍ଠାନ ମାନଙ୍କରେ ଜନପ୍ରିୟ ହୋଇ ଆସୁଥିଲା । ତାହା ଏଠାରେ ପ୍ରଦର୍ଶିତ ହୋଇଥିଲା । ଏ ସବୁ ବ୍ୟତୀତ କେତେଗୁଡ଼ିଏ କଦାକାର ଗାଡ଼ି ଥିଲା । ଶୁଣାଯାଉଥିଲା ଯେ ଏଗୁଡ଼ିକରେ ଏକ ନୂତନ ପଦ୍ଧତିର ଇଞ୍ଜିନ ଲାଗିବ ଓ ପେଟ୍ରୋଲିୟମରୁ ପ୍ରସ୍ତୁତ ଗ୍ୟାସୋଲିନ ନାମକ ଏକ ପ୍ରକାର ତୈଳ ଦ୍ୱାରା ଏଗୁଡ଼ିକ ଚାଲିବ ।

ରାତିରେ ପ୍ରଦର୍ଶନୀର ସୌନ୍ଦର୍ଯ୍ୟ ଆହୁରି ଚମତ୍କାର । ସହସ୍ର ସହସ୍ର ବୈଦ୍ୟୁତିକ ଆଲୋକରେ ସମଗ୍ର ପ୍ରଦର୍ଶନୀମଣ୍ଡପ ଦେଦୀପ୍ୟମାନ । ଏହି ଅପୂର୍ବ ଦୃଶ୍ୟ ଦେଖି ଦର୍ଶକମାନେ ଗଭୀର ବିସ୍ମୟ ପ୍ରକାଶ କରୁଥିଲେ । ବାଳକ ଜର୍ଜ ଏହି ବିଚିତ୍ର ଦୃଶ୍ୟ ଦର୍ଶନରେ ଏପରି ମୁଗ୍ଧ ହୋଇ ଯାଇଥିଲା ଯେ ସେ ଚିତ୍କାର କରି ଉଠିଲା, "ମୋର ବାପା ଏସବୁ ବିଜୁଳିବତୀ ତିଆରି କରିଅଛନ୍ତି ।" ସେ ଏହିପରି ବାରମ୍ବାର କହିବାରୁ ଓ୍ୱେଷ୍ଟିଂହାଉସ ଟିକିଏ ଅପ୍ରତିଭ ହୋଇ ତାହାକୁ ଏଥିରୁ ନିବୃତ୍ତ ହେବାକୁ ଆଦେଶ ଦେଲେ ।

ରାତି ଅଧିକ ହେବାରୁ ସେମାନେ ମେଳାରୁ ଫେରିଗଲା ବେଳେ ଜର୍ଜ ଓ୍ୱେଷ୍ଟିଂହାଉସ ପୁତ୍ରର ମୁଖକୁ ଚାହିଁଲେ । ତାହାର ମୁଖର ପ୍ରସନ୍ନତା ଦେଖି ସେ ସଙ୍ଗେ ସଙ୍ଗେ ଗତ କେତେ ମାସର ପ୍ରଗାଢ଼ ପରିଶ୍ରମ ଓ କ୍ଳାନ୍ତି ଭୁଲିଗଲେ । ବିଶ୍ୱମେଳାର ସାଫଲ୍ୟ ନିମନ୍ତେ ତାଙ୍କର ଅବଦାନ ଯଥେଷ୍ଟ ଥିଲା । ଏଥି ନିମନ୍ତେ ତାଙ୍କୁ ପ୍ରଚୁର ଶାରୀରିକ ତଥା ମାନସିକ ପରିଶ୍ରମ ସ୍ୱୀକାର କରିବାକୁ ପଡ଼ିଥିଲା । କିନ୍ତୁ ପୁତ୍ରର ପ୍ରସନ୍ନ ମୁଖ ଦେଖି ସେ ମନେ କଲେ ଯେ ତାଙ୍କର ସମସ୍ତ ପରିଶ୍ରମ ସାର୍ଥକ ହୋଇଅଛି ।

ଜର୍ଜ ଓ୍ୱେଷ୍ଟିଂହାଉସ ପୁତ୍ର ଓ ପତ୍ନୀଙ୍କ ସହିତ ଦୁଇଟି ସପ୍ତାହ ଏହି ମେଳା ପରିଦର୍ଶନରେ କଟାଇଦେଲେ । ମାର୍ଗାରେଟଙ୍କର ବିଶେଷ ଚିନ୍ତା ଥିଲା ଯେ ଜର୍ଜର ଅନେକ ସ୍କୁଲପାଠ ବାକି ପଡ଼ିଯିବ । ତେଣୁ ସେ ପ୍ରଥମ ସପ୍ତାହ ପରେ ଶିକାଗୋ ତ୍ୟାଗ କରି ଚାଲିଯିବାକୁ ବିଚାର କରି-ଥିଲେ । କିନ୍ତୁ ଜର୍ଜ ଓ୍ୱେଷ୍ଟିଂହାଉସ ପୁଅର ପଢ଼ା ବିଷୟରେ ଏତେ ଚିନ୍ତିତ ନ ଥିଲେ । ସେ ପୁଅପ୍ରତି ସହାନୁଭୂତି ପ୍ରଦର୍ଶନ କରି ଆଉ ଗୋଟିଏ ସପ୍ତାହ ଶିକାଗୋରେ ରହି ଯାଇଥିଲେ ।

ଶିକାଗୋ ଆସିବା ପୂର୍ବରୁ ଜର୍ଜ ସ୍କୁଲରୁ ପାଞ୍ଚଦିନର ଅନୁପସ୍ଥିତି ପାଇଁ ଛୁଟି ନେଇ ଆସିଥିଲା । ସ୍କୁଲର ପାଠ୍ୟ ପୂରଣ କରିବା ଉଦ୍ଦେଶ୍ୟରେ ତାର ବହିପତ୍ର ସଙ୍ଗରେ ଆଣିଥିଲା । ଓ୍ୱେଷ୍ଟିଂହାଉସ କହୁଥିଲେ ଯେ ଜର୍ଜ ପକ୍ଷରେ ସମସ୍ତ ମେଳାଟି ନ ଦେଖି ଫେରିଯିବା ଅନୁଚିତ ହେବ । ଏକ ସପ୍ତାହ ମଧ୍ୟରେ ଏଡ଼େ ବିରାଟ ମେଳା ଦେଖିପାରିବା ସମ୍ଭବ ନୁହେଁ ।

ଆହୁରି ମଧ୍ୟ ଏ ବିଶ୍ୱମେଳାଟି ଜର୍ଜ ପକ୍ଷରେ ଶିକ୍ଷାର ଏକ ଅଙ୍ଗ । ହୁଏତ ସମଗ୍ର ଜୀବନ କାଳ ମଧ୍ୟରେ ଏପରି ଏକ ମେଳା ଦେଖିବାର ସୁଯୋଗ ସେ ପାଇ ନ ପାରେ ।

ଜର୍ଜ ଓ୍ୱେଷ୍ଟିଙ୍ଗହାଉସ ଜର୍ଜଙ୍କୁ ଆଉ କିଛି ଦିନ ଛୁଟି ଦେବାପାଇଁ ଅନୁରୋଧ କରି ସ୍କୁଲ କର୍ତ୍ତୃପକ୍ଷଙ୍କୁ ପତ୍ର ଲେଖିବାକୁ ମାଗାରେଟ ସ୍ୱୀକୃତ ହେଲେ । ଜର୍ଜର ପାଠପଢ଼ା ପ୍ରତି ତାର ବାପା ଦୃଷ୍ଟି ଦେଉଥିଲେ । ପ୍ରତିଦିନ ସନ୍ଧ୍ୟାବେଳେ ହୋଟେଲକୁ ଫେରି ଆସିବା ପରେ ସେ ଘଣ୍ଟାଏ ଦୁଇଘଣ୍ଟା ପର୍ଯ୍ୟନ୍ତ ଜର୍ଜଙ୍କୁ ତାହାର ପାଠ ପଢ଼ାଉଥିଲେ ।

ପିଟସ୍‌ବର୍ଗକୁ ଫେରି ଆସି ଓ୍ୱେଷ୍ଟିଙ୍ଗହାଉସ ଦେଖିଲେ ଯେ ତାଙ୍କ ଟେବୁଲ ଉପରେ ଚିଠି, ରିପୋର୍ଟ, ସ୍ମାରକପତ୍ର ଓ ଅନ୍ୟାନ୍ୟ କାଗଜପତ୍ର ଜମା ହୋଇ ରହିଛି । ବାକି ପଡ଼ିଥିବା କାର୍ଯ୍ୟସବୁ ଶେଷ ନ ହେଉଣୁ ଯେ ଗୋଟାଏ କିଛି ନୂତନ ବ୍ୟାପାରରେ ଲଗିବାକୁ ଅସ୍ଥିର ହୋଇପଡ଼ିଲେ ।

ଅଳ୍ପ ଦିନ ମଧ୍ୟରେ ଏକ ସୁଯୋଗ ଉପସ୍ଥିତ ହେଲା । ଦିନେ ସକାଳେ ସେ ଖଣ୍ଡିଏ ଚିଠି ପାଇଲେ । ଏହାକୁ ଲେଖିଥିଲେ କାଟାରାକ୍ଟ-କନଷ୍ଟ୍ରକ୍‌ସନ କମ୍ପାନୀର ପ୍ରେସିଡେଣ୍ଟ ଇ. ଡ଼ି. ଆଡ଼ାମସ୍ । ଏଥିରେ ସେ ଲେଖିଥିଲେ ଯେ ତାଙ୍କର ଜଣେ ଇଞ୍ଜିନିଅର ଶିକାଗୋର ବିଶ୍ୱମେଳା ଦେଖିବାକୁ ଯାଇଥିଲେ । ସେ ସେଠାରେ ଓ୍ୱେଷ୍ଟିଙ୍ଗହାଉସ କମ୍ପାନୀର ପରିବର୍ତ୍ତୀ ପ୍ରବାହକୁ ଉତ୍ତମରୂପେ ଲକ୍ଷ୍ୟ କରି ଆସିଅଛନ୍ତି । ସେ ଲେଖିଥିଲେ, "ଦୁଃଖର ବିଷୟ ଏହି ଯେ ଆମର ଇଞ୍ଜିନିଅର ଆପଣଙ୍କ ସାକ୍ଷାତ ପାଇ ପାରିଲା ନାହିଁ । ସେ ଶିକାଗୋରେ ପହଞ୍ଚିଲା ବେଳକୁ ଆପଣ ଶିକାଗୋ ତ୍ୟାଗ କରି ସାରିଥିଲେ । ଯାହା ହେଉ, ଆମେ ଆପଣଙ୍କ ପରିବର୍ତ୍ତୀ ପ୍ରବାହ ପଦ୍ଧତିକୁ ଉତ୍ତମରୂପେ ବିଚାର କରି ଦେଖିଛୁ । ଆମର ବିଶ୍ୱାସ ଯେ, ନାଏଗ୍ରା ଜଳପ୍ରପାତରୁ ବୈଦ୍ୟୁତିକଶକ୍ତି ଉତ୍ପାଦନର ଉନ୍ନୟନ କରିବାପାଇଁ ଆପଣଙ୍କ ପଦ୍ଧତିହିଁ ସର୍ବାପେକ୍ଷା ଉପଯୁକ୍ତ ଓ ଫଳପ୍ରଦ ହେବ । ଆପଣ ଓ ଆପଣଙ୍କ ଇଞ୍ଜିନିଅରମାନେ ଯଦି ବିଦ୍ୟୁତ୍ ଉତ୍ପାଦନ ପାଇଁ ଗୋଟିଏ ନକ୍‌ସା ଦାଖଲ କରନ୍ତି, ତେବେ ଆମ୍ଭେମାନେ

ଆନନ୍ଦରେ ଆପଣଙ୍କ ମନ୍ତବ୍ୟ ଏକ ଚୁକ୍ତି ସମ୍ପାଦନ ବିଷୟ ବିଚାର କରିବୁ ।

ଜର୍ଜ ବିଚାରିଲେ, "ଏବେ ଦିନେ ଆମ ଅପେକ୍ଷା କରିବାର ଫଳ ମିଳିଲା । ଅପେକ୍ଷା କରିଥିବାରୁ ସିନା ।ଏବେ ବଡ଼ ମାଛ ବନିଶି ଭିଣ୍ଡା ଗିଳିଲା ।"

ଷ୍ଟିଲୱେଷ୍ଟେଲଙ୍କ ନେତୃତ୍ୱରେ କେତେକ ଇଞ୍ଜିନିଅରଙ୍କୁ ନକ୍ସା ଓ ହିସାବର ବିବରଣ ପ୍ରସ୍ତୁତ କରିବାର ଭାର ଦିଆଗଲା । କେତେକ ସପ୍ତାହ ମଧ୍ୟରେ ଆଡ଼ାମସ୍‌ଙ୍କ ନିକଟକୁ ସେ ସମସ୍ତ ପ୍ରେରିତ ହେଲା । ୧୮୯୩ ମସିହା ଅକ୍ଟୋବର ମାସ ୨୨ ତାରିଖ ଦିନ ଜର୍ଜ ଓ୍ୱେଷ୍ଟିଙ୍ଗ-ହାଉସ କାଟାରାକ୍ଟ କନଷ୍ଟ୍ରକ୍‌ସନ କମ୍ପାନୀରୁ ପତ୍ର ପାଇଲେ ଯେ ତାଙ୍କର ପରିକଳ୍ପନା ଗୃହୀତ ହୋଇଅଛି । ଏଥି ପୂର୍ବରୁ ବୈଦ୍ୟୁତିକ ଶକ୍ତି ଉତ୍ପାଦନ ନିମନ୍ତେ ଏପରି ବିରାଟ ପରିକଳ୍ପନା କାର୍ଯ୍ୟକାରୀ କରିବାର ଉଦ୍ୟମ କେବେ ହୋଇ ନ ଥିଲା ।

---

# ପନ୍ଦର

## ନବୀନ ଯୁଗ

ନାଏଗ୍ରା ଜଳ ପ୍ରପାତରୁ ବିଦ୍ୟୁତ୍‌ଉତ୍ପାଦନ ଯୋଜନାର ଭାର ପାଇଥିବାରୁ ଜର୍ଜ ଆନନ୍ଦିତ ହୋଇଥିଲେହେଁ ତାଙ୍କ ମନରେ ଗୋଟିଏ ସନ୍ଦେହ ରହିଥିଲା । ଆଡାମସ୍ ଯେଉଁ ପ୍ରତିଯୋଗିତା କରାଇ ଥିଲେ, ତାହାର ବିଜେତାଙ୍କୁ ଏହି କାର୍ଯ୍ୟଭାର ନ ଦେଇ ତାଙ୍କୁ ପତ୍ର ଲେଖିଲେ କାହିଁକି ? ତାଙ୍କର ଅନ୍ୟ ଏକ ସନ୍ଦେହ ମଧ୍ୟ ଥିଲା । ଏଭଳି ଏକ ପରିକଳ୍ପନାରେ ଜେନେରାଲ ଇଲେକ୍‌ଟ୍ରିକ୍ କମ୍ପାନି ଆଦୌ ଆଗ୍ରହ ପ୍ରକାଶ କଲେ ନାହିଁ କାହିଁକି ?

ଆଡାମସ୍‌ଙ୍କ ସଙ୍ଗେ ସାକ୍ଷାତ ହେବାପରେ ଜର୍ଜ ସମସ୍ତ ପ୍ରକୃତ ଘଟନା ଜାଣିପାରିଲେ । କାଟାରାକ୍ଟ କନ୍‌ଷ୍ଟ୍ରକ୍‌ସନ କମ୍ପାନୀର ଏହି ମୁଖ୍ୟକର୍ତ୍ତା ଜର୍ଜଙ୍କୁ ବିଶ୍ୱାସରେ କହିଲେ ଯେ ଏହି ଉନ୍ନୟନ ପାଇଁ ଅନେକଗୁଡ଼ିଏ ଯୋଜନା ହସ୍ତଗତ ହୋଇଥିଲେହେଁ କୌଣସିଟି ବ୍ୟାବହାରିକ ଦୃଷ୍ଟିରୁ ଉପଯୋଗୀ ବୋଲି ବିବେଚିତ ହୋଇ ନ ଥିଲା । କେତେକ ପରିକଳ୍ପନା ଏକଦାରେ ଅଦ୍ଭୁତ । ତେଣୁ ଏହି ପ୍ରତିଯୋଗିତା ସମ୍ପୂର୍ଣ୍ଣ ବିଫଳ ହୋଇଥିଲା ।

ଜର୍ଜ ବିସ୍ମୟ ସହକାରେ ପଚାରିଲେ, "ଏଡ଼ିସନଙ୍କ ପକ୍ଷରୁ ଏହି କାର୍ଯ୍ୟ ପାଇଁ ଚେଷ୍ଟା ନ ହେବାର ଦେଖି ମୁଁ ବିସ୍ମିତ । ଅତୀତ ଅଭିଜ୍ଞତାରୁ ମୋର ଧାରଣା ଥିଲା ଯେ ସେମାନେ ଏହି କାର୍ଯ୍ୟ ପାଇଁ ଯଥାସମ୍ଭବ ଉଦ୍ୟମ କରିବେ ।"

ଆଡାମସ୍ କହିଲେ, "ହଁ, ସେମାନେ ଯେ ଉଦ୍ୟମ କରି ନ ଥିଲେ ତାହା ନୁହେଁ । ପ୍ରକୃତରେ ସେମାନେ ଷାଠିଏ ପୃଷ୍ଠାବ୍ୟାପୀ ଏକ ବିଶାଳ ବିବରଣ ଓ ତାହାସଙ୍ଗେ ବାରଟି ନକ୍ସା ଓ ଅନେକ ଚିତ୍ର ଦାଖଲ କରିଥିଲେ ।"

ଜର୍ଜ ପଚାରିଲେ, "ସେଥିରେ କି ଦୋଷ ଥିଲା ?"

ଆଡାମସ୍ ଉତ୍ତର କଲେ, "ସେମାନେ ସମପ୍ରବାହୀ ବିଦ୍ୟୁତ୍‌ର ପରିକଳ୍ପନା ଦେଇଥିଲେ । ପ୍ରଥମେ ମୁଁ ତାହାକୁ ଦେଖି ମୁଗ୍ଧ ହୋଇ ଯାଇଥିଲି । କିନ୍ତୁ ପରେ ବିଶ୍ୱମେଳାରେ ବ୍ୟବହୃତ ହୋଇଥିବା ଆପଣଙ୍କର ଏକାଧିକଦଶା ପଦ୍ଧତିର ରିପୋର୍ଟ ପାଇଲି । ତହୁଁ ମୁଁ ବୁଝିପାରିଲି ଯେ ଓ୍ୱେଷ୍ଟିଙ୍ଗହାଉସ କମ୍ପାନୀର ପ୍ରବର୍ତ୍ତିତ ପରିବର୍ତ୍ତୀ ପ୍ରବାହ ହିଁ ଭବିଷ୍ୟତରେ ସ୍ଥାୟୀ ଆଧନର ଅଧିକାରୀ ହେବ ।"

ଏହି ସମ୍ବାଦରେ ଜର୍ଜ ବାସ୍ତବରେ ଚମତ୍କୃତ ହୋଇଗଲେ । ଏହା ହେଲା ଏଡ଼ସନ କମ୍ପାନୀର ବିଶିଷ୍ଟ ବିରାଟ ପରାଜୟ । ଏହି ହେତୁରୁ ଏଡ଼ସନ କମ୍ପାନୀ ଏତେ ଦିନ ମାରିବ ରହିଥିଲେ । ଜର୍ଜ ଏବେ ବିଜୟୀର ଗୌରବ ଅନୁଭବ କରିବାକୁ ଲାଗିଲେ ।

ନାଏଗ୍ରାରେ ତିନୋଟି ପ୍ରକାଣ୍ଡ ବିଦ୍ୟୁତ୍ ଉତ୍ପାଦକ ଯନ୍ତ୍ର ବସିବାର କଥା । ପ୍ରତ୍ୟେକ ଯନ୍ତ୍ର ପାଞ୍ଚହଜାର ଅଶ୍ୱ-ଶକ୍ତିର ବିଦ୍ୟୁତ୍ ଉତ୍ପାଦନ କରିବ । ପ୍ରଥମ ଯନ୍ତ୍ରଟି ଦୁଇ ବର୍ଷ ମଧ୍ୟରେ ବସାଇବାକୁ ହେବ ।

ଜର୍ଜ ଇଞ୍ଜିନିଅରମାନଙ୍କୁ କହିଲେ, "ଆମ୍ଭେମାନେ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ କାର୍ଯ୍ୟ ଶେଷ କରିବାକୁ ଚେଷ୍ଟା କରିବା । ଯେତେ ଲୋକ ଲାଗନ୍ତୁ ପଛକେ ଶୀଘ୍ର କାର୍ଯ୍ୟ ଶେଷ ହେଉ ।"

ପ୍ରଥମ ଯନ୍ତ୍ରଟି ଦେଢ଼ବର୍ଷ ମଧ୍ୟରେ ବସିଲା । ନାଏଗ୍ରା ଜଳପ୍ରପାତର ଅଧୋଭାଗରେ ଅବସ୍ଥାପିତ ଏହି ନୂତନ ଡାଇନାମୋର କାର୍ଯ୍ୟ ଦେଖିବା ପାଇଁ ୧୮୯୫ ମସିହାର ପ୍ରଥମ ଭାଗରେ ଏକ ବିରାଟ ସଭା ଅନୁଷ୍ଠିତ ହେଲା । ଏଥିରେ ଜର୍ଜ, ହର୍‌ମାନ୍, କାଟାରାକ୍ଟ କମ୍ପାନୀର କର୍ତ୍ତୃପକ୍ଷ, ସମଗ୍ର

ପୃଥିବୀର ଶ୍ରେଷ୍ଠ ଯନ୍ତ୍ରବିଦ୍‌ଗଣ ଏବଂ କାନାଡ଼ା ଓ ଯୁକ୍ତରାଷ୍ଟ୍ରର ଉଚ୍ଚ ରାଜ-
କର୍ମଚାରୀ ବୃନ୍ଦ ଯୋଗ ଦେଇଥିଲେ ।

ବିରାଟ ଜଳପ୍ରପାତର ଜଳରାଶିକୁ ଚାହିଁ ଜର୍ଜଙ୍କର ହୃଦୟ ବିସ୍ମୟ ଓ ଆନନ୍ଦରେ ଅଭିଭୂତ ହୋଇଗଲା । ଭାବାବେଶରେ ତାଙ୍କର ଚକ୍ଷୁରୁ ଲୋତକ ଧାରା ବହିପଡ଼ିଲା । ପଚାଶ ସହସ୍ର ବର୍ଷ ଧରି ଏକଶହ ଷାଠିଏ ଫୁଟ ଉଚ୍ଚରୁ ପ୍ରପାତର ସ୍ୱଚ୍ଛ ଜଳଧାରା ଗମ୍ଭୀର ଗର୍ଜନ ସହ ନିମ୍ନଦେଶକୁ ଲମ୍ଫ ପ୍ରଦାନ କରି ଆସୁଅଛି । ଏହି ଜଳ ନିମ୍ନଦେଶର ପ୍ରସ୍ତରମାଳା ଉପରେ ପତିତ ହୋଇ ଊର୍ଦ୍ଧ୍ୱଭାଗରେ ଶୀକରର ଏକ ଆସ୍ତରଣ ସୃଷ୍ଟି କରି ରଖିଛି । ଏଠାରେ ପ୍ରକୃତି ଦେବୀ ରୁଦ୍ରସୁନ୍ଦର ରୂପ ଧାରଣ କରି ନିଜର ଆଦିମ ଶକ୍ତି ପ୍ରକାଶ କରି ଆସିଛନ୍ତି । କେତେ ଶତାବ୍ଦୀ ଧରି କ୍ଷୁଦ୍ର ମାନବ ଏହି ଜଳପ୍ରପାତ ନିକଟରେ ଦଣ୍ଡାୟମାନ ରହି ଏହାକୁ ନିୟନ୍ତ୍ରଣ ପୂର୍ବକ ମାନବର ସେବାରେ ଲଗାଇବାର ସ୍ୱପ୍ନ ଦେଖି ନ ଥିବ ? ଜର୍ଜ ଆଜି ସେହି ସ୍ଥଳରେ ଦଣ୍ଡାୟମାନ । ସେତେବେଳେ ତାଙ୍କର ମନେ ହେଲା, ଯେପରି କି ସେ ଇତିହାସର ଦ୍ୱାରଦେଶରେ ଦଣ୍ଡାୟମାନ ହୋଇ ରହିଛନ୍ତି ।

ଆଡାମସ୍ ଘୋଷଣା କଲେ, "ବର୍ତ୍ତମାନ ଡାଇନାମୋ ଚାଳିତ ହେବ ।" ଏହି ଘୋଷଣାରେ ଜର୍ଜଙ୍କର ସ୍ୱପ୍ନ ଭଙ୍ଗ ହେଲା । ସେ ନୀରବ ଭାବରେ ଷ୍ଟିଲ୍‌ଓ୍ୱେଲଙ୍କୁ ସଙ୍କେତ ଦେଲେ । ଷ୍ଟିଲଓ୍ୱେଲ ଏହି ପରିକଳ୍ପନାର ପ୍ରଧାନ କର୍ତ୍ତା ଥିଲେ । ସେ ଯାଇ ପ୍ରଧାନ ସୁଇଚଟିକୁ ଟାଣିଦେଲେ । ଶକ୍ତିଶାଳୀ ଯନ୍ତ୍ରଗୁଡ଼ିକ ଯେପରି ପ୍ରାଣବନ୍ତ ହୋଇ ଗୁରୁ ଗମ୍ଭୀର ଗର୍ଜନ କରିବାକୁ ଲାଗିଲେ । ପଶ୍ଚାଦ୍‌ଭାଗରେ ଐକ୍ୟତାନ ସଦୃଶ ଶୁଣାଯାଉଥିଲା ପ୍ରପାତର ଘୋର ଘର୍ଘର ଧ୍ୱନି ।

ସମବେତ ଭଦ୍ରମଣ୍ଡଳୀଙ୍କୁ ସମ୍ବୋଧନ କରି ଜର୍ଜ କହିଲେ, "ମୁଁ ଆଜି ଦୀର୍ଘ ବକ୍ତୃତା ଦେବାକୁ ଯାଉନାହିଁ । ଏଠାରେ ଦୀର୍ଘ ବକ୍ତୃତାର ଅବକାଶ ନାହିଁ କିମ୍ବା ଏପରି ବକ୍ତୃତା ଦେବାର ଧୃଷ୍ଟତା ମୋର ନାହିଁ । ଆଜିର ଏହି ଘଟଣା ସମସ୍ତ କଥା ପ୍ରକାଶ କରି ଦେଉଅଛି । ଆମ୍ଭେମାନେ ଆଜି ଯାହା ପ୍ରତ୍ୟକ୍ଷ କରୁଅଛୁଁ, ତାହା ଦିନେ ଜଗତର ପ୍ରତ୍ୟେକ ଦେଶର, ପ୍ରତ୍ୟେକ ବ୍ୟକ୍ତିର ଜୀବନକୁ ପ୍ରଭାବିତ କରିବ ।"

ପ୍ରଥମେ ତିନୋଟି ଉତ୍ପାଦକ ଯନ୍ତ୍ରପାଇଁ ଅର୍ଡ଼ର ଥିଲା । ପରେ ତାହାର ସଂଖ୍ୟା ବୃଦ୍ଧି କରାଯାଇ ଦଶଟି ଯନ୍ତ୍ରପାଇଁ ଅର୍ଡ଼ର ଦିଆଗଲା । ଜଳପ୍ରପାତର ଉଭୟ ପାର୍ଶ୍ୱରେ ଶକ୍ତି ଉତ୍ପାଦନ କେନ୍ଦ୍ର ନିର୍ମିତ ହେଲା । ନ୍ୟୁୟର୍କ ରାଜ୍ୟର ପଶ୍ଚିମାଞ୍ଚଳ ଓ ମଧ୍ୟାଞ୍ଚଳ ଏବଂ କାନାଡ଼ାର ପୂର୍ବାଞ୍ଚଳରେ ସର୍ବତ୍ର ତାର ବିସ୍ତୃତ ହୋଇ ବିଦ୍ୟୁତ୍ ଯୋଗାଇ ଦିଆଗଲା । ତାହାଦ୍ୱାରା ସହସ୍ର ସହସ୍ର ଗୃହରେ ଓ କାରଖାନାରେ ଆଲୋକ ଓ ଉତ୍ତାପ ନିମନ୍ତେ ବୈଦ୍ୟୁତିକଶକ୍ତିର ସରବରାହ ହୋଇ ପାରିଲା ।

ଗୋଟିଏ ଘଟଣାରେ ଜର୍ଜଙ୍କର ଏହି ବିଜୟ ବିଷାଦାଚ୍ଛନ୍ନ ହୋଇ ଯାଇଥିଲା । ଦୀର୍ଘକାଳ ରୋଗଭୋଗପରେ ତାହାଙ୍କ ମାତାଙ୍କର ମୃତ୍ୟୁ ହେଲା । ବିଗତ କେତେମାସ ଧରି ସେ ରୋଗଯନ୍ତ୍ରଣା ଭୋଗୁଥିଲେ । ଜର୍ଜ ଓ ମାର୍ଗାରେଟ ମନେ କଲେ ଯେ ମୃତ୍ୟୁ ଆସି ତାଙ୍କୁ ଏହି ଯନ୍ତ୍ରଣାରୁ ମୁକ୍ତି ଦେଇଅଛି । କିନ୍ତୁ ଏଗାର ବର୍ଷର ବାଳକ ଜର୍ଜ ଆଦରର ବୁଢ଼ୀମାଆଙ୍କୁ ଚିରଦିନ ପାଇଁ ହରାଇ ଜୀବନରେ ଏକ ଦାରୁଣ ଆଘାତ ଅନୁଭବ କରିଥିଲା ।

ମୃତ୍ୟୁ ଯେ କଅଣ, ସେ ବିଷୟରେ ଉତ୍ତମରୂପେ ବୁଝିବା ପାଇଁ ଜର୍ଜର ବୟସ ହୋଇ ନ ଥିଲା । ପୁଅର ମନ ପରିବର୍ତ୍ତନ କରିବା ଉଦ୍ଦେଶ୍ୟରେ ଜର୍ଜ ଓ ମାର୍ଗାରେଟ ତାହାକୁ ସଙ୍ଗରେ ନେଇ କିଛିଦିନ ପାଇଁ ନ୍ୟୁୟର୍କ ଚାଲିଗଲେ । ସେଠାରେ ପହଞ୍ଚିବାର ଅବ୍ୟବହିତ ପରେ ଜର୍ଜ ନିଜର ପୁରାତନ ପ୍ରତିଦ୍ୱନ୍ଦୀ କଫିନଙ୍କଠାରୁ ଏକ ନିମନ୍ତ୍ରଣ ପାଇ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲେ । ଜେନେରାଲ ଇଲେକ୍ଟ୍ରିକ୍ କମ୍ପାନୀର ସର୍ବୋଚ୍ଚ କର୍ତ୍ତା କଫିନ ଏକାନ୍ତ ବନ୍ଧୁଭାବ ପ୍ରକାଶ କରି ତାଙ୍କୁ ଭୋଜନ ନିମିତ୍ତ ନିମନ୍ତ୍ରଣ କରିଥିଲେ ।

କଫିନଙ୍କ ସହିତ ଶେଷ ସାକ୍ଷାତ ସମୟରେ ଯେଉଁ ଗୁରୁତର ବିଷୟର ଆଲୋଚନା ହୋଇଥିଲା, ତାହା ସ୍ମରଣ କରି ଜର୍ଜଙ୍କ ମନରେ ଘୋର ସନ୍ଦେହ ଜନ୍ମିଥିଲା । କିନ୍ତୁ କୌତୂହଳର ବଶବର୍ତ୍ତୀ ହୋଇ ସେ ଏହି ସାକ୍ଷାତକାର ପାଇଁ ସ୍ୱୀକୃତି ଜଣାଇଲେ ।

ଅନ୍ୟ କୌଣସି ବିଷୟର ଅବତାରଣା ନ କରି କଫିନ ଏକବାରେ ପ୍ରକୃତ ଉଦ୍ଦେଶ୍ୟ ପ୍ରକାଶ କରି କହିଲେ, "ମୁଁ ଆପଣଙ୍କ ନିକଟରେ ସମସ୍ତ କଥା ଖୋଲାଖୋଲି ଭାବରେ କହିବାକୁ ଯାଉଅଛି । ଏବେ ମିଷ୍ଟର ଏଡ଼ସନ, ମୁଁ ଓ ଆମର ସହକର୍ମୀମାନେ ବୁଝିପାରିଅଛୁଁ ଯେ ଆପଣଙ୍କ ପରିବର୍ତ୍ତୀ ପ୍ରବାହର ବିରୁଦ୍ଧରେ ପ୍ରତିଯୋଗିତା କରିବାରେ ଆମର ପରାଜୟ ହୋଇଅଛି । ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ, ମୁଁ ହୃଦୟ ଖୋଲି କହିବାକୁ ଚାହେଁ ଯେ ମୁଁ ଆପଣଙ୍କ ନିକଟରେ ଗୋଟିଏ ନିବେଦନ ନେଇ ଉପସ୍ଥିତ । ଆପଣଙ୍କର ପରିବର୍ତ୍ତୀ ପ୍ରବାହର ଯେଉଁ ପେଟେଣ୍ଟ ଗୁଡ଼ିକ ଅଛି, ସେଗୁଡ଼ିକ ବ୍ୟବହାର କରିବା ପାଇଁ ଆପଣ ଆମ୍ଭମାନଙ୍କୁ ଅନୁମତି ଦିଅନ୍ତୁ । ଏହା ବଦଳରେ ଆପଣ ଆମ୍ଭମାନଙ୍କର ସମସ୍ତ ପେଟେଣ୍ଟ ବ୍ୟବହାର କରିବାର ଅନୁମତି ପାଇବେ । ପରସ୍ପର ମଧ୍ୟରେ ବିନିମୟ ଓ ରୟାଲ୍‌ଟି ଭିତ୍ତିରେ ଏହି ବ୍ୟବସ୍ଥା ହେବ ।"

ଜର୍ଜ ଉତ୍ତର କଲେ, "ଏଥିରେ କୌଣସି ଗୋପନୀୟ ବ୍ୟବସ୍ଥା'ର କଥା ନାହିଁ ତ ? ସେପରି କିଛି ଥିଲେ, ମୁଁ ଏଥିରେ ପଶିବାକୁ ପ୍ରସ୍ତୁତ ନୁହେଁ ।"

କଫିନ ଲଜ୍ଜିତ ହୋଇ ସାମାନ୍ୟ ହସି କହିଲେ, "ନା, ସେପରି କିଛି ନାହିଁ । ମୁଁ ସ୍ୱୀକାର କରୁଛି ଯେ ଆପଣଙ୍କ ସହିତ ପ୍ରତିଯୋଗିତାରେ ଆମେ ହାରି ଯାଇଛୁ । ମୁଁ ଯେଉଁ ପ୍ରସ୍ତାବ ଦେଉଛି, ତାହା ଖୋଲାଖୋଲି ଭାବରେ ହେବ, କିଛି ଗୋପନୀୟ ରହିବ ନାହିଁ । ଗୋଟିଏ ପେଟେଣ୍ଟ ନିୟନ୍ତ୍ରଣ କମିଟି ରହିବ । ସେଥିରେ ଆପଣଙ୍କର ଓ ଆମର ଉଭୟ କମ୍ପାନୀର ପ୍ରତିନିଧିମାନେ ରହିବେ । ଆମ ଚୁକ୍ତିର ସର୍ତ୍ତଗୁଡ଼ିକ ସର୍ବସାଧାରଣରେ ଘୋଷଣା କରାଯିବ । କମିଟିର ସଭ୍ୟମାନଙ୍କର ନାମ ମଧ୍ୟ ସର୍ବସାଧାରଣଙ୍କୁ ଜଣାଇ ଦିଆଯିବ । ଉଭୟ ପକ୍ଷର ଓକିଲମାନେ ଏ ଭଳି ସର୍ତ୍ତ ସ୍ଥିର କରିବେ ଯେପରିକି ବିଶ୍ୱାସଭଙ୍ଗ ଆଇନର କୌଣସି ଖିଲାପ ନ ହୁଏ । କଅଣ, ଆପଣ ଏଥିରେ ସମ୍ମତ ?

ଜର୍ଜ କହିଲେ, "ହଁ, ଯେତେ ଦିନ ପର୍ଯ୍ୟନ୍ତ ଉଭୟ କମ୍ପାନୀର ତଥା ଜନସାଧାରଣଙ୍କର ସ୍ୱାର୍ଥ ସଂରକ୍ଷିତ ହୋଇପାରିବ, ସେତେଦିନ ପର୍ଯ୍ୟନ୍ତ ଏଥିରେ ମୋର କୌଣସି ଆପତ୍ତି ନାହିଁ ।"

କଫିନ ଉତ୍ତର କଲେ, "ମୁଁ ! ପ୍ରକୃତରେ ଦେଖୁଛି ଯେ ଏ ଦିଗରେ ଆମ୍ଭେମାନେ ପରସ୍ପରର ସାହାଯ୍ୟ ଚେଷ୍ଟା କରିବୁ ।"

ଅନେକ ଦିନ ଧରି ଉଭୟ କମ୍ପାନୀ ମଧ୍ୟରେ ଆଲୋଚନା ଚାଲିଲା । ପରିଶେଷରେ ୧୮୯୬ ମସିହାରେ ଓ୍ୱେଷ୍ଟିଂହାଉସ ଇଲେକ୍‌ଟ୍ରିକ୍ କମ୍ପାନୀର ଓ ଜେନେରାଲ ଇଲେକ୍‌ଟ୍ରିକ୍ କମ୍ପାନୀର ଉଚ୍ଚ କର୍ମଚାରୀମାନେ ଗୋଟିଏ ଚୁକ୍ତି ପତ୍ରରେ ସ୍ୱାକ୍ଷର କଲେ । ଏହି ଚୁକ୍ତି ପତ୍ର ଅନୁସାରେ ଗୋଟିଏ ପେଟେଣ୍ଟ ନିୟନ୍ତ୍ରଣ ବୋର୍ଡ ପ୍ରତିଷ୍ଠିତ ହେଲା । ପରେ ଜର୍ଜ ହସି ହସି ବନ୍ଧୁମାନଙ୍କୁ କହିଥିଲେ, "ଏତେ ଦିନ ପରେ ସନ୍ଧିପତ୍ର ସ୍ୱାକ୍ଷରିତ ହୋଇଅଛି । ଏବେ ଦୁଇ ପ୍ରବାହ ମଧ୍ୟରେ ସଂଘର୍ଷର ଅବସାନ ହେଲା ।"

ପୃଥିବୀରେ ବିଂଶ ଶତାବ୍ଦୀ ପଦାର୍ପଣ କଲା । ଏଥି ମଧ୍ୟରେ ଓ୍ୱେଷ୍ଟିଂହାଉସ ଇଲେକ୍‌ଟ୍ରିକ୍ କମ୍ପାନୀ ବହୁଦୂର ବିସ୍ତୃତ ହୋଇଥିଲା । ସିଗନାଲ ଯନ୍ତ୍ର, ଟ୍ରାନ୍‌ସଫର୍ମର, ଟେସଲାଙ୍କ ଆବେଶ ମୋଟର ଏବଂ ପରିବର୍ତ୍ତୀ ପ୍ରବାହ ସଂକ୍ରାନ୍ତ ଅନ୍ୟାନ୍ୟ ପେଟେଣ୍ଟର ଅଧିକାରୀ ହୋଇ-ଥିବାରୁ ଜର୍ଜ ଏକ ନୂତନ କ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ଏହା ହେଉଛି ରେଲପଥର ବିଦ୍ୟୁତୀକରଣ । ନ୍ୟୁୟର୍କ, ଲଣ୍ଡନ ପ୍ରଭୃତି ବଡ଼ ବଡ଼ ସହରରେ ଭୂଗର୍ଭସ୍ଥ ରେଳପଥ, ବୈଦ୍ୟୁତିକ ଟ୍ରେନ, ଆକାଶ ରେଳପଥ (elevators) ପ୍ରଭୃତି ପ୍ରତିଷ୍ଠା କରିବା ନିମନ୍ତେ ସେ ନିଜ କାରଖାନାରେ ଯନ୍ତ୍ରପାତି ପ୍ରସ୍ତୁତ କରିବାରେ ଲାଗିଲେ ।

ଗୃହ, କାରଖାନା, ପରିବହନ ପ୍ରଭୃତି କ୍ଷେତ୍ରରେ ବୈଦ୍ୟୁତିକଶକ୍ତିର ଚାହିଦା ବୃଦ୍ଧି ପାଇବାରୁ ନୂତନ ନୂତନ ସମସ୍ୟା ଦେଖାଦେଲା । ଜର୍ଜ ଦେଖିଲେ ଯେ ଅତି ଅଳ୍ପ କାଳ ମଧ୍ୟରେ ପ୍ରଚଳିତ ବିଦ୍ୟୁତ୍-ଉତ୍ପାଦନ-ପଦ୍ଧତି ଅଚଳ ହୋଇ ପଡ଼ିବ । ବିଜ୍ଞାନ ଓ ଶିଳ୍ପର ଅଗ୍ରଗତି ସଙ୍ଗେ ଅଧିକତର ପ୍ରଗତି ଅବଶ୍ୟମ୍ଭାବୀ—ଏହି ନୀତିରେ ଜର୍ଜଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । ସେ କହୁଥିଲେ—"ଆମେ ଯେତିକି ନୂତନ ପଦାର୍ଥ ଆବିଷ୍କାର କରୁଁ, ଆହୁରି ଆବିଷ୍କାର କରିବାର ପ୍ରୟୋଜନୀୟତା ସେତିକି ବୃଦ୍ଧି ପାଏ । ଏହାହିଁ ହେଉଛି ଓ୍ୱେଷ୍ଟିଂହାଉସ ପ୍ରତିଷ୍ଠାନର ମୂଳମନ୍ତ୍ର ।"

ବୈଦ୍ୟୁତିକ ଶକ୍ତିର ଚାହିଦା ଯେତିକି ବୃଦ୍ଧି ପାଇଲା, ଉତ୍ପାଦକ ଯନ୍ତ୍ରର ଆକାର ସେତିକି ବୃଦ୍ଧି ପାଇବାକୁ ଲାଗିଲା । ଡାଇନାମୋ ଚଳାଇବାପାଇଁ ବ୍ୟବହୃତ ଷ୍ଟିମ ଇଞ୍ଜିନଗୁଡ଼ିକର ଆକାର ମଧ୍ୟ ତାହା ସଙ୍ଗେ ବୃଦ୍ଧି ପାଇଲା । କିନ୍ତୁ ଚାଳନା ପ୍ରଣାଳୀରେ କିଛି ପରିବର୍ତ୍ତନ ଘଟି ନ ଥିଲା । ଷୋହଳ ବର୍ଷ ପୂର୍ବେ ପିତାଙ୍କ କାରଖାନାରେ ଯେଉଁ ପ୍ରାଚୀନ ଧରଣର ଇଞ୍ଜିନ (Reciprocating engine ) ବ୍ୟବହୃତ ହେଉଥିବାର ଜର୍ଜ ଦେଖିଥିଲେ, ତାହାହିଁ ଏବେ ମଧ୍ୟ ପ୍ରଚଳିତ ଥିଲା । ୧୮୯୦ ମସିହାର ଶେଷ ଆଡ଼କୁ ଇଞ୍ଜିନଗୁଡ଼ିକ ଏତେ ବୃହଦାକାର ହୋଇ ଆସିଥିଲା ଯେ ସେଗୁଡ଼ିକର ଉପଯୋଗିତା ଶେଷ ସୀମାରେ ପହଞ୍ଚିଲାଣି ବୋଲି ଜର୍ଜଙ୍କର ଦୃଢ଼ ଧାରଣା ହେଲା ।

ସେ ସ୍ଥିର କଲେ ଯେ ଇଞ୍ଜିନଗୁଡ଼ିକ ଆକାରରେ କ୍ଷୁଦ୍ର ଅଥଚ ଅଧିକ ଦ୍ରୁତ ଓ କାର୍ଯ୍ୟକ୍ଷମ ହେବା ଆବଶ୍ୟକ । ଯେପରିକି ଶକ୍ତିକେନ୍ଦ୍ର-ଗୁଡ଼ିକ ଦୁଇଗୁଣ, ତିନିଗୁଣ, ଏପରିକି ଚତୁର୍ଗୁଣ ବୈଦ୍ୟୁତିକ ଶକ୍ତି ଉତ୍ପାଦନ କରିପାରିବେ । ଜର୍ଜ ବୋର୍ଡ଼ର ଡ଼ିରେକ୍ଟରମାନଙ୍କୁ କହିଲେ, "ଆମେ ବିଂଶ ଶତାବ୍ଦୀର ମୋଟର, ବିଜୁଳିବତୀ ଓ ଅନ୍ୟାନ୍ୟ ଉପକରଣରେ ବିଦ୍ୟୁତ୍ ଶକ୍ତିର ବ୍ୟବହାର କରୁଅଛୁ । ଅଥଚ ଏହି ସରଞ୍ଜାମଗୁଡ଼ିକୁ ଶକ୍ତି ସରବରାହ କରିବା ବିଷୟରେ ଆମେ ଅନ୍ତତଃ ପଚାଶ ବର୍ଷ ପଛରେ ପଡ଼ି ରହିଅଛୁ ।

ହଠାତ୍ ତାଙ୍କର ଧାରଣା ହେଲା ଯେ ପିଲାଦିନେ ରୋଟାରି ଇଞ୍ଜିନ ଉଦ୍ଭାବନ କରି ସେ ଯେଉଁ ସମସ୍ୟାର ସମାଧାନ କରିଥିଲେ, ଏ ସମସ୍ୟାଟିର ପ୍ରକୃତି ଅନେକ ପରିମାଣରେ ସେହି ଧରଣର । ଶାଫ୍ଟକୁ ଘୂରାଇବାପାଇଁ ରୋଟାରି ଇଞ୍ଜିନ ଏକ ସହଜ ଉପାୟ । ଅଥଚ ସେତେ-ବେଳେ ବାଷ୍ପଚାଳିତ ଇଞ୍ଜିନର ଅଗ୍ରପଶ୍ଚାତ୍ ଗତିକୁ ଘୂର୍ଣ୍ଣାୟମାନ ଗତିରେ ପରିବର୍ତ୍ତିତ କରି ଶାଫ୍ଟକୁ ଚଳାଇବାକୁ ହେଉଥିଲା । ତେବେ ଡାଇନା-ମୋକୁ ଚଳାଇବାପାଇଁ ସେହି ପଦ୍ଧତି ଅବଲମ୍ବନ କରି ନ ଯାଇପାରିବ କାହିଁକି ?

ପିଲାଦିନର ସେହି ରୋଟାରି କୌଶଳର ସ୍ୱପ୍ନକୁ ସେ ଏ ପର୍ଯ୍ୟନ୍ତ କାର୍ଯ୍ୟକ୍ଷେତ୍ରରେ ପ୍ରୟୋଗ କରି ନ ଥିଲେ । ଏଥି ମଧ୍ୟରେ ସେ ନାନା

କାର୍ଯ୍ୟରେ ବ୍ୟାପୃତ ରହି ଏଥିପ୍ରତି ଦୃଷ୍ଟି ଦେଇ ପାରିନଥିଲେ । କିନ୍ତୁ ସେ ଯେଉଁ ଟର୍ବାଇନ ମୌଳିକ ନୀତି ଉପରେ ନିର୍ଭର କରି ତାଙ୍କର ପ୍ରଥମ ପେଟେଣ୍ଟର ଅଧିକାରୀ ହୋଇଥିଲେ,ତାହା ନଭୁଲ । ପଞ୍ଚବିଂଶ ବର୍ଷ ପୂର୍ବ ମଷ୍ଟରା ଜାହାଜରେ ସେ ନିଜେ ଓ ଜାହାଜ ମିସ୍ତ୍ରୀ ହାନସନ ତାଙ୍କ ଗ୍ରେଟ ଇଞ୍ଜିନ ସାହାଯ୍ୟରେ ଯେଉଁ ଜାହାଜର ମଡେଲ ଚଳାଇ ପରୀକ୍ଷା କରିଥିଲେ. ସେହି ମଡେଲଟି ଏବେ ସୁଦ୍ଧା ନିଭୃତନିଳୟରେ ତଳ ବଖରାରେ କେଉଁଠାରେ ଥିଲା ।

ଦିନେ ରବିବାର ଉପର ବେଳା ଜର୍ଜ ପୁଅକୁ ସଙ୍ଗରେ ଘେନି ଘରର ତଳ ବଖରାର ପୁରୁଣା ବାକ୍ସ, ଟ୍ରଙ୍କ, ଥାକ ପ୍ରଭୃତି ଖୋଜିଲେ । ଶେଷରେ ସେମାନେ ଗୋଟିଏ ବାକ୍ସ ଭିତରେ କାଠତିଆରି ଜାହାଜର ଗ୍ରେଟ ମଡେଲଟି ଦେଖିପାରିଲେ । ଏ ପର୍ଯ୍ୟନ୍ତ ମଡେଲଟିର କିଛି କ୍ଷତି ହୋଇ ନଥିଲା । ଜର୍ଜ ପରୀକ୍ଷା କରି ଦେଖିଲେ ସେ ଇଞ୍ଜିନଟି ଠିକ୍ ଅଛି । କେବଳ ଦୁଇ ତିନି ଜାଗାରେ ସାମାନ୍ୟ କଳଙ୍କ ଧରି ଯାଇଅଛି । ବାଲି କାଗଜରେ ଘଷି ଓ ତେଲକନାରେ ପୋଛି ସେ କଳଙ୍କିଗୁଡ଼ିକ ସଫା କରିଦେଲେ । ତତ୍ପରେ ସେ ଇଞ୍ଜିନଟିକୁ ଚଳାଇ ପୁଅକୁ ଦେଖାଇ ଦେଲେ ।

ପୁଅ ଏହାକୁ ଦେଖି ଅତି ଆନନ୍ଦରେ କହିଲା, "ବାପା, ମୁଁ ଏଇଟିକୁ ନେଇ ମୋର ସାଥିମାନଙ୍କୁ ଦେଖାଇବି ।" ଜର୍ଜ ଓୟେଷ୍ଟିଙ୍ଗ-ହାଉସ କହିଲେ, "ହଁ, ସେଇଟି ତୋର ହେଲା । ମାତ୍ର ମୁଁ ଆଗେ ଏହାକୁ ନେଇ କାରଖାନାରେ ସମସ୍ତଙ୍କୁ ଦେଖାଇବି ।"

ତତ୍ପର ଦିନ ସେ ଏହାକୁ କାରଖାନାର ଇଞ୍ଜିନିଅରମାନଙ୍କୁ ଦେଖାଇ ଟର୍ବାଇନ ଇଞ୍ଜିନ କିପରି ଚଳେ, ତାହା ବୁଝାଇ ଦେଲେ । ସେ କହିଲେ, "ଦେଖ, କିପରି ଡାଙ୍କୁଣି ଭିତରେ ବାଷ୍ପର ଫୁଆରା (Jets) ପ୍ରବେଶ କରି ଚକର ବ୍ଲେଡ଼ଗୁଡ଼ିକୁ ଚଳାଉଅଛି । ମଡେଲର ବ୍ଲେଡ଼ଯୁକ୍ତ ଚକଟି ସଙ୍ଗେ ଶାଫ୍ଟ ସଂଯୁକ୍ତ କରି ମୁଁ ଏହାକୁ ଚଳାଉଥିଲି । ବୋଧହୁଏ ଜାହାଜମାନଙ୍କୁ ଚଳାଇବାପାଇଁ ଠିକ୍ ସେହି ପଦ୍ଧତି ବ୍ୟବହାର କରାଯାଇ ପାରିବ ।"

ଏହି କାଥା ଶୁଣି କେଲର ନାମକ ଜଣେ ଇଞ୍ଜିନିଅର ଆଗ୍ରହ ପ୍ରକାଶ କରି କହିଲେ, "ମଡ଼େଲଟି ମୋତେ ଟିକଏ ଦେଖିବାକୁ ଦିଅନ୍ତୁ ।" ଏହା କହି କେଲର ଜର୍ଜଙ୍କ ହାତରୁ ମଡ଼େଲଟିକୁ ନେଲେ ଓ ଖୁବ୍ ମନୋଯୋଗ ସହକାରେ ଏହାକୁ ପରୀକ୍ଷା କରି ଦେଖିଲେ ।

ଜର୍ଜ କହିଲେ, "କି ହୋ କେଲର, ତୁମେ ଯେ ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲ ପରି ଜଣା ପଡ଼ୁଛ ?"

କେଲର ଉତ୍ତରକଲେ, "ବାସ୍ତବରେ ମୁଁ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯାଇଛି । କେତେ ସପ୍ତାହ ପୂର୍ବେ ବ୍ରିଟେନର ଏକ ଇଞ୍ଜିନିଅରଙ୍ଗ ପତ୍ରିକାରେ ମୁଁ ଗୋଟିଏ ପ୍ରବନ୍ଧ ପଢ଼ିଥିଲି । ସେଥିରେ ପାର୍ସନ୍ସ ବୋଲି ଜଣେ ଇଂରେଜଙ୍କ ଉଦ୍ଭାବିତ ଗୋଟିଏ ଇଞ୍ଜିନର ବର୍ଣ୍ଣନା ଥିଲି । ସେ ଇଞ୍ଜିନ୍ ଠିକ୍ ଏହିପରି ପଦ୍ଧତିରେ ଚଳେ । ସେ ଏହାର ନାମ ଦେଇଛନ୍ତି 'ଟର୍ବାଇନ୍ ପଦ୍ଧତି' ।

"ଏ ତେବେ ଏକ ଦୈବୀ ସଂଯୋଗ । ପାର୍ସନ୍ସଙ୍କ ଇଞ୍ଜିନ ବଜାରକୁ ଆସିଲାଣି କି ?" ଜର୍ଜ ପଚାରିଲେ ।

ଇଞ୍ଜିନିଅର କେଲର ଜଣାଇଲେ ଯେ ପାର୍ସନ୍ସ ତାଙ୍କ ଇଞ୍ଜିନର ଏତେ ଦୂର ଉନ୍ନତି କରିପାରି ଅଛନ୍ତି ଯେ ଏହା ଗୋଟିଏ ବଡ଼ ଜାହାଜକୁ ଚଳାଇ ପାରିବ । ସେ ଯେଉଁ ଜାହାଜରେ ଏହି ଇଞ୍ଜିନ ଲଗାଇ ଅଛନ୍ତି, ତାହାର ନାମ ମଧ୍ୟ ଦିଆଯାଇଛି, 'ଟର୍ବାଇନା' ।"

ତତ୍ପରଦିନ ସକାଳେ କେଲର ସେହି ଇଞ୍ଜିନିଅରଙ୍ଗ ପତ୍ରିକାଟି ଆଣି ଦେଲେ । ଜର୍ଜ ଅତି ଯତ୍ନ ସହକାରେ ଉକ୍ତ ପ୍ରବନ୍ଧଟି ପାଠକଲେ । ସେ ଦେଖିଲେ ଯେ କେଲରଙ୍କ ବର୍ଣ୍ଣନା ଠିକ୍ । ଏହି ଇଞ୍ଜିନରେ ସାମାନ୍ୟ ତ୍ରୁଟି ଥିବାର ମନେ ହେଲା, କିନ୍ତୁ ଜର୍ଜ ବୁଝିପାରିଲେ ଯେ ଏହାର ମୌଳିକ ମାତ୍ର ନାହିଁ ।

ଜର୍ଜ ସମୟ ନଷ୍ଟ ନ କରି କେଲରଙ୍କୁ କହିଲେ, "କେଲର, ତୁମେ ଶୀଘ୍ର ଇଂଲଣ୍ଡକୁ ଯାଅ । ସେଠାରେ ଟରବାଇନ ଇଞ୍ଜିନକୁ

ପରୀକ୍ଷା କରି ଦେଖିବ । ଯଦି ଉପଯୁକ୍ତ ମନେକର, ତେବେ ଗୋଟିଏ ଟରବାଇନ କିଣି ନେଇ ଆସିବ ।”

ଦୁଇମାସ ମଧ୍ୟରେ କେଲର ଇଂଲଣ୍ଡରୁ ଆମେରିକାକୁ ଫେରି ଆସିଲେ । ସେ ପାର୍ସନ୍‌ସଙ୍କ ଇଞ୍ଜିନର ନକସା ଓ ପେଟେଣ୍ଟ ଅଧିକାର ମଧ୍ୟ କିଣି ଆଣି ଥିଲେ । ଇଞ୍ଜିନଟି ଦେଖିବାକୁ କଦାକାର ହୋଇ-ଥିଲେହେଁ ଏହାର ଅତି ଦ୍ରୁତବେଗରେ ଘୂରିବାର ଶକ୍ତି ଥିଲା । ଏହାର ଆଉ ଏକ ବିଶେଷତ୍ୱ ଥିଲା । ଗୋଟିଏ ବାଷ୍ପୀୟ ଇଞ୍ଜିନ ଯେତିକ ଶକ୍ତି ଉତ୍ପାଦନ କରେ, ସେତିକ ଶକ୍ତି ଉତ୍ପାଦନ କରୁଥିବା ଟରବାଇନ ତାହା ତୁଳନାରେ ଆକାରରେ ଅତି କ୍ଷୁଦ୍ର ।

ପାର୍ସନ୍‌ସଙ୍କ ଇଞ୍ଜିନକୁ ଆହୁରି ଉନ୍ନତ କରିବା ପାଇଁ ଜର୍ଜ ଇଞ୍ଜିନିଅରମାନଙ୍କୁ ଆଦେଶ ଦେଲେ । ତିନିବର୍ଷ ମଧ୍ୟରେ ସେମାନେ ପରୀକ୍ଷା ସ୍ୱରୂପ କେତୋଟି ଟରବାଇନ ଇଞ୍ଜିନ ତିଆରି କଲେ । ଓୟେଷ୍ଟିଙ୍ଗହାଉସ ଏୟାର୍‌ବ୍ରେକ କମ୍ପାନୀରେ ଯେଉଁ ପ୍ରାଚୀନ ଧରଣର ବାଷ୍ପୀୟ ଇଞ୍ଜିନ ଥିଲା, ଏଗୁଡ଼ିକ ସେମାନଙ୍କର ସ୍ଥାନ ଅଧିକାର କଲା । କ୍ରମଶଃ ଟରବାଇନର ଉନ୍ନତି ସାଧିତ ହେବାରୁ ଉତ୍ପାଦନ ଶକ୍ତିର ପରିମାଣ ମଧ୍ୟ ବୃଦ୍ଧି ପାଇଲା ।

ପୁରାତନ ଇଞ୍ଜିନ ତୁଳନାରେ ଏହି ଟରବାଇନ ଅଧିକ ହାଲୁକା କ୍ଷୁଦ୍ର ଓ ଅଧିକ କାର୍ଯ୍ୟକ୍ଷମ ହୋଇଥିଲେହେଁ ଏହାର ମୂଲ୍ୟ ଯଥେଷ୍ଟ କମ୍ ଥିଲା । ଏହା ଛଡ଼ା ଏଥିରେ କାଳ ଓ ତେଲ ଖୁବ୍ ଅଳ୍ପ ଖରଚ ହେଉଥିଲା । ଏହାର ଯତ୍ନ ନେବାକୁ ଅଧିକ ଲୋକର ପ୍ରୟୋଜନ ହେଉ ନ ଥିଲା । ଏହା ଫଳରେ ଶକ୍ତି ଉତ୍ପାଦନରେ ଖରଚ ବହୁତ କମିଗଲା, ଅଥଚ ଉତ୍ପାଦକ ଯନ୍ତ୍ରର ଉତ୍ପାଦନ ବହୁ ଗୁଣରେ ବୃଦ୍ଧି ପାଇଲା ।

ବିଂଶ ଶତାବ୍ଦୀର ଆରମ୍ଭ ବେଳକୁ ସମଗ୍ର ଯୁକ୍ତରାଷ୍ଟ୍ର ତଥା ସମଗ୍ର ପୃଥିବୀରେ ଷ୍ଟୀମ ଟରବାଇନର ବ୍ୟବହାର ଦ୍ୱାରା ବୈଦ୍ୟୁତିକ ଶକ୍ତିର ଉତ୍ପାଦନ କ୍ଷେତ୍ରରେ ଏକ ବୈପ୍ଲବିକ ପରିବର୍ତ୍ତନ ଉପସ୍ଥିତ ହୋଇଥିଲା ।

## ଷୋହଳ

# ଯନ୍ତ୍ର ବନ୍ଦ ହୋଇଗଲା

ସମସ୍ତ ଦ୍ରୁତଗତିରେ ଚାଲିବାକୁ ଲାଗିଲା । ବାଳକ ଜର୍ଜଙ୍କ କଲେଜରେ ପ୍ରବେଶ କରିବାର ସମୟ ସନ୍ନିକଟ । ନିଜର ଭବିଷ୍ୟତ ସମ୍ବନ୍ଧରେ କିଛି ସ୍ଥିର କରି ନ ପାରି ସେ ଦିନେ ତାହାର ପିତାଙ୍କ ପରାମର୍ଶ ମାଗିଲା । ଏକମାତ୍ର ପୁତ୍ର ହୋଇଥିବାରୁ ପିତାମାତାଙ୍କ ସହିତ ତାହାର ଘନିଷ୍ଠ ସମ୍ପର୍କ ଥିଲା । ବିଶେଷତଃ ସେ ପିତାଙ୍କୁ ଦେବତାତୁଲ୍ୟ ଭକ୍ତି କରୁଥିଲା । ଜର୍ଜ ମଧ୍ୟ ଜାଣିପାରିଲେ ଯେ ପୁତ୍ର ତାଙ୍କର ଏକାନ୍ତ ଅନୁଗତ ଓ ସେ ଯାହା କହିବେ, ନିଶ୍ଚୟ ତାହା କରିବ । ଜର୍ଜଙ୍କର ଆନ୍ତରିକ ଇଚ୍ଛା ଥିଲା ଯେ ପୁତ୍ର ତାଙ୍କର ପଦାଙ୍କ ଆନୁସରଣ କରୁ । ଏତେଦିନ ପରେ, ପଞ୍ଚାଶବର୍ଷକୁ ଅଧିକ ବୟଃକ୍ରମ କାଳରେ ସେ ବୁଝିପାରିଲେ ଯେ ତାଙ୍କର ପିତା ତାଙ୍କ ଭବିଷ୍ୟତ ସମ୍ବନ୍ଧରେ କେତେ ଆଶା, କେତେ ସ୍ୱପ୍ନ ପୋଷଣ କରି ନ ଥିବେ ?

ଜର୍ଜ ଅଳ୍ପ ବୟସରେ ଯେପରି ଉଦ୍ଭାବନୀ ପ୍ରତିଭାର ପରିଚୟ ଦେଇଥିଲେ, ତାଙ୍କର ପୁତ୍ର ସେପରି କିଛି ପରିଚୟ ଦେଇ ନ ଥିଲା । କିନ୍ତୁ ସେ ବୁଦ୍ଧିମାନ୍ ଓ କର୍ମଠ ଥିଲା; ଅନେକ ସମୟରେ ଯନ୍ତ୍ରପାତି ବିଷୟରେ ଆଗ୍ରହ ପ୍ରଦର୍ଶନ କରୁଥିଲା । ତଥାପି ଜର୍ଜ ମନେ କଲେ ଯେ ବଳପୂର୍ବକ ପୁତ୍ରକୁ କୌଣସି ବିଷୟରେ ପ୍ରବେଶ କରାଇବା ସମୀଚୀନ ହେବ ନାହିଁ । ତେଣୁ ସେ ପୁତ୍ରକୁ ନିଜର ପନ୍ଥା ସ୍ଥିର କରି ନେବାକୁ ଉପଦେଶ ଦେଲେ ।

ସେ କହିଲେ, "ମୁଁ ତୋତେ ଯଥାସାଧ୍ୟ ଉପଯୁକ୍ତ ଶିକ୍ଷା ଦେବାକୁ ଚେଷ୍ଟା କରିଅଛୁ । ତୋର ଯେଉଁ ଦିଗରେ ଆଗ୍ରହ ସେ ଦିଗରେ ଉତ୍ସାହ ଦେଇ ଆସିଅଛୁ । ଏହାଛଡ଼ା ତୋର ଜୀବନକୁ ନିୟନ୍ତ୍ରିତ କରିବା ମୋ ପକ୍ଷରେ ଉଚିତ ହେବ ନାହିଁ । ମାସେ ହେଉ, ବର୍ଷେ ହେଉ ବା ତହିଁରୁ ଅଧିକ ଯେତେ ଦିନ ଇଚ୍ଛା ତୁ ଭାବି ଚିନ୍ତି ଦେଖ୍; ତା'ପରେ ଗୋଟାଏ ପନ୍ଥା ସ୍ଥିର କର । କିନ୍ତୁ ଶେଷରେ ଯାହା ସ୍ଥିର କରିବୁ, ସେଥିରେ ତୋର ସମସ୍ତ ଶକ୍ତି ଲଗାଇ କାର୍ଯ୍ୟ କରିବୁ । ଏହି ସିଦ୍ଧାନ୍ତ ଉପରେ ତୋର ସୁଦୀର୍ଘ ଭବିଷ୍ୟତ ଏପରି କି ସମଗ୍ର ଜୀବନ ନିର୍ଭର କରେ । ଏ କଥା ମନେ ରଖିଥିବୁ ।"

ଅଷ୍ଟାଦଶ ବର୍ଷ ବୟସରେ ଜର୍ଜ କଲେଜରେ ପ୍ରବେଶ କଲା ବେଳକୁ ସ୍ଥିର କଲା ଯେ ସେ ଜଣେ ଇଞ୍ଜିନିଅର ହେବ; ତାହାହେଲେ ସେ ପିତାଙ୍କ ସହିତ କାର୍ଯ୍ୟ କରିବାର ସୁଯୋଗ ପାଇପାରିବ ।

ଆହୁରି କେତୋଟି ବର୍ଷ ଚାଲିଗଲା । ଏବେ ତାଙ୍କର ବୟସ ଯେ ଷାଠିଏ ହେବାକୁ ବସିଲାଣି ତାହା ପକ୍ୱକେଶ ଜର୍ଜ ବିଶ୍ୱାସ କରି ପାରୁ ନ ଥିଲେ । ସେ ଭାବୁଥିଲେ—ସମୟ ବେଗରେ ଚାଲିଯାଉଅଛୁ, ଏହି ଚିନ୍ତାହିଁ ବାର୍ଦ୍ଧକ୍ୟର ଲକ୍ଷଣ । ଅନେକ ସମୟରେ ବସନ୍ତ କାଳର ଅପରାହ୍ନ-ବେଳା ସେ ଅଫିସ ଘରର ଝରକାବାଟେ ବାହାରର ସବୁଜ ବୃକ୍ଷଲତା ଆଡ଼େ ଦୃଷ୍ଟି ନିକ୍ଷେପ କରି ଦୁଃଖ କରୁଥିଲେ ଯେ ଏହି ଶ୍ୟାମଳ ତୃଣଲତା ପୃଥିବୀର ନୂତନତା ପ୍ରକାଶ କରୁଅଛି; କିନ୍ତୁ ତାଙ୍କ ଜୀବନର ନବୀନତା ଏବେ ଅତୀତର ଗର୍ଭରେ ବିଲୀନ । ଆଜି ଥରେ ନୂତନ ଜୀବନ ଆରମ୍ଭ କରିବାର ସୁଯୋଗ ପାଇ ତାଙ୍କ ପୁଅ ଜର୍ଜ ଭଳି ହୋଇଯିବାକୁ ତାଙ୍କର ଇଚ୍ଛା ହେଉଥିଲା । ପୃଥିବୀ ଗୋଟିଏ ନୂତନ ସ୍ୱର୍ଣ୍ଣଯୁଗର ଦ୍ୱାରଦେଶରେ ଉପସ୍ଥିତ । ସେହି ଯୁଗରେ ସେ ଜୀବନ ଆରମ୍ଭ କରି ପାରନ୍ତେକି ?

ବିଗତ ପଚିଶବର୍ଷ ମଧ୍ୟରେ ତାଙ୍କର ବାଲ୍ୟକାଳରୁ ନିଜ ଜୀବନରେ ତଥା ପୃଥିବୀରେ କେତେ ବିପୁଳ ପରିବର୍ତ୍ତନ ଘଟିଗଲାଣି ? ଏ ସବୁ ସହଜରେ ବିଶ୍ୱାସ କରି ହେବ ନାହିଁ । ଏହି ପଚିଶ ବର୍ଷ ମଧ୍ୟରେ ମନୁଷ୍ୟ ଯେଉଁ ଅଗ୍ରଗତି କରି ପାରିଅଛି, ପୂର୍ବରୁ ହଜାର ବର୍ଷରେ ମଧ୍ୟ ତାହା

କରି ପାରି ନ ଥିଲା । ନାନା ମାରାତ୍ମକ ରୋଗର ପ୍ରତିକାର ସମ୍ଭବପର ହୋଇଅଛି; ମୁହୂର୍ତ୍ତକ ମଧ୍ୟରେ ପୃଥିବୀର ସୁଦୂରବର୍ତ୍ତୀ ଯେ କୌଣସି ସ୍ଥାନ ସହିତ ସଂଯୋଗ ସ୍ଥାପନ କରି ହେଉଅଛି; ଲୋକ ସାଧାରଣଙ୍କ ଜୀବନକୁ ସ୍ୱାଚ୍ଛନ୍ଦ୍ୟପୂର୍ଣ୍ଣ କରିବାପାଇଁ ନାନା ପଦାର୍ଥ ଆବିଷ୍କୃତ ହୋଇଅଛି । ପୃଥିବୀର ଇତିହାସରେ ଏସବୁ ଏଥି ପୂର୍ବରୁ ଦେଖାଦେଇ ନଥିଲା । ଉଦାହରଣ ସ୍ୱରୂପ, ପଚାଶ ବର୍ଷ ପୂର୍ବେ କିଏ କଳ୍ପନା କରିଥିଲା ଯେ ଗାଡ଼ି ଅଶ୍ୱଦ୍ୱାରା ଚାଳିତ ନ ହୋଇ ଗ୍ୟାସ ଇଞ୍ଜିନଦ୍ୱାରା ଚାଳିତ ହେବ ? ପର୍ଦ୍ଦା ଉପରେ ଛବି ପ୍ରତିଫଳିତ ହୋଇ ବାସ୍ତବ ଗତିର ଭ୍ରମ ସୃଷ୍ଟି କରିପାରିବ ? କିଏ ସ୍ୱପ୍ନରେ ଭାବିଥିଲା ଯେ ଉଇଲବର ରାଇଟ ଓ ଅର୍ଭିଲ ରାଇଟ ନାମକ ଦୁଇଜଣ ସାଇକେଲ ମିସ୍ତ୍ରୀ ଏପରି ଗୋଟିଏ ଯନ୍ତ୍ର ତିଆରି କରିବେ ଯେ ତାହା ବାୟୁଠାରୁ ଭାରି ହେଲେହେଁ ଆକାଶରେ ଉଡ଼ି ପାରିବ ?

ଏ ସବୁ ଅତି ଚମତ୍କାର ବ୍ୟାପାର । ପ୍ରତ୍ୟେକଟି ଅତି ଆଶ୍ଚର୍ଯ୍ୟ-ଜନକ । ତଥାପି ଜର୍ଜଙ୍କ ମନରେ ସଂଶୟ ହେଉଥିଲା—ଏହି ଅର୍ଦ୍ଧଶତାବ୍ଦୀ ସମୟ ମଧ୍ୟରେ ମନୁଷ୍ୟ କ୍ରମ ଗତିରେ ଅତି ଅଧିକ ଦୂର ଅଗ୍ରସର ହୋଇ ଯାଇଅଛି କି ? ମନୁଷ୍ୟ ପ୍ରକୃତିକୁ ପରାଜିତ କରିବାକୁ ସମର୍ଥ ହୋଇ ପାରିଅଛି, କିନ୍ତୁ ନିଜର ଅଦମ୍ୟ ବନ୍ୟ ପ୍ରକୃତିକୁ ସଂଯତ କରି ପାରିନାହିଁ । ହୁଏତ ଏଥିପାଇଁ କିଛି ସମୟ ଦରକାର; ଟିକିଏ ବିଶ୍ରାମ ନେଇ ଚିନ୍ତା କରିବା ଦରକାର; ଯେଉଁସବୁ ନୂତନ ଆବିଷ୍କାର ମନୁଷ୍ୟର ହସ୍ତଗତ ହୋଇଅଛି, ସେ ସବୁର ନିୟନ୍ତ୍ରଣ ଶିକ୍ଷା କରିବା ଦରକାର; ପରସ୍ପର ପ୍ରତି ଭୟ ଓ ସନ୍ଦେହକୁ ଜୟ କରିବା ଦରକାର । ଏଥିପାଇଁ ସମୟ ଆବଶ୍ୟକ । ଏବେ ଦେଶ ଦେଶ ମଧ୍ୟରେ ସନ୍ଦେହର ପ୍ରାଚୀର ଦଣ୍ଡାୟମାନ । ଏବେ ମଧ୍ୟ ଯୁଦ୍ଧ ଚାଲିଛି ଏବଂ ସେ ଯୁଦ୍ଧ ପୂର୍ବକାଳର ଯୁଦ୍ଧ ଅପେକ୍ଷା ଅଧିକ ଭୀଷଣ, ଅଧିକ ମାରାତ୍ମକ । ଲୋକଙ୍କର ହୃଦୟରେ ସ୍ୱାର୍ଥପରତା ଓ ଲୋଭ ବିଦ୍ୟମାନ ଏବଂ ଏପରି ହେବା କାମ୍ୟ ନ ହେଲେହେଁ ଅପରିହାର୍ଯ୍ୟ ବୋଲି ବିବେଚିତ ହେଉଅଛି ।

ଜର୍ଜ ମନେ କରୁଥିଲେ ଯେ ମନୁଷ୍ୟର ଦୋଷ ଦୁର୍ବଳତାସତ୍ତ୍ୱେ ସେ କଦାପି ଅଜ୍ଞାତ ପ୍ରକୃତିର ସନ୍ଧାନରୁ ବିରତ ହୋଇ ପାରିବ ନାହିଁ ।

ଯେତେକାଳ ପର୍ଯ୍ୟନ୍ତ ମାନବ ଜାତି ବଞ୍ଚିଥିବ, ସେତେଦିନ ଯାଏ ମାନବ ଏହିପରି ନୂତନ ଜ୍ଞାନର ସନ୍ଧାନ କରୁଥିବ । ଏହାହିଁ ହେଉଛି ମାନବ ଜାତିର ମୌଳିକ ଆକାଙ୍‌କ୍ଷା । ମନୁଷ୍ୟ ପ୍ରକୃତିର ପରିବର୍ତ୍ତନ ନ ହେବା ପର୍ଯ୍ୟନ୍ତ ତାହାର ଏହି ଆକାଂକ୍ଷାର ପରିବର୍ତ୍ତନ ହୋଇ ନ ପାରେ । ତଥାପି ଆଶାର ଏକ କ୍ଷୀଣ ଆଲୋକ ଦେଖା ଯାଉଅଛି ଯେ ଭବିଷ୍ୟତରେ —ହୁଏ ତ ବାଳକ ଜର୍ଜର ଜୀବଦ୍ଦଶାରେ ବା ତାର ସନ୍ତାନମାନଙ୍କ ଜୀବନକାଳ ମଧ୍ୟରେ—ମାନବର ଜ୍ଞାନଲାଭର ପିପାସା ମଧ୍ୟ ଜାଗ୍ରତ ହେବ । ଏହା ଫଳରେ ମନୁଷ୍ୟ ଯେପରି ଜଳ, ସ୍ଥଳ ଓ ଆକାଶକୁ ଜୟ କରିବାକୁ ଶିକ୍ଷା କରିଅଛି, ସେହିପରି ନିଜର ସହଜାତ ପ୍ରବୃତ୍ତିଗୁଡ଼ିକୁ ଦମନ କରିବାକୁ ଶିକ୍ଷା କରି ପାରିବ ।

ଜର୍ଜ ନିଜ ଜୀବନରେ ଯାହା ପାଇଥିଲେ, ସେଥିରେ ଅଭାବ ନ ଥିଲା; ତେଣୁ ତାଙ୍କର ପୂର୍ଣ୍ଣ ସନ୍ତୋଷ ଥିଲା । କୌଣସି ଲୋକ ପକ୍ଷରେ ଏହା ଅପେକ୍ଷା ଆଉ ଅଧିକ କଅଣ ଆଶା କରାଯାଇପାରେ ? ତାଙ୍କର ସ୍ୱାସ୍ଥ୍ୟରେ କେବେ କୌଣସି ତ୍ରୁଟି ଦେଖାଯାଇ ନ ଥିଲା; ପରିବାରର ସମସ୍ତେ ତାଙ୍କର ଅନୁଗତ ଥିଲେ; ଯେଉଁ କାର୍ଯ୍ୟ ତାଙ୍କର ଅତି ପ୍ରିୟ, ସେହି କାର୍ଯ୍ୟ କରିବାକୁ ସେ ସୁଯୋଗ ପାଇଥିଲେ । ଏହି ସୌଭାଗ୍ୟ ନିମନ୍ତେ ସେ ଭଗବାନଙ୍କ ନିକଟରେ କୃତଜ୍ଞତା ପ୍ରକାଶ କରୁଥିଲେ । ତାଙ୍କ ଅବସ୍ଥାରେ ଥିଲେ ଅନ୍ୟ ଲୋକ ହୁଏତ ପ୍ରଥମ ଜୀବନରେ ଅର୍ଜିତ ଧନସମ୍ପତ୍ତି ଓ ଗୌରବ ଉପଭୋଗ କରି ନିଶ୍ଚିନ୍ତରେ ଅବଶିଷ୍ଟ ଜୀବନ କଟାଇ ଦେଇଥାଆନ୍ତା, କିନ୍ତୁ ଜର୍ଜ ମନେ କରୁଥିଲେ ଯେ କାର୍ଯ୍ୟ କରି ଋଣ ପରିଶୋଧ କରିବା ଆବଶ୍ୟକ । ଯେତେଦିନ ଯାଏ ପରିଶ୍ରମ କରି ଜଗତକୁ କିଛି ଦେବାପାଇଁ ସାମର୍ଥ୍ୟ ଅଛି, ସେତେଦିନ ପର୍ଯ୍ୟନ୍ତ ସେଥିରୁ ବିରତ ହେବା ତାଙ୍କ ପକ୍ଷରେ ଏକ ଅପରାଧ ବୋଲି ସେ ମନେ କରୁଥିଲେ ।

ଘଡ଼ିର କଣ୍ଟାପରି ପ୍ରତିଦିନ ସକାଳେ ନିର୍ଦ୍ଦିଷ୍ଟ ସମୟରେ ସେ କାରଖାନାରେ ଉପସ୍ଥିତ ହୋଇ ସେଦିନର କର୍ମୀମାନଙ୍କୁ ସ୍ୱାଗତ ଜଣାଉ-ଥିଲେ ଓ ସାରାଦିନ କାରଖାନାରେ ରହି କାର୍ଯ୍ୟ କରୁଥିଲେ । ତାଙ୍କର କର୍ମୀମାନେ କାରଖାନା ଗୃହ ସହିତ ଯେପରି ସୁପରିଚିତ ଥିଲେ,

ଜର୍ଜଙ୍କର ଶୁକ୍ଳକେଶ ଓ ଦୀର୍ଘ ଶ୍ମଶ୍ରୁ ସହିତ ସେହିପରି ସୁପରିଚିତ ଥିଲେ । ତାଙ୍କୁ ଦେଖିଲେ ସେମାନଙ୍କ ହୃଦୟରେ ଆଶା ଓ ଆଶ୍ୱାସନାର ସଞ୍ଚାର ହେଉଥିଲା ।

ତାହାଙ୍କ ସମୟର ଅଧିକ ଭାଗ ପରିଚାଳନାସମ୍ବନ୍ଧୀୟ କାର୍ଯ୍ୟରେ ଅତିବାହିତ ହେଉଥିଲା । ତଥାପି ସେ ପ୍ରତ୍ୟେକ ଘଣ୍ଟାଏ ଦୁଇଘଣ୍ଟା ପର୍ଯ୍ୟନ୍ତ ଟେବୁଲ ପାଖରେ ବସି କୌଣସି ନୂତନ ଯନ୍ତ୍ରର ନକ୍ସା ଅଙ୍କନ କରିବାରେ କଟାଉଥିଲେ । ନକ୍ସା କରିବାରେ ସେ ଅତ୍ୟନ୍ତ ଯତ୍ନଶୀଳ ଥିଲେ । ସମୟେ ସମୟେ ତାଙ୍କର ସହକର୍ମୀମାନେ ତାଙ୍କୁ କହୁଥିଲେ, "ଆପଣଙ୍କର ମୂଲ୍ୟବାନ୍ ସମୟକୁ ସାମାନ୍ୟ ନକ୍ସା ଆଙ୍କିବା କାର୍ଯ୍ୟରେ ଅପବ୍ୟୟ କରିବା କି ଦରକାର । ଗୋଟାଏ ମୋଟାମୋଟି ଖସଡ଼ା ତିଆରି କରି ଦେଖାଇ ଦେଲେ ଆମର ଡ୍ରାଫ୍ଟସମାନ ଯେକୌଣସି ତାକୁ ଭଲରୂପେ ଆଙ୍କି ନକ୍ସା କରି ଦେଇ ପାରନ୍ତି ।"

ଜର୍ଜ ଉତ୍ତର ଦେଉଥିଲେ, "ଏହା ହେଉଛି ମୋର ମନକୁ ବିଶ୍ରାମ ଦେବାର ଏକ ଉପାୟ । ଆହୁରି ମଧ୍ୟ କୌଣସି ନୂତନ କଳ୍ପନାକୁ ନକ୍ସା ଆକାରରେ ଅଙ୍କନ କରି ନ ଦେଖିଲେ ତାହାର ଦୋଷତ୍ରୁଟି ସହଜେ ଧରାପଡ଼େ ନାହିଁ ।"

୧୯୦୫ ମସିହା ବେଳକୁ ଜର୍ଜଙ୍କର ପେଟେଣ୍ଟର ସଂଖ୍ୟା ତିନି ଶହରୁ ଅଧିକ ହୋଇ ଯାଇଥିଲା । ପ୍ରଥମ ଜୀବନର ଆବିଷ୍କାରକୁ ଛାଡ଼ି ଦେଲେ ମଧ୍ୟ ଏହି ପେଟେଣ୍ଟଗୁଡ଼ିକ ମଧ୍ୟରେ ଗ୍ୟାସ ଇଞ୍ଜିନ ଓ ଜଟିଳ ବୈଦ୍ୟୁତିକ ନିୟନ୍ତ୍ରଣକାରୀ ଯନ୍ତ୍ରଠାରୁ ଆରମ୍ଭ କରି ଉନ୍ନତ ଧରଣର ଟରବାଇନ ବ୍ଲେଡ୍ ପର୍ଯ୍ୟନ୍ତ ଥିଲା । ବୃଦ୍ଧ ଜର୍ଜ ଯେ ଏତେ ଗୁଡ଼ିଏ ଅଦ୍ଭୁତ ଆବିଷ୍କାର କରିଅଛନ୍ତି, ଏକଥା ଓ୍ୱେଷ୍ଟିଙ୍ଗହାଉସ କମ୍ପାନୀର ଯୁବକ କର୍ମଚାରୀମାନେ ସହଜେ ବିଶ୍ୱାସ କରି ପାରୁ ନ ଥିଲେ । ଥରେ ଜଣେ ଯୁବକ ଇଞ୍ଜିନିଅର ବିସ୍ମିତ ହୋଇ କହିଥିଲେ, "ମିଷ୍ଟର ଓ୍ୱେଷ୍ଟିଙ୍ଗହାଉସ, ଆପଣ ଜଣେ ଲୋକ ହୋଇ ଯାହା କରିଅଛନ୍ତି, ତିନି ଜଣ ଲୋକଙ୍କ ପକ୍ଷରେ ମଧ୍ୟ ତାହା କରିବା ସମ୍ଭବପର ନୁହେଁ ।"

୧୯୦୭ ମସିହାରେ ଯେତେବେଳେ ତାଙ୍କର ଜୀବନ-ସୂର୍ଯ୍ୟ ଶାନ୍ତିପୂର୍ଣ୍ଣ ଆଲୋକରେ ଉଦ୍ଭାସିତ ହୋଇ ଉଠୁଥିଲେ, ସେତିକବେଳେ ଢର୍‌ବଲସ୍ପୂରେ ଏକ ପ୍ରଚଣ୍ଡ ବାତ୍ୟା ଦେଖାଗଲା । ଓ୍ୱେଷ୍ଟିଂହାଉସଙ୍କର ମତ ଥିଲା ଯେ ସେମାନେ ଅନ୍ୟ କୌଣସି କମ୍ପାନୀ ସହିତ ଚୁକ୍ତି କରି କିମ୍ବା କୌଣସି ସଙ୍ଘସହିତ ଆବଦ୍ଧ ହୋଇ ଦରଦାମ ସ୍ଥିର କରି ପ୍ରତିଯୋଗିତାର ପଥ ରୁଦ୍ଧ କରୁ ନଥିଲେ । ତାଙ୍କର ଏହି ମତଯୋଗୁଁ ପ୍ରତିଦ୍ୱନ୍ଦୀମାନେ ତାଙ୍କ ପ୍ରତି କ୍ଷୁବ୍ଧ ହୋଇ ଉଠିଥିଲେ । ଜର୍ଜଙ୍କର ଦୃଢ଼ ସ୍ୱାଧୀନ ବ୍ୟବସାୟ ମତ ନିକଟରେ ଏଡିସନଙ୍କ କମ୍ପାନୀଗୁଡ଼ିକ ପରାଜୟ ସ୍ୱୀକାର କରିଥିଲେ, ଏକଥା ସତ୍ୟ । ତାହା ସଙ୍ଗେ ସଙ୍ଗେ ଧନୀ ବ୍ୟବସାୟୀ ମହଲରେ ତାଙ୍କର ଅନେକ ଶତ୍ରୁ ମଧ୍ୟ ହୋଇଥିଲେ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ବ୍ୟବସାୟ ଓ ଶିଳ୍ପକ୍ଷେତ୍ରରେ ଅନେକ ଶକ୍ତିଶାଳୀ ସଙ୍ଘ ପ୍ରତିଷ୍ଠିତ ହେବାର ସୂଚନା ଦେଖା ଯାଇଥିଲା । ମୂଳଧନ ଓ ଅଂଶଧନୀର କୌଶଳପୂର୍ଣ୍ଣ ବିନିଯୋଗଦ୍ୱାରା କେତେକ ବ୍ୟାଙ୍କମାଲିକ ଓ ଫାଟକାବଜାରୀ (Financial speculators) ଅନେକ କମ୍ପାନୀ ଉପରେ ଆଧିପତ୍ୟ ସ୍ଥାପନ କରି ଯାଉଥିଲେ । ବିଭିନ୍ନ କମ୍ପାନୀର ସଙ୍ଘ ସ୍ଥାପନଦ୍ୱାରା ପ୍ରତିଯୋଗିତା ଦୂର କରି ଅଧିକ ଲାଭ କରିବା ସେମାନଙ୍କର ପ୍ରଧାନ ଲକ୍ଷ୍ୟଥିଲା ।

ଯେଉଁ ଧନାଧିପତିମାନେ ବର୍ତ୍ତମାନ ଆମେରିକାର ଶିଳ୍ପର ବିଶିଷ୍ଟ ଭାଗ ନିୟନ୍ତ୍ରଣ କରୁଥିଲେ, ଜର୍ଜ ସେମାନଙ୍କ ସହିତ କୌଣସି ଚୁକ୍ତିରେ ଆବଦ୍ଧ ହୋଇ ସ୍ୱାଧୀନ ପ୍ରତିଯୋଗିତା ବନ୍ଦ କରିବାକୁ ଅସ୍ୱୀକାର କରି ଦେଇଥିଲେ । ସେମାନେ ମନେକଲେ ଯେ ଜର୍ଜ ସେମାନଙ୍କ ପଥରେ ଏକ କଣ୍ଟକ । ପ୍ରତିହିଂସାପରବଶ ହୋଇ ସେମାନେ ଚେଷ୍ଟାକଲେ ଯେପରି ଓ୍ୱେଷ୍ଟିଂହାଉସ କୌଣସି ପ୍ରତିଷ୍ଠିତ ବ୍ୟାଙ୍କରୁ ଋଣସୂତ୍ରରେ ଟଙ୍କା ପାଇ ନ ପାରନ୍ତି । ଏହା ଫଳରେ ତାଙ୍କ କମ୍ପାନୀଗୁଡ଼ିକୁ ବାଧ୍ୟ ହୋଇ ଅନ୍ୟ ଉପାୟରେ ଟଙ୍କା ସଂଗ୍ରହ କରିବାକୁ ପଡ଼ିଲା । ସେମାନେ ଅଂଶ ବିକ୍ରୟ ଦ୍ୱାରା ବ୍ୟକ୍ତିବିଶେଷଙ୍କଠାରୁ ଟଙ୍କା ପାଇଲେ । କେତେକ ସ୍ୱାଧୀନ ବ୍ୟାଙ୍କ ମଧ୍ୟ ସେମାନଙ୍କୁ ଋଣ ଦେଲେ । ଅନେକ ସମୟରେ କମ୍ପାନୀଗୁଡ଼ିକୁ ଆର୍ଥିକ ସଙ୍କଟରୁ ଉଦ୍ଧାର କରିବାପାଇଁ ଜର୍ଜ ନିଜର ବ୍ୟକ୍ତିଗତ ଧନକୁ ମଧ୍ୟ ବ୍ୟୟ କରୁଥିଲେ ।

ସ୍ୱାଧୀନ ଭାବରେ ଏପରି ଅର୍ଥ ସଂଗ୍ରହ କରିବାର ମାତ୍ର କେବଳ ଜର୍ଜଙ୍କର ବ୍ୟକ୍ତିଗତ 'ମର୍ଯ୍ୟାଦା ଓ ସାଧୁତା ଯୋଗୁ ସଫଳ ହୋଇ ପାରିଥିଲା । ତାଙ୍କର କମ୍ପାନୀଗୁଡ଼ିକର ଉତ୍ତରୋତ୍ତର ଉନ୍ନତି ହେଉଥିଲା । ଉଦାହରଣ ସ୍ୱରୂପ ତାଙ୍କର ବୃହତ୍ତମ ;ଅନୁଷ୍ଠାନ ଓୟେଷ୍ଟିଙ୍ଗହାଉସ ଇଲେକ୍‌ଟ୍ରିକ୍ କମ୍ପାନୀର କାରବାର ୧୯୦୭ ମସିହା ବେଳକୁ ଏତେ ଦୂର ବିସ୍ତୃତି ଲାଭ କରିଥିଲା ଯେ ତାହାକୁ ଚଳାଇବା ସହଜ ନଥିଲା । ଏହା ଛଡ଼ା ଆହୁରି ନୂତନ ପଣ୍ୟଦ୍ରବ୍ୟ ଉତ୍ପାଦନ କରିବାର କଳ୍ପନା ମଧ୍ୟ ଥିଲା । ତେଣୁ କମ୍ପାନୀର ଭବିଷ୍ୟତ ଉଜ୍ଜ୍ୱଳ ଥିଲା ।

ଏହି ସମୟରେ କମ୍ପାନୀର ଅଂଶ ଋଣ ମିଶି ଦେଣା ଥିଲା ଚାରି-କୋଟି ତିରିଶ ଲକ୍ଷ ଡଲାର । କିନ୍ତୁ ଏହି ଦେଣାପାଇଁ ଜର୍ଜ ଚିନ୍ତିତ ନ ଥିଲେ । କମ୍ପାନୀର ସାମର୍ଥ୍ୟ ବିଷୟରେ ପୂର୍ଣ୍ଣ ଆସ୍ଥା ଥିଲା । ଏଥି ପୂର୍ବରୁ ସେ ଅନେକ ବାର ଋଣ ପାଇଥିଲେ । ଦରକାର ପଡ଼ିଲେ ସେ ପୁନର୍ବାର ଋଣ ଉଠାଇ ପାରିବେ ବୋଲି ଦୃଢ଼ ଆଶା ପୋଷଣ କରିଥିଲେ ।

ସେହି ବର୍ଷ ଅକ୍ଟୋବରମାସରେ ହଠାତ୍ ଗୋଟାଏ ଜନରବ ଉଠିଲା ଯେ ଦେଶ ଏକ ଅର୍ଥନୈତିକ ବିପର୍ଯ୍ୟୟର ସମ୍ମୁଖୀନ ହୋଇଅଛି । ଯେଉଁମାନେ କମ୍ପାନୀର ଅଂଶ ଆକାରରେ ଟଙ୍କା ଜମା ରଖିଥିଲେ, ସେମାନେ ଲୋକସାନ ଭୟରେ ନିଜ ନିଜ ଅଂଶ ବିକ୍ରି କରିବାକୁ ବ୍ୟାକୁଳ ହୋଇ ଉଠିଲେ । ଏହା ଫଳରେ ଅଂଶର ମୂଲ୍ୟ ବହୁତ କମିଗଲା । ଅଳ୍ପ ଦିନ ମଧ୍ୟରେ ବ୍ୟବସାୟୀ ମହଲରେ ଆତଙ୍କ ବ୍ୟାପି-ଗଲା । ବ୍ୟାଙ୍କମାନେ ନିଜ ନିଜ ଜମାକାରୀଙ୍କ ସ୍ୱାର୍ଥ ରକ୍ଷା ଦୃଷ୍ଟିରୁ ଋଣ ଦେବା ବନ୍ଦ କରିଦେଲେ ।

ଠିକ୍ ସେହି ସମୟକୁ ଜର୍ଜଙ୍କର ପିଟସବର୍ଗର ବ୍ୟାଙ୍କମାଲିକମାନଙ୍କୁ ନବେ ଲକ୍ଷ ଡଲାର ପରିଶୋଧ କରିବାର କଥା । କମ୍ପାନୀର ଧନସମ୍ପତ୍ତି ତୁଳନାରେ ଏହି ଋଣ କିଛି ନୁହେଁ; କିନ୍ତୁ ଚାରିଆଡେ ଯେଉଁ ଆତଙ୍କ ସୃଷ୍ଟି ହୋଇଥିଲା, ସେହି ପରିସ୍ଥିତି ଦୃଷ୍ଟିରୁ ସେମାନେ ଜର୍ଜଙ୍କୁ ଋଣ ପରିଶୋଧ କରିବାପାଇଁ ଆଉ ସମୟ ଦେବାକୁ ନାସ୍ତି କରିଦେଲେ ।

ହତୋତ୍ସାହ ହୋଇ ଜର୍ଜ ଅନ୍ୟାନ୍ୟ ବ୍ୟାଙ୍କରୁ ଋଣ ପାଇବାକୁ ଉଦ୍ୟମ କଲେ; ମାତ୍ର ତାଙ୍କର ଚେଷ୍ଟା ବିଫଳ ହେଲା । ଏପରିକି ପନ୍ଦର ବର୍ଷ ପୂର୍ବେ ନ୍ୟୁୟର୍କରେ ଯେଉଁ ସବୁ ବ୍ୟାଙ୍କ ଜର୍ଜଙ୍କୁ ଆର୍ଥିକ ଦୁର୍ଗତିରୁ ରକ୍ଷା କରିଥିଲେ, ସେମାନେ ମଧ୍ୟ ଋଣ ଦେବାକୁ ମନା କରିଦେଲେ ।

ଯେଉଁ କମ୍ପାନୀଗୁଡ଼ିକ ବଡ଼ ବଡ଼ ଆର୍ଥିକସଂଘର ନିୟନ୍ତ୍ରଣାଧୀନ ଥିଲେ ସେଗୁଡ଼ିକ ଏହି ବିପଦରୁ ରକ୍ଷାପାଇ ଯାଇଥିଲେ; କାରଣ ସେମାନେ ପ୍ରଭାବଶାଳୀ ମହାଜନସଂଘର ସମର୍ଥନ ପାଉଥିଲେ । କେବଳ ଯେଉଁମାନେ ଓ୍ୱେଷ୍ଟିଂହାଉସ କମ୍ପାନୀ ଭଳି ନିଜର ସ୍ୱାଧୀନ ନୀତି ଅନୁସରଣ କରୁଥିଲେ, ସେହିମାନେ ବିପଦଗ୍ରସ୍ତ ହୋଇ ପଡ଼ିଲେ । ସେମାନଙ୍କୁ କେହି ଋଣ ଦେଲେ ନାହିଁ । ଯେତେବେଳେ ଓ୍ୱେଷ୍ଟିଂହାଉସ ଇଲେକ୍‌ଟ୍ରିକ୍ କମ୍ପାନୀର ଆର୍ଥିକ ଦୁରବସ୍ଥା ବିଷୟ ଜଣା ପଡ଼ିଗଲା, ସେତେବେଳେ ବ୍ୟାଙ୍କମାଲିକ ଓ ଫାଟକାବଜାରୀମାନେ ଆନନ୍ଦିତ ହେଲେ । କେହି କେହି କମ୍ପାନୀକୁ ସର୍ବସ୍ୱାନ୍ତ କରିବା ଉଦ୍ଦେଶ୍ୟରେ ଋଣ ପରିଶୋଧ ଦାବିକଲେ ।

ଏଥର ଜର୍ଜ ପ୍ରକୃତରେ ନିଜକୁ ନିତାନ୍ତ ଅସହାୟ ମନେ କଲେ । ଏହି ବିପର୍ଯ୍ୟୟ ଯେ ତାଙ୍କ ଦ୍ୱାରା ସଙ୍ଘଟିତ ହୋଇଥିଲା, ତାହା ନୁହେଁ । କିନ୍ତୁ କମ୍ପାନୀର ଅଂଶୀଦାରମାନଙ୍କର ଓ ଅନ୍ୟ ଯେଉଁମାନେ ତାଙ୍କ ଉପରେ ଆସ୍ଥା ସ୍ଥାପନ କରିଥିଲେ, ସେମାନଙ୍କର ସ୍ୱାର୍ଥରକ୍ଷା କରିବା ତାଙ୍କର ପ୍ରଧାନ ଚିନ୍ତା ହେଲା । ସେ ଓକିଲମାନଙ୍କ ପରାମର୍ଶ ଅନୁସାରେ କମ୍ପାନୀକୁ ରିସିଭରମାନଙ୍କ ତତ୍ତ୍ୱାବଧାନରେ ଛାଡ଼ିଦେଲେ ।

ଅଦାଲତ ଜର୍ଜଙ୍କର ଏହି କାର୍ଯ୍ୟକୁ ଅନୁମୋଦନ କଲେ । କମ୍ପାନୀର ପୁନର୍ଗଠନ ପାଇଁ କେତେକ ବ୍ୟାଙ୍କମାଲିକଙ୍କର ସାହାଯ୍ୟ ନିଆଗଲା । ସେମାନେ ଅବିଳମ୍ବେ ଷୋଳଜଣ ଡିରେକ୍ଟରଙ୍କୁ ନେଇ ଗୋଟିଏ ନୂତନ ବୋର୍ଡ଼ ଗଠନ କଲେ । ରବର୍ଟ ମାଥର ନାମକ ଜଣେ ସନାତନ ପନ୍ଥୀ ଓକିଲ ଏହି ବୋର୍ଡ଼ର ଚେୟାରମାନରୂପେ ନିଯୁକ୍ତ ହେଲେ । ଜର୍ଜ ପୂର୍ବପରି ପ୍ରେସିଡେଣ୍ଟ ହୋଇ ରହିଲେ । ସେ ଅବିଳମ୍ବେ କମ୍ପାନୀର ପୁନର୍ଗଠନ ନିମନ୍ତେ ଗୋଟିଏ ପ୍ରସ୍ତାବ ମାଥର ଓ ଅନ୍ୟାନ୍ୟ

ଡିରେକ୍ଟରମାନଙ୍କୁ ଦେଲେ । ପ୍ରସ୍ତାବଟି କାର୍ଯ୍ୟକାରୀ ହେବାକୁ ଚଉଦ ମାସ ଲାଗି ଯାଇଥିଲା; କିନ୍ତୁ ଏହା ଏପରି ସଫଳ ହେଲା ଯେ ୧୯୦୯ ମସିହାର ବସନ୍ତ ଋତୁ ବେଳକୁ ଓ୍ୱେଷ୍ଟିଂହାଉସ ଇଲେକ୍ଟ୍ରିକ୍ କମ୍ପାନୀ ସମ୍ପୂର୍ଣ୍ଣରୂପେ ଋଣମୁକ୍ତ ହୋଇ ଯାଇଥିଲା ।

କମ୍ପାନୀ ଯେ ଏତେ ଉନ୍ନତି କରି ପାରିଥିଲା, ତାହାର ମୂଳ କାରଣ ହେଉଛି ଗବେଷଣା ଓ ପରୀକ୍ଷା । କମ୍ପାନୀର ଆର୍ଥିକ ଅବସ୍ଥା ଭଲ ହୋଇ ଯିବାପରେ ଜର୍ଜ ଇଚ୍ଛା କଲେ ଯେ ପୁନରାୟ ଗବେଷଣା ଓ ପରୀକ୍ଷା କାର୍ଯ୍ୟ ଚଳାଇବାକୁ ହେବ । କିନ୍ତୁ ତାଙ୍କର ଏହି ପ୍ରସ୍ତାବକୁ ଚେୟାରମାନ ମାଥର ଅନୁମୋଦନ କଲେ ନାହିଁ । ସେ କହିଲେ ଯେ କମ୍ପାନୀକୁ ପ୍ରଚଳିତ ପଦ୍ଧତିରେ ଦାୟିତ୍ୱ ସହକାରେ ପରିଚାଳନା କରିବାକୁ ହେବ । ଦୁହିଁଙ୍କ ମଧ୍ୟରେ ଏହି ମତଗତ ବିରୋଧ ବୃଦ୍ଧି ପାଇବାକୁ ଲାଗିଲା । ଜର୍ଜ ନିଜ ମତରେ ଅଟଳ ରହୁଥିଲେ ଓ ସେ ସ୍ୱାଧୀନଚେତା ଥିଲେ । ସେ ନିଜ ମତରୁ ଟଳିଲେ ନାହିଁ । ମାଥର ମତ ତ୍ୟାଗ କରିବାକୁ ଆଦୌ ପ୍ରସ୍ତୁତ ନ ଥିଲେ ।

ଶେଷରେ ଏହି ପ୍ରଶ୍ନର ମୀମାଂସା ପାଇଁ ବୋର୍ଡ଼ର ଡିରେକ୍ଟର-ମାନଙ୍କର ସଭା ବସିଲା । ସେମାନେ ଚେୟାରମାନଙ୍କୁ ସମର୍ଥନ କଲେ ଓ ଜର୍ଜଙ୍କୁ ଛଅମାସର ଛୁଟି ନେବାକୁ କହିଲେ । ଏଥିରେ ଜର୍ଜ ନିତାନ୍ତ କ୍ଷୁବ୍ଧ ଓ ଅପମାନିତ ହୋଇ କମ୍ପାନୀରୁ ବିଦାୟ ନେବାର ଇଚ୍ଛା ପ୍ରକାଶ କଲେ । ମାତ୍ର କମ୍ପାନୀ ତାଙ୍କର ନାମ ବ୍ୟବହାର କରିବାରେ ସେ ଆପତ୍ତି କରିବେ ନାହିଁ ବୋଲି ଜଣାଇ ଦେଲେ ।

ମାର୍ଗାରେଟ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ, "ଇଲେକ୍ଟ୍ରିକ୍ କମ୍ପାନୀରୁ ବିଦାୟ ନେଲେହେଁ ତୁମେ ଏବେ ମଧ୍ୟ ଏୟାରବ୍ରେକ କମ୍ପାନୀ ଓ ଅନ୍ୟାନ୍ୟ ଓ୍ୱେଷ୍ଟିଂହାଉସ କମ୍ପାନୀ ମାନଙ୍କର ପ୍ରେସିଡେଣ୍ଟ ହୋଇ ରହିବ ।"

ଜର୍ଜ ଉତ୍ତର କଲେ, "ସେ କଥା ସତ । କାର୍ଯ୍ୟକ୍ଷେତ୍ରରୁ ବିଦାୟ ଗ୍ରହଣ କରି ଅବସର ନେବା ମୋର ଅଭିପ୍ରାୟ ନୁହେଁ । କିନ୍ତୁ ଯାହା

ଘଟିଗଲା, ସେଥିପାଇଁ ମୁଁ ନିଜକୁ ଅନେକ ପରିମାଣରେ ଅପରାଧୀ ବୋଲି ମନେ କରୁଛି । ହୁଏତ କମ୍ପାନୀକୁ ପରିଚାଳନା କରିବାରେ ମୋର ଆହୁରି ରକ୍ଷଣଶୀଳ ଓ ସାବଧାନ ହେବା······ ।”

ମାର୍ଗାରେଟ ଶାନ୍ତଭାବରେ କହିଲେ, “ମୁଁ ସେଥିରେ ଆଦୌ ବିଶ୍ୱାସ କରେ ନାହିଁ । ତୁମେ ମଧ୍ୟ ବିଶ୍ୱାସ କର ନାହିଁ ବୋଲି ମୁଁ ଜାଣେ । ସେ ଯାହା ହେଉ, ତୁମର ନିଷ୍ଠା ଯୋଗେ କମ୍ପାନୀ ପ୍ରତିଷ୍ଠିତ ହୋଇ ପାରିଥିଲା । ତାର ଅଭିବୃଦ୍ଧି ହୋଇଥିଲା । ତୁମେ ଯେଉଁ ନୀତି ଅନୁସରଣ କରିଥିଲ ତାହା ତୁମର ବିବେକର ବାଣୀ, ଅନ୍ୟ କାହାରି ନୁହେଁ । ତୁମେ ଯେତେବେଳେ ଯାହା ଉଚିତ ମନେ କରିଛ, ସେତେ-ବେଳେ ତାହା ସତ୍ ଉଦ୍ଦେଶ୍ୟ ରଖି କରିଛ, ସେଥିପାଇଁ ଲଜ୍ଜାର କାରଣ ନାହିଁ । ତୁମର ଏହି କାର୍ଯ୍ୟପାଇଁ ମୁଁ ଗୌରବ ଅନୁଭବ କରୁଛି ଓ ସେଥିପାଇଁ ତୁମ ନିକଟରେ ମୁଁ କୃତଜ୍ଞ ।”

ଆବେଗପୂର୍ଣ୍ଣ ହୃଦୟରେ ଜର୍ଜ ମାର୍ଗାରେଟଙ୍କ ହାତ ଚାପି ଧରି କହିଲେ, “ମାର୍ଗାରେଟ, ମୋର ମନେହୁଏ, ମୁଁ ଠିକ୍ କରିଛି କି ଭୁଲ କରିଛି, ତାହା କେବଳ ଭବିଷ୍ୟତର ଇତିହାସ କହିପାରିବ ।”

ମାର୍ଗାରେଟଙ୍କ ଅନୁରୋଧରେ ଜର୍ଜ ପୁନରାୟ କାର୍ଯ୍ୟ ଆରମ୍ଭ କରିବା ପୂର୍ବରୁ ଅଳ୍ପଦିନର ଛୁଟି ନେଇ ନ୍ୟୁୟର୍କରେ ରହିବାକୁ ସ୍ୱୀକୃତ ହେଲେ । ପତିପତ୍ନୀ ଦୁହେଁ ନ୍ୟୁୟର୍କରେ ଏକ ସପ୍ତାହ ଅତିବାହିତ କଲେ । ସେତେବେଳକୁ ପୁଅ ଜର୍ଜ ତାର ଇଞ୍ଜିନିଅରିଙ୍ଗ ଶିକ୍ଷା ସମାପ୍ତ କରି ଏୟାରବ୍ରେକ କମ୍ପାନୀରେ କାର୍ଯ୍ୟ କରୁଥିଲା । ଏଥି ମଧ୍ୟରେ ଭାଓଲେଟ ନାମ୍ନୀ ଏକ ଇଂରେଜ ଯୁବତୀ ସହିତ ତାହାର ବିବାହ ହୋଇ ଯାଇଥିଲା । ପୁଅ ଓ ପୁତ୍ରବଧୂ ମଧ୍ୟ ସେମାନଙ୍କ ସଙ୍ଗରେ ଏହି ସମୟରେ ରହିଥିଲେ ।

ପିଟସବର୍ଗକୁ ଫେରିଆସି ଜର୍ଜ ପୁନରାୟ ତାଙ୍କ ପୂର୍ବନିର୍ଦ୍ଦିଷ୍ଟ କାର୍ଯ୍ୟରେ ମନୋନିବେଶ କଲେ । ପ୍ରତ୍ୟହ ସାଢ଼େ ଛଅଟା ବାଜିଲା ବେଳକୁ ସେ ଶଯ୍ୟା ତ୍ୟାଗକରି ଆଠଟା ବେଳକୁ ନିଜ ଡେକ୍ସ ପାଖରେ ବସି କାର୍ଯ୍ୟରେ ଲାଗିଯାଉଥିଲେ ।

ଦିନେ ରବିବାର ଅପରବେଳା ମାର୍ଗାରେଟ ସେମାନଙ୍କ ମୋଟର ଗାଡ଼ିରେ ବସି ଟିକିଏ ବୁଲି ଆସିବାର ଇଚ୍ଛା ପ୍ରକାଶ କଲେ । ଫ୍ରେଞ୍ଚ ଓ୍ୱେଷ୍ଟିଙ୍ଗହାଉସ କାରଖାନା ପକ୍ଷରୁ ଏହି ମୋଟରଗାଡ଼ିଟି ଜର୍ଜଙ୍କୁ ଉପହାର ଦିଆଯାଇଥିଲା । କିନ୍ତୁ ସେ ନିଜେ ଏହି ଗାଡ଼ି ବ୍ୟବହାର କରିବାକୁ ଭଲ ପାଉ ନଥିଲେ । ଚାଲିଲାବେଳେ ଏହା ଖୁବ୍ ଶବ୍ଦ କରୁଥିଲା; ଗାଡିଭିତରେ ବସିବା ଲୋକ ଟଳମଳ ହେଉଥିଲେ ଓ ଏଥିରୁ ପ୍ରଚୁର ଧୂଆଁ ବାହାରୁଥିଲା । ରେଲରେ ବା ଘୋଡ଼ାଗାଡ଼ିରେ ଯିବାକୁ ସେ ଅଧିକ ସୁଖକର ମନେ କରୁଥିଲେ । କିନ୍ତୁ ମାର୍ଗାରେଟ ଏହି 'ଅଶ୍ୱହୀନ ଗାଡିରେ ଯିବାକୁ ଭଲ ପାଉଥିଲେ । ତେଣୁ ଅନିଚ୍ଛାସତ୍ତ୍ୱେ ଜର୍ଜ ମାର୍ଗାରେଟଙ୍କ ପ୍ରସ୍ତାବରେ ସ୍ୱୀକୃତ ହେଲେ ।

ମୋଟରଗାଡ଼ିଟି ଦୋହଲି ଦୋହଲି ଡେଇଁ ଡେଇଁ ମଇଳାପୂର୍ଣ୍ଣ ସରୁ ରାସ୍ତା ଉପରେ ଚାଲୁଥାଏ । ମାର୍ଗାରେଟ ଛୋଟ ପିଲାଟିଏ ପରି ଆନନ୍ଦରେ ସ୍ୱାମୀଙ୍କୁ ଧରି ବସିଥାନ୍ତି । ସାମନା ଆସନରେ ବସି ଡ୍ରାଇଭର ବିରକ୍ତ ହୋଇ ଏଣୁ ତେଣୁ କରି ଅସମାନ ରାସ୍ତା ଉପରେ ଗାଡି ଚଳାଉଥାଏ ।

ଆଗରେ ଗୋଟାଏ ଢିପ ଥିଲା । ହଠାତ୍ ଗାଡ଼ିର ଗୋଟାଏ ଚକ ସେହି ଢିପ ଉପରେ ପିଟି ହୋଇଗଲା । ଜର୍ଜ ତାଙ୍କ ଆସନରୁ ଛିଟିକି ଯିବାରୁ ଗାଡ଼ିର ଛାତରେ ତାଙ୍କର ମୁଣ୍ଡ ପିଟିହୋଇଗଲା । ଡ୍ରାଇଭର ଗାଡ଼ି ବନ୍ଦ କରିଦେଲା ।

ମାର୍ଗାରେଟ ଉଦ୍‌ବିଗ୍ନ ହୋଇ ପଚାରିଲେ, "ତୁମର କିଛି ହୋଇନାହିଁ ତ ?"

"ସେପରି ବିଶେଷ କିଛି ହୋଇନାହିଁ ।" ଜର୍ଜ ମୁଣ୍ଡରେ ହାତ ମାରି ମାରି କହିଲେ, "ସାମାନ୍ୟ ଟିକିଏ ଛିଡି ଯାଇଛି । କିନ୍ତୁ ରବିବାର ଦିନ ଅପରବେଳାଟି ଏହା ଅପେକ୍ଷା ବେଶ୍ ଆରାମରେ କଟା ଯାଇପାରିଥାନ୍ତା ।"

ଡ୍ରାଇଭର ଓହ୍ଲାଇ ପଡି ଗାଡିଟିକୁ ପରୀକ୍ଷା କଲା । ସେ ଚେସିସ୍‌ର ତଳେ ପଶି ଭଲକରି ଦେଖି କହିଲା, "ମହାଶୟ, ଗାଡ଼ିର କିଛି କ୍ଷତି ହୋଇନାହିଁ ।"

ଜର୍ଜ ପୁଣି ମୁଣ୍ଡର ଆଘାତ ଉପରେ ହାତ ମାରୁ ମାରୁ କହିଲେ, “ବଡ଼ ଦୁର୍ଭାଗ୍ୟର କଥା ଯେ ଗାଡ଼ିର କିଛି କ୍ଷତି ହୋଇନାହିଁ । ଏହି ଯନ୍ତ୍ରଣା ଦାୟକ ଗାଡ଼ିରେ ଆଉ ଯିବାକୁ ପଡ଼ି ନ ଥିଲେ ଭଲ ହୋଇ-ଥାଆନ୍ତା ।”

ଗାଡ଼ି ପୁଣି ଚାଲିଲା । ଜର୍ଜ ମନେ ମନେ ହସିବାକୁ ଲାଗିଲେ । ମାର୍ଗାରେଟ ତାହା ଲକ୍ଷ୍ୟ କରି ଏଥିର କାରଣ ପଚାରିବାରୁ ସେ କହିଲେ, “ଆଜି ଥରେ ଗାଡ଼ିରେ ଯିବାବେଳେ ମୁଁ ଏହିପରି ଝୁଡ଼ୁକ ପଡ଼ିଥିଲି । ତାହା ଫଳରେ ମୁଁ ଲାଇନ୍‌ଚ୍ୟୁତ ରେଲଡବାକୁ ଲାଇନକୁ ଉଠାଇବାର ଯନ୍ତ୍ର ଆବିଷ୍କାର କରିଥିଲି । ସେ ହେଉଛି ପଞ୍ଚାଶ ବର୍ଷ ତଳର କଥା । ଦୁଃଖର ବିଷୟ, ଏଥର ସେପରି କିଛି ଆବିଷ୍କାର କରି ପାରିବି ନାହିଁ ।”

ମାର୍ଗାରେଟ ଟିକିଏ ହସି କହିଲେ, “ମୋର ମନେ ହୁଏ, ଏଥର ମଧ୍ୟ ତୁମେ ଗୋଟାଏ କିଛି ନୂଆ ଆବିଷ୍କାର କରି ପାରିବ ।”

ଜର୍ଜ କହିଲେ, ସେପରି କିଛି ଆଶା ନାହିଁ । ମୋର ଏ ଅଶ୍ୱହୀନ ଗାଡ଼ି' ପ୍ରତି ଆଦୌ ମମତା ନାହିଁ । ତେବେ ମୁଁ ଏତିକି କହିପାରେଁ ଯେ ଯଦି କେହି ମୋଟର ଗାଡ଼ିରେ ଆରାମରେ ଯିବାପାଇଁ କିଛି ଆବିଷ୍କାର କରେ, ତେବେ ସେ ମାନବଜାତିର ଚିରକୃତଜ୍ଞତାର ପାତ୍ର ହୋଇ ରହିବ ।

“ତାହାହେଲେ ତୁମେ ସେପରି ଆବିଷ୍କାର କରୁନାହଁ କାହିଁକି ?”

ଏହି ପ୍ରସ୍ତାବଟିକୁ ଜର୍ଜ ହସରେ ଉଡ଼ାଇ ଦେଲେ ।

କିନ୍ତୁ ପରଦିନ ସନ୍ଧ୍ୟାରେ କୌତୂହଳବଶତଃ ଜର୍ଜ ଗାରେଜକୁ ଯାଇ ଗାଡ଼ିଟିକୁ ଉତ୍ତମରୂପେ ପରୀକ୍ଷା କରି ଦେଖିବାକୁ ବାହାରିଲେ । ସେ ଓଭରଅଲଟି ପିନ୍ଧି ଗାଡ଼ିର ତଳେ ପଶିଲେ । ଭଲ କରି ଦେଖିବାପାଇଁ ଗୋଟିଏ ଆଲୁଅ ମଧ୍ୟ ସଙ୍ଗରେ ନେଲେ । ମୋଟରଗାଡ଼ିର କଳକବ୍‌ଜାକୁ ସେ ଜୀବନରେ ଏଇ ପ୍ରଥମଥରପାଇଁ ପରୀକ୍ଷା କରି ଦେଖିଲେ । ସେ ହଠାତ୍ ବୁଝି ପାରିଲେ ଯେ ଗାଡ଼ିର ଭାର ବହନ ପଦ୍ଧତି ନିତାନ୍ତ

ଅନୁନ୍ନତ । କେତେଗୁଡ଼ିଏ ଲମ୍ବ ଇସ୍ପାତ୍ ଛଡ଼ ଏକାଠି ବନ୍ଧା ହୋଇ ସ୍ପ୍ରିଙ୍ଗ ଭଳି ଗାଡ଼ିକୁ ଧରି ରଖିଛି । ଦେଖିବାକୁ ଗଲେ ଘୋଡ଼ାଗାଡ଼ିର ସ୍ପ୍ରିଙ୍ଗଠାରୁ ଏହାର ବିଶେଷ କିଛି ପ୍ରଭେଦ ନ ଥିଲା ।

ସେ ମନେ ମନେ ବିଚାର କଲେ ଯେ ଧୀର ଗତିରେ ଚାଲୁଥିବା ଘୋଡ଼ାଗାଡ଼ି ପକ୍ଷରେ ଏ ପ୍ରକାର ଧାତବ ସ୍ପ୍ରିଙ୍ଗ ଯଥେଷ୍ଟ ହୋଇପାରେ; କିନ୍ତୁ ଉଚ୍ଚନୀଚ ରାସ୍ତା ଉପରେ ଦ୍ରୁତଗତିରେ ଚାଲୁଥିବା ମୋଟର ଗାଡ଼ି ପକ୍ଷରେ ତାହା କଦାପି ଯଥେଷ୍ଟ ହୋଇ ନ ପାରେ । ତେବେ ଏ କ୍ଷେତ୍ରରେ ସଙ୍କୁଚିତ ବାୟୁର ସାହାଯ୍ୟ ନିଆ ଯାଇ ପାରିବ ନାହିଁ କାହିଁକି ?

ଜର୍ଜ ଗ୍ୟାରେଜରୁ ଘରକୁ ଫେରି ଆସିଲେ । ସେଦିନ ରାତିବେଳାଟି ସେ ଡେସ୍କପାଖରେ ବସି କାଗଜ ଉପରେ ଗୁଡ଼ିଏ ନକ୍ସା ଆଙ୍କିବାରେ କଟାଇ ଦେଲେ । "କଅଣ କରୁଛ" ବୋଲି ମାର୍ଗାରେଟ ପଚାରିବାରୁ ସେ ଉତ୍ତର ଦେଲେ, "ତୁମେ ମୋତେ ଯେଉଁ ସମସ୍ୟାଟି ଦେଇଛ, ତାର ସମାଧାନର ଚେଷ୍ଟା କରୁଛି ।" ତାହାପରେ ବିଷୟଟି ବୁଝାଇବାକୁ ଯାଇ ସେ କହିଲେ, "ମୋଟରଗାଡ଼ିରେ ଦରକାର ହେଉଛି, ଗୋଟାଏ କୌଣସି ଉପାୟ—ଯେପରିକି ଧାତବ ସ୍ପ୍ରିଙ୍ଗ ଧକ୍‌କାକୁ ସହଜରେ ବହନ କରି ନେଇ ପାରିବ । ଏହାକୁ ସ୍ପ୍ରିଙ୍ଗର ଦ୍ୱିତୀୟ ସ୍ତର କହିପାର ।"

"ତାହାହେଲେ ତ ଆଉ ଏକ ସାରି ସ୍ପ୍ରିଙ୍ଗ ବସାଇ ଦେଇପାର ।"

ଜର୍ଜ ହସି ହସି କହିଲେ, "ସେଥିରେ କାମ ଚଳିବ ନାହିଁ । ଯେତେ ସଂଖ୍ୟାରେ ସ୍ପ୍ରିଙ୍ଗ ଲଗାଅ, ସେ ଯେତେ ମଜଭୁତ ହେଉ ନା କାହିଁକି, ଗାଡ଼ି ତ ଡେଇଁ ଡେଇଁ ଚାଲୁଥିବ । ଗୋଟାଏ କିଛି ନୂଆ ଉପାୟ ବାହାର କରିବାକୁ ପଡ଼ିବ ।"

"କି ରକମ ଉପାୟ ? କିଛି ଭାବିଛ କି ?" ମାର୍ଗାରେଟ ପଚାରିଲେ ।

"ତୁମେ ଶୁଣିଲେ ହୁଏତ ବିଶ୍ୱାସ କରିବ ନାହିଁ । ମୁଁ ଭାବୁଛି ଯେ ବହୁକାଳ ପୂର୍ବେ ରେଲଗାଡ଼ିର ବ୍ରେକ ପାଇଁ ଯେଉଁ ବାୟୁର ଆଶ୍ରୟ ନେଇଥିଲି, ଏଥିପାଇଁ ମଧ୍ୟ ତାହାରି ଅଶ୍ରୟ ନେବାକୁ ହେବ ।"

"କଅଣ ? ବାୟୁ ? ମୁଁ ତ ତୁମ କଥା କିଛି ବୁଝି ପାରୁନାହିଁ ।"

ଜର୍ଜ ଆଶ୍ୱାସନା ଦେଇ କହିଲେ, ଟିକିଏ ଅପେକ୍ଷା କର । ମୁଁ ନକ୍ସାଟା କରିସାରେ । ସେତେବେଳେ ବୁଝି ପାରିବ ।"

ପରଦିନ ସନ୍ଧ୍ୟା ପୂର୍ବରୁ ଜର୍ଜ ଅତି ସହଜ ଉପାୟରେ ସମସ୍ୟାଟିର ସମାଧାନ କରି ଦେଇଥିଲେ । ସେ ଦୁଇଟି ସିଲିଣ୍ଡର ନକ୍ସା କରିଥିଲେ । ସେଥିରୁ ଗୋଟିଏ ଚମଡ଼ାରେ ନିର୍ମିତ ହେବ ଓ ଅନ୍ୟ ସିଲିଣ୍ଡର ମଧ୍ୟରେ ପ୍ରବେଶ କରିପାରିବ । ଯୋଡ଼ା ଅଂଶକୁ ବାୟୁଶୂନ୍ୟ କରିବା ପାଇଁ ସେ ଏକ ପ୍ରକାର ଆଭ୍ୟନ୍ତରୀଣ ଚର୍ମର ବ୍ୟବସ୍ଥା କରିଥିଲେ, ଯେପରିକି ତାହା ମଧ୍ୟକୁ ତେଲ ପ୍ରବେଶ କରି ପାରିବ ।

ସେ ଯେଉଁ କୌଶଳ ବାହାର କଲେ, ତାହା ସଙ୍କୋଚିତ ବାୟୁର ଏକ ପ୍ରକାର ମୋଟାଗଦି । ଏହା ଧାତବ ସ୍ପ୍ରିଙ୍ଗ ଅପେକ୍ଷା ଅଧିକ ଧକ୍କା ସହ୍ୟ କରି ପାରିବ । ଜର୍ଜ ସ୍ୱଭାବସୁଲଭ ଆତ୍ମପ୍ରତ୍ୟୟ ସହକାରେ କହିଲେ, "ମୋର ବିଶ୍ୱାସ, ଏହି କୌଶଳଟି କାର୍ଯ୍ୟକାରୀ ହୋଇ ପାରିବ । ନ ହେବାର କିଛି କାରଣ ଦେଖି ପାରୁନାହିଁ । ତାହାହେଲେ ଦେଖିବ ଯେ ପ୍ରତ୍ୟେକ ମୋଟରଗାଡ଼ିରେ ଏହି କୌଶଳ ବ୍ୟବହୃତ ହେବ । ଏହି ସରଞ୍ଜାମଟି ସହଜ ଓ ଶସ୍ତା ହେବ; ଗାଡ଼ିରେ ଲଗାଇବାରେ କିମ୍ବା ବଦଳାଇବାରେ କିଛି କଷ୍ଟ ହେବନାହିଁ ।"

ଜର୍ଜଙ୍କ କାରିଗରମାନେ ନକ୍ସା ଅନୁସାରେ ଏୟାର ସ୍ପ୍ରିଙ୍ଗ ବା ଶକ୍ ଆବଜର୍ବରର ଏକ ପରୀକ୍ଷାମୂଳକ ମଡେଲ୍ ତିଆରି କରିଦେଲେ । ସିଲିଣ୍ଡରଗୁଡ଼ିକ ନେଇ ଜର୍ଜ ନିଜ ଗାଡ଼ିରେ ଲଗାଇଲେ । ତାହାପରେ ଦିନେ ମେ ମାସର ଏକ ଉଜ୍ଜ୍ୱଳ ପ୍ରଭାତରେ ମାର୍ଗରେଟ, ପୁତ୍ର ଓ ପୁତ୍ରବଧୂଙ୍କୁ ସଙ୍ଗରେ ନେଇ ଜର୍ଜ ସେହି ଗାଡ଼ିରେ ବୁଲିବାକୁ ବାହାରିଲେ । ଏହି ଏୟାର ସ୍ପ୍ରିଙ୍ଗ କିପରି କାର୍ଯ୍ୟକାରୀ ହେଉଅଛି, ତାହା ପରୀକ୍ଷା କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ସେ ଡ୍ରାଇଭରକୁ କହିଲେ, "ସବୁଠାରୁ କଦର୍ଯ୍ୟ ରାସ୍ତା ଉପରେ ଗାଡ଼ି ଚଳାଅ ।"

ଗୋଟିଏ ଖୁବ୍ ଆବଡ଼ା ଖାବଡ଼ା ଧୂଳିମୟ ରାସ୍ତା ଉପରେ ବିକଟ ଶବ୍ଦ କରି ଗାଡ଼ି ଚାଲିଲା । ମାର୍ଗାରେଟ ଆଶ୍ଚର୍ଯ୍ୟରେ ସ୍ୱାମୀଙ୍କୁ ପ୍ରଶ୍ନ କହିଲେ, "ତୁମେ ଅଦ୍ଭୁତ କାର୍ଯ୍ୟ କରିଛ । ଗାଡ଼ିରେ ବସିଛୁ ବୋଲି ଆଦୌ ଜଣା ପଡ଼ୁନାହିଁ ।"

ବାସ୍ତବରେ ଗାଡ଼ିଟି ଏପରି ମସୃଣ ଗତିରେ ଚାଲୁଥିଲା ଯେ ସେମାନେ ଗାଡ଼ିର ଉଠିବା ପଡ଼ିବା ଆଦୌ ଅନୁଭବ କରିପାରୁ ନଥିଲେ । ଏପରିକି ଡ୍ରାଇଭର ଜର୍ଜଙ୍କୁ ଲକ୍ଷ୍ୟ କରି କହିଲା, "ଆପଣଙ୍କ ଶକ୍ ଆବଜର୍ବର ଯୋଗେ ଗାଡ଼ି ଚଳାଇବାକୁ ଭାରି ଆରାମ ଲାଗୁଛି । ପୂର୍ବେ ଏଭଳି ଖରାପ ରାସ୍ତାରେ ଗାଡ଼ିନେବାକୁ ପ୍ରାଣାନ୍ତକ କଷ୍ଟ ହେଉଥିଲା ।"

ପୁତ୍ର ଜର୍ଜ ଉତ୍ସାହ ପ୍ରକାଶ କରି କହିଲେ, "ବାପା, ମୁଁ ଦେଖୁଛି ଯେ ଏହି ଏୟାରସ୍ପ୍ରିଙ୍ଗକୁ ବ୍ୟବସାୟ ସୂତ୍ରରେ ଉତ୍ପାଦନ କଲେ, ବେଶ ଲାଭର ସମ୍ଭାବନା ଅଛି ।"

ବୃଦ୍ଧ ଜର୍ଜ ବିସ୍ମୟରେ କହିଲେ, "ଏପରି ସମ୍ଭାବନା ଅଛି ବୋଲି ତୁ ମନେ କରୁଛୁ ?"

"ହଁ, ନିଶ୍ଚୟ ଅଛି ।"

୧୯୧୦ ମସିହାରେ ଓ୍ୱେଷ୍ଟିଙ୍ଗହାଉସ ଏୟାରସ୍ପ୍ରିଙ୍ଗ କମ୍ପାନୀ ପ୍ରତିଷ୍ଠିତ ହେଲା । ବୃଦ୍ଧ ଜର୍ଜ ଓ ତାଙ୍କ ପୁତ୍ର ଯଥାକ୍ରମେ ଏହି କମ୍ପାନୀର ପ୍ରେସିଡେଣ୍ଟ ଓ ଭାଇସପ୍ରେସିଡେଣ୍ଟ ରହିଲେ । ଅଳ୍ପକାଳ ମଧ୍ୟରେ ଏହି ଯୁଗାନ୍ତକାରୀ ଯନ୍ତ୍ରାଂଶଟିର ଉତ୍ପାଦନ ଆରମ୍ଭ ହେଲା । ସାମାନ୍ୟ କେତୋଟି ବର୍ଷ ମଧ୍ୟରେ ଏୟାରସ୍ପ୍ରିଙ୍ଗ ଏପରି ଲୋକପ୍ରିୟ ହୋଇ ଉଠିଲା ଯେ ପୁତ୍ର ଜର୍ଜର ଭବିଷ୍ୟଦ୍ ବାଣୀ ସଫଳ ହେଲା; ପ୍ରାୟ ପ୍ରତ୍ୟେକ ମୋଟର ଗାଡ଼ିରେ ଏୟାରସ୍ପ୍ରିଙ୍ଗ ସଂଯୁକ୍ତ ହେଲା ।

୧୯୧୩ ମସିହାର ଗ୍ରୀଷ୍ମ ଋତୁଟି ଜର୍ଜ ମାର୍ଗାରେଟଙ୍କ ସହିତ ମାସାଚୁସେଟସର ଲେନକ୍ସ ସହରରେ ଅତିବାହିତ କଲେ । ଦିନେ

ଅପରାହ୍ନବେଳା ସେ ନିକଟବର୍ତ୍ତୀ ଗୋଟିଏ ହ୍ରଦରେ ମାଛ ଧରିବାକୁ ବାହାରିଲେ । ହ୍ରଦ କୂଳରେ ପହଞ୍ଚି ଦେଖିଲେ ଯେ ସାଧାରଣତଃ ସେ ଯେଉଁ ନୌକାଟି ବ୍ୟବହାର କରନ୍ତି ସେଇଟି ସେଠାରେ ନାହିଁ । ତାହା ପରିବର୍ତ୍ତରେ ଆଉ ଗୋଟିଏ ନୌକା ସେଠାରେ ରହିଛି । ତାଙ୍କର ମନେ ପଡ଼ିଲା ଯେ ନୌକାଟି ମରାମତି ହେବ ବୋଲି ଜଣେ କର୍ମଚାରୀ କହିଥିଲା । ସେ ଧରିନେଲେ ଯେ ତାଙ୍କର ନୌକାଟି ମରାମତି ପାଇଁ ଯାଇଛି ଓ ତାଙ୍କର ବ୍ୟବହାର ପାଇଁ ଏହି ନୌକାଟି ରଖା ଯାଇଅଛି । ସେ ଏହା ଉପରକୁ ଉଠି ବସିଗଲା କ୍ଷଣି ଏଥିରେ ଜଳ ପ୍ରବେଶ କରିବାକୁ ଲାଗିଲା । ମୂହୂର୍ତ୍ତକ ମଧ୍ୟରେ ସେ ଏକବାରେ ଓଦା ହୋଇଗଲେ । ସେ କୌଣସି-ମତେ ବୁଡ଼ି ଯାଉଥିବା ନୌକାରୁ ଓହ୍ଲାଇ ପଡ଼ି ସେହି ଓଦା ପୋଷାକରେ ଘରକୁ ଫେରିଗଲେ ।

ସେହି ଦିନ ରାତିରେ ତାଙ୍କୁ ସର୍ଦ୍ଦି ଧରି କାଶ ହେଲା । ମାର୍ଗାରେଟ ତାଙ୍କୁ ବିଛଣାରେ ଶୁଆଇ ରଖିଲେ । ଡାକ୍ତରଙ୍କୁ ଡକାଇବାରୁ ସେ କିଛି ଔଷଧ ଦେଇ ପୂର୍ଣ୍ଣ ବିଶ୍ରାମ ନେବାକୁ କହିଲେ । ଡାକ୍ତର ମାର୍ଗାରେଟଙ୍କୁ କହିଲେ, "ଥଣ୍ଡା ଲାଗିବା ଛଡ଼ା ତାଙ୍କ ଗୁଣ୍ଡିରେ ଆଘାତ ଲାଗିଛି ବୋଲି ମୋର ସନ୍ଦେହ ହେଉଛି । ଆଉ ଗୋଟିଏ କଥା, ବୟସ କମ ନୁହେଁ । ସତଷଠି ବର୍ଷ ହୋଇ ଗଲାଣି ।"

ରୋଗ ଗୁରୁତର ଆକାର ଧାରଣ କଲା । ଅନେକ ସପ୍ତାହ ପର୍ଯ୍ୟନ୍ତ ଜର୍ଜ ଶଯ୍ୟାଶାୟୀ ହୋଇ ରହିଲେ । ଶେଷରେ ସେ ରୋଗମୁକ୍ତ ହେଲେ ସତ୍ୟ; କିନ୍ତୁ ଏତେ ଦୁର୍ବଳ ହୋଇ ପଡ଼ିଲେ ଯେ ଡାକ୍ତର ଚାଲବୁଲ କରିବାକୁ ତାଙ୍କୁ ବାରଣ କରିଦେଲେ । ଘର ଭିତରେ ଏପାଖ ସେପାଖ ଯିବା ଆସିବା ପାଇଁ ଚକଲଗା ଚୌକିର ବ୍ୟବସ୍ଥା କରାଗଲା ।

ସେ ଏପରି ଦୁର୍ବଳ ହୋଇ ପଡ଼ିଥିଲେ ଯେ ଅନେକ ମାସ ପର୍ଯ୍ୟନ୍ତ ସେ ସାମାନ୍ୟ କେତେ ପାହୁଣ୍ଡ ମଧ୍ୟ ଚାଲିବାକୁ କଷ୍ଟବୋଧ କରୁଥିଲେ । ବିଶେଷଜ୍ଞଙ୍କର ପରାମର୍ଶ ନେବାପାଇଁ ସ୍ୱାମୀଙ୍କୁ ନ୍ୟୁୟର୍କ ନେବା ଉଦ୍ଦେଶ୍ୟରେ ମାର୍ଗାରେଟ ସେଠାରେ ଗୋଟିଏ ହୋଟେଲର କେତେକ କୋଠରୀ ଘର ଭଡ଼ା ନେଲେ ।

୧୯୧୪ ମସିହା ମାର୍ଚ୍ଚ ମାସ ୧୨ ତାରିଖର ସକାଳ । ଜର୍ଜ ତାଙ୍କ ପରିଚାରିକାଙ୍କୁ କହିଲେ; "ମୋତେ ଚଉକିରେ ବସାଇ ବାହାର ଘରକୁ ନେଇଯାଅ । ତାହାହେଲେ ସୂର୍ଯ୍ୟ କିରଣରେ ଟିକିଏ ଭଲ ଲାଗିପାରେ । ଅନ୍ୟ ଦିନ ଅପେକ୍ଷା ଆଜି ମୁଁ ବେଶି କ୍ଳାନ୍ତ ଅନୁଭବ କରୁଅଛି । ଟିକିଏ ଶୋଇବାର ଚେଷ୍ଟା କରିବି ।" ପରିଚାରିକା ତାଙ୍କ ଦେହ ଉପରେ ଗୋଟିଏ କମ୍ବଳ ଘୋଡ଼ାଇ ଦେଇ ନିଜ କାର୍ଯ୍ୟରେ ଚାଲିଗଲା ।

କେତେକ ମିନିଟ ପରେ ମାର୍ଗାରେଟ ଗୃହ ମଧ୍ୟରେ ପ୍ରବେଶ କରି ଦେଖିଲେ ଯେ ସ୍ୱାମୀଙ୍କର ଚକ୍ଷୁ ମୁଦ୍ରିତ । ମୁଖମଣ୍ଡଳରେ ଶାନ୍ତ ଓ ସନ୍ତୋଷର ଦୀପ୍ତି ।

ସେ ଧୀର ସ୍ୱରରେ ପଚାରିଲେ, "ଜର୍ଜ, ଚେଇଁ ରହିଛ କି ?"

କୌଣସି ଉତ୍ତର ମିଳିଲା ନାହିଁ ।

ଏହିପରି ଅଠଷଠି ବର୍ଷ ବୟସରେ ଜର୍ଜ ଓ୍ୱେଷ୍ଟିଂହାଉସ ମୃତ୍ୟୁ ବରଣ କଲେ ।

କିଛି ଦିନ ପରେ ଭର୍ଜିନିଆର ଆର୍ଲିଂଟନସ୍ଥିତ ସମାଧିକ୍ଷେତ୍ରରେ ତାଙ୍କର ମୃତ ଦେହ ଯଥାବିଧି ସମାହିତ ହେଲା । ଏହିଠାରେ ଆମେରିକାର କେତେକ ବୀର ସୈନିକ ତଥା କୃତି ସନ୍ତାନ ଚିରନିଦ୍ରାରେ ଶାୟିତ । ସମଗ୍ର ଜାତି ଜର୍ଜଙ୍କ ମୃତ୍ୟୁରେ ଶୋକ ପ୍ରକାଶ କଲା ।

ମୃତ୍ୟୁପରେ ଜର୍ଜ ଓ୍ୱେଷ୍ଟିଂହାଉସ ଜଣେ ପ୍ରସିଦ୍ଧ ଉଦ୍ଭାବକ ଓ ଶିଳ୍ପଯୁଗର ପଥପ୍ରଦର୍ଶକରୂପେ ଇତିହାସରେ ସମ୍ମାନିତ ହୋଇ ଆସି ଅଛନ୍ତି । ନାନା ପ୍ରକାରେ ତାଙ୍କୁ ସମ୍ମାନ ପ୍ରଦର୍ଶନ କରାଯାଇଅଛି । ସେ ଯେଉଁ କମ୍ପାନୀଗୁଡ଼ିକ ପ୍ରତିଷ୍ଠା କରିଥିଲେ, ସେଗୁଡ଼ିକରେ ତାଙ୍କର ନାମ ସଂଯୁକ୍ତ ହୋଇ ରହିଅଛି । ୧୯୩୦ ମସିହାରେ ପିଟସବର୍ଗର ସ୍କେନଲି ପାର୍କରେ ତାଙ୍କ ଉଦ୍ଦେଶ୍ୟରେ ଏକ ବିରାଟ ସ୍ମୃତିସ୍ତମ୍ଭ ଉନ୍ମୋଚିତ ହୋଇ-ଥିଲା । ଏହି ସ୍ମୃତିସ୍ତମ୍ଭର ବ୍ୟୟ ଓ୍ୱେଷ୍ଟିଂହାଉସ କମ୍ପାନୀମାନଙ୍କରେ ନିଯୁକ୍ତ ଷାଠିଏ ହଜାର କର୍ମଚାରୀଙ୍କ ସ୍ୱେଚ୍ଛାକୃତ ଦାନଦ୍ୱାରା ସଂଗୃହୀତ

ହୋଇଥିଲା । ନ୍ୟୁୟର୍କ ବିଶ୍ୱବିଦ୍ୟାଳୟର ଗୋଟିଏ ହଲରେ ଆମେରିକାର ବିଖ୍ୟାତ ମହାପୁରୁଷମାନଙ୍କର ମର୍ମର ପ୍ରସ୍ତର ନିର୍ମିତ ଆବକ୍ଷ ପ୍ରତିମୂର୍ତ୍ତି ରକ୍ଷିତ ହୋଇଅଛି । ୧୯୫୬ ମସିହାରେ ଜର୍ଜ ଓୟେଷ୍ଟିଙ୍ଗହାଉସଙ୍କର ପ୍ରତିମୂର୍ତ୍ତି ସେଥିରେ ସ୍ଥାନ ପାଇଅଛି ।

ତାଙ୍କ ସମ୍ବନ୍ଧରେ ଅନ୍ୟମାନେ ଯାହା କହି ଯାଇଅଛନ୍ତି, ତହିଁରୁ ମଧ୍ୟ ତାଙ୍କ ଆତ୍ମାର ବାଣୀ ଚିରକାଳ ପ୍ରକାଶ ପାଉଥିବ । ବିଦ୍ୟୁତ୍‌ର ଯାଦୁକର ନିକୋଲା ଟେସଲା କହିଥିଲେ, "ଯେଉଁମାନେ ବିବେକ ସହିତ ଅନ୍ୟର ବୁଦ୍ଧିମତ୍ତାକୁ ସମ୍ମାନ ପ୍ରଦର୍ଶନ କରନ୍ତି, ଅନ୍ୟର ଉଦ୍ଭାବନକୁ ବ୍ୟବହାର କରିବା ପୂର୍ବରୁ ନ୍ୟାଯ୍ୟପର ଭାବରେ ଉପଯୁକ୍ତ ମୂଲ୍ୟ ଦେଇ ଥାନ୍ତି, ସେମାନଙ୍କର ସଂଖ୍ୟା ଅତି ନଗଣ୍ୟ । ଜର୍ଜ ଓୟେଷ୍ଟିଙ୍ଗହାଉସ ସେହି ଅଳ୍ପ ସଂଖ୍ୟକ ଲୋକମାନଙ୍କ ମଧ୍ୟରୁ ଜଣେ ।"

ସାମୁଏଲ ଗମ୍ପର୍ସ ଜଣେ ପ୍ରସିଦ୍ଧ ଶ୍ରମିକ ନେତା ଓ ସେ ଆମେରିକାର ଶ୍ରମିକ ଫେଡ଼େରେଶନର ପ୍ରତିଷ୍ଠାତା । ଜର୍ଜ ଓୟେଷ୍ଟିଙ୍ଗହାଉସଙ୍କ ସମ୍ବନ୍ଧରେ ସେ କହିଥିଲେ, "ଯଦି ମାଲିକମାନେ ନିଜର ଶ୍ରମିକମାନଙ୍କ ପ୍ରତି ଜର୍ଜ ଓୟେଷ୍ଟିଙ୍ଗହାଉସଙ୍କ ଭଳି ସଦୟ ବ୍ୟବହାର ପ୍ରଦର୍ଶନ କରୁଥାଆନ୍ତେ ତେବେ ଆମର ଏହି ଫେଡ଼େରେଶନର କୌଣସି ଆବଶ୍ୟକତା ରହନ୍ତା ନାହିଁ ।"

ସଂକ୍ଷେପରେ କୁହାଯାଇପାରେ ଯେ ପୃଥିବୀର ଯେଉଁସବୁ କଳ୍ପନା-ପ୍ରବଣ ବ୍ୟକ୍ତି ମାନବଜାତିର ଭବିଷ୍ୟତ ବଂଶଧରମାନଙ୍କର ଜୀବନଯାତ୍ରା ପଦ୍ଧତିକୁ ଉନ୍ନତ କରିବାହିଁ ଜୀବନର ଲକ୍ଷ୍ୟ ବୋଲି ମନେ କରନ୍ତି, ସେମାନଙ୍କ ହୃଦୟରେ ଜର୍ଜ ଓୟେଷ୍ଟିଙ୍ଗହାଉସଙ୍କର ଆତ୍ମା ଚିରକାଳ ବିଦ୍ୟମାନ ରହିଥିବ ।

— * ସମାପ୍ତ * —

# ଉଦ୍ଭାବନର ଯାଦୁକର : ଜର୍ଜ ଓ୍ୱେଷ୍ଟିଂହାଉ

ମୂଳରଚନା : **ଆଇ. ଇ. ଲେଭିନ୍**

ଅନୁବାଦ : ଅଧ୍ୟାପକ **ଶ୍ରୀଧର ଦାସ**

ଜର୍ଜ ଓ୍ୱେଷ୍ଟିଂହାଉସ୍ ଯେଉଁସବୁ ବୈଜ୍ଞାନିକ ଆବିଷ୍କା
କରିଥିଲେ ସେଗୁଡ଼ିକୁ କାରଖାନାରୁ ନେଇ ବ୍ୟାବହାରିକ କ୍ଷେତ୍ରେ
ପ୍ରୟୋଗ କରିବାପାଇଁ ତାଙ୍କୁ ବହୁତ ଘାତ ପ୍ରତିଘାତ ଓ ସଂଘ
ମଧ୍ୟଦେଇ ଗତି କରିବାକୁ ହୋଇଥିଲା ଏବଂ ସେ ସବୁର ଉତ୍ତେଜନ
ପୂର୍ଣ୍ଣ ବିବରଣରେ ତାଙ୍କର ଏହି ଜୀବନୀ ପରିପୂର୍ଣ୍ଣ । ପୁସ୍ତକଟିର
ଲେଖକ ଲେଭିନ୍ ଏହି କର୍ମତତ୍ପର ପୁରୁଷଙ୍କ କାର୍ଯ୍ୟର ପ୍ରକୃ
ମର୍ମ ବୁଝିପାରିଛନ୍ତି ଏବଂ ସେଗୁଡ଼ିକର ବର୍ଣ୍ଣନା ଇତିହାସ
ଗୋଟିଏ ବିଶିଷ୍ଟ ଅଧ୍ୟାୟର ପ୍ରଧାନ ଘଟଣାବଳୀ ପରି ଜୀବ
ହୋଇଛି; କାରଣ ଜର୍ଜ ଓ୍ୱେଷ୍ଟିଂହାଉସଙ୍କ କାହାଣୀ ହେଉଛି
ଆମେରିକାର ଶିଳ୍ପବିପ୍ଳବର ଇତିହାସ ।

———•———